# ସ୍ମୃତି ଅର୍ଘ୍ୟ



## ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର

ଆବିର୍ଭାବ - ତା.୨୪.୦୫.୧୯୨୨ ତିରୋଧାନ - ତା.୧୦.୦୭.୨୦୧୩

**SMRUTI ARGHYA**
Edited by Dr. Basudev Kar
Published by Kumudini Smruti Sansad
**AMRAPALLI**
Dolmundai, Cuttack - 753 009

ପ୍ରଥମ ପ୍ରକାଶ
୨୦.୦୭.୨୦୧୩

ପ୍ରକାଶକ
କୁମୁଦିନୀ ସ୍ମୃତି ସଂସଦ
ଆମ୍ରପଲ୍ଲୀ
ଦୋଳମୁଣ୍ଡାଇ, କଟକ ୭୫୩ ୦୦୯

ଲିପି ସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩ ୦୦୨

ମୁଦ୍ରଣ
ଜଗନ୍ନାଥ ପ୍ରୋସେସ୍, ପ୍ରା.ଲି. କଟକ

# ଆମୁଖ

୨୦୧୩ ମସିହା ଜୁଲାଇ ୧୦ ତାରିଖ, ସାରା ଓଡ଼ିଶାରେ ଏକ ସ୍ମରଣୀୟ ଦିନ; ଜଗତର ନାଥ ପ୍ରଭୁ ଜଗନ୍ନାଥଙ୍କର ଶ୍ରୀଗୁଣ୍ଡିଚା ଯାତ୍ରା ଅନୁଷ୍ଠିତ ହେଉଥିଲା ଏଇ ଦିନରେ; ଘଟନାକ୍ରମେ ଏଇ ଦିନରେ ହିଁ ଘଟିଯାଇଛି ଓଡ଼ିଶାର ସବୁଆଡ଼େ ପର୍ଯ୍ୟାପ୍ତ ପରିଚିତି ପାଇଥିବା ଏ ମାଟିର ଜଣେ ବରପୁତ୍ର ବିଜ୍ଞାନ-ବାଙ୍ମୟ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କ ମହାପ୍ରୟାଣ ସୁଦୂର ଅହମଦାବାଦଠାରେ ତାଙ୍କ ସାନପୁଅର ବାସ ଭବନରେ । ବୟସ ହୋଇଯାଇଥିଲା; ଜୀବନ କାଳରେ ୯୧ଟି ବସନ୍ତର ବାସ୍ନା-ବୈଭବ ଭୋଗ କରିସାରିଥିଲେ ସେ । ହାତଗୋଡ଼ ସଚଳ ଥିବା ଅବସ୍ଥାରେ ପ୍ରଭୁ ଜଗନ୍ନାଥ ନିଜ ପବିତ୍ର ପତିତପାବନ ଯାତ୍ରା ଅବସରରେ ଗୋକୁଳାନନ୍ଦଙ୍କୁ 'ସ୍ୱ-ଲୋକ'ଙ୍କ ମେଳରୁ ମୁକ୍ତି ଦେଇ 'ସ୍ୱର୍ଲୋକ' ଧାମକୁ ପଠାଇଲେ । କହିବାକୁ ଗଲେ ଏହା ଏକ ନୈସର୍ଗିକ ସଂଯୋଗ... । ବାସ୍ତବତଃ 'ଭାଗ୍ୟେନୈତତ୍ ସମ୍ଭବତି' ଅର୍ଥାତ୍ ଭାଗ୍ୟରେ ଥିଲେ ଏପରି ହୋଇଥାଏ ।

ଶିକ୍ଷା, ଶିକ୍ଷାନୁଷ୍ଠାନ, ଶିକ୍ଷାର୍ଥୀ ଓ ଶିକ୍ଷକଙ୍କ ସାନ୍ନିଧ୍ୟ ଓ ସଂସ୍ପର୍ଶରେ କଟିଯାଇଛି ଗୋକୁଳାନନ୍ଦଙ୍କର ସାରାଜୀବନ । ଜଣେ ବିଜ୍ଞାନବେତ୍ତା ତଥା ବିଜ୍ଞାନତପସ୍ୱୀଭାବେ ବିଜ୍ଞାନଶିକ୍ଷା କ୍ଷେତ୍ରରେ ଥିଲା ତାଙ୍କର ଅନନ୍ୟ ସାଧନା ଓ ସିଦ୍ଧି : ସେଥିପାଇଁ ଜୀବଦ୍ଦଶାରେ ସେ ହୋଇପାରିଥିଲେ ଧନ୍ୟ, ପୁଣ୍ୟ ଏବଂ ଚିର ବରେଣ୍ୟ । କିନ୍ତୁ ଏ ସବୁକୁ ଛାଡ଼ି ତାଙ୍କ ଅବର୍ତ୍ତମାନରେ ଆମେ ତାଙ୍କୁ ଯେଉଁଥିପାଇଁ ଆମ ସ୍ମୃତିରେ ସାଇତି ରଖିବା, ତାହା ହେଲା ତାଙ୍କ ଦେବୋପମ ବ୍ୟକ୍ତିତ୍ୱ; ତାଙ୍କ ମନଛୁଆଁ 'ମଣିଷପଣିଆ' । 'ମଣିଷ ପରି ମଣିଷଟିଏ' କହିଲେ ଯାହା ବୁଝାଯାଏ, ଗୋକୁଳାନନ୍ଦ ଥିଲେ ସେଇପରି ଜଣେ ଯୋଗଜନ୍ମା ମଣିଷ । 'ନିରୁକ୍ତ'ରେ ଯାହା କୁହାଯାଇଛି – 'ମତ୍ୱା କର୍ମାଣି ସୀବ୍ୟତି ଇତି ମନୁଷ୍ୟ' ତାହା ଅକ୍ଷରେ ଅକ୍ଷରେ ତାଙ୍କଠାରେ ପ୍ରତିଫଳିତ ହେଉଥିଲା । 'କ୍ରିୟାଂ ବିନା ଜ୍ଞାନଂ ଭାରଃ' ପରି ସୂକ୍ତିର ମର୍ମ ସେ ଭଲଭାବେ ବୁଝିଥିଲେ । ତେଣୁ ଶାରୀରିକ ସାମର୍ଥ୍ୟ ଓ ମାନସିକ ସଂସ୍ଥିତି ଓ ସନ୍ତୁଳନ ଅତୁଟ ଥିବା ଯାଏ 'ବିଜ୍ଞାନମୁପାସ୍ୱ' (ବିଜ୍ଞାନର ପୂଜାକର) ଥିଲା ତାଙ୍କ ବ୍ରତ ଓ ବାଣୀ । ଶଯ୍ୟାଶାୟୀ ନ ହେବା ଯାଏ 'ବିଜ୍ଞାନ ପ୍ରଚାର ସମିତି'ର ସବୁ ଅଧିବେଶନ ଓ ଆଲୋଚନା ସଭାରେ ସେ ଯୋଗ ଦେଉଥିଲେ ମାର୍ଗଦର୍ଶକ ସଭାପତି ଭାବରେ । ସଂକ୍ଷେପରେ କହିଲେ ନୀତି ଓ ନିଷ୍ଠା, ସାରଲ୍ୟ ଓ ସାଧୁତା, ଜ୍ଞାନ ଓ ପ୍ରଜ୍ଞା ଥିଲା ତାଙ୍କ ବୈୟକ୍ତିକ ଗରିମାର ଭିତ୍ତିଭୂମି; କୌଣସି ପ୍ରକାର ଊଣାବୋଧ, ଘୃଣାଭାବ ବା ଅନ୍ୟ ପ୍ରତି ଅସୂୟାଭାବ ତାଙ୍କୁ ସ୍ପର୍ଶ କରି ନ ଥିଲା । ବାକ୍-ପାରୁଷ୍ୟ ବଦଳରେ ବାଙ୍ମାଧୁର୍ଯ୍ୟ ଥିଲା ତାଙ୍କ ଚାରିତ୍ରିକ ସ୍ୱକୀୟତା । ସେଥିପାଇଁ କାହାରି ଦୋଷଦୁର୍ବଳତା ସେ ଦର୍ଶାଇ ଦେଉଥିଲେ ଉଦ୍ଦିଷ୍ଟ ବ୍ୟକ୍ତି ମାନସିକ ସ୍ତରରେ ବ୍ୟଥିତ ବା ବିବ୍ରତ ହେଉ ନ ଥିଲେ; ବରଂ ନିଜ ନିଜର ଭୁଲ୍‌ଭ୍ରାନ୍ତିକୁ ସହର୍ଷ ସଂଶୋଧନ କରି ନେଉଥିଲେ । ପ୍ରଫେସର ମହାପାତ୍ରଙ୍କର ଆଉ ଏକ ମହନୀୟ ଗୁଣ ଆମେ ସମସ୍ତେ ଲକ୍ଷ୍ୟ କରିଛେ, ଯାହା ତାଙ୍କ ସମଧର୍ମା ଅନ୍ୟ ଅନେକ ସହକର୍ମୀଙ୍କଠାରେ ପ୍ରାୟଶଃ ଦେଖାଯାଏ ନାହିଁ । ତାହା ହେଲା – ସ୍ୱୀୟ ପ୍ରୌଢ଼ି ଓ ତଥାକଥିତ ସର୍ବବିତ୍ ଆବଭାବ ପ୍ରତି ତାଙ୍କ ବିମୁଖତା । କନିଷ୍ଠ ବିଜ୍ଞାନୀ, କନୀୟାନ୍ ସହକର୍ମୀ, ଏପରିକି ତାଙ୍କଠାରୁ ପ୍ରଶିକ୍ଷଣ ପାଉଥିବା ଛାତ୍ର-ଛାତ୍ରୀଙ୍କଠାରୁ ମଧ୍ୟ ନୂଆ ନୂଆ ଦିଗ୍‌ଦର୍ଶନ ଓ ଜ୍ଞାନ ଆହରଣ କରିବାରେ ସେ ଥିଲେ ସତତ

ଆଗ୍ରହୀ । ପ୍ରକୃଷ୍ଟ ଜ୍ଞାନୀ ହୋଇଥିବାରୁ ହୁଏତ ସେ ବୁଝିଥିଲେ – 'ବ୍ୟୁପୃତ୍ତେର୍ବହୁଶିଷ୍ୟତା' (ପ୍ରକୃତ ଜ୍ଞାନୀ ହିଁ ବହୁ ଲୋକଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥାଏ) ପରି ଆର୍ଷବାଣୀର ମହତ୍ତ୍ୱ ।

ଦିବଂଗତ ଗୋକୁଳାନନ୍ଦ ଆଜି ଆଉ ଆମ ସାଥିରେ ନାହାନ୍ତି । କିନ୍ତୁ ଆମମାନଙ୍କପାଇଁ, ଆଗକୁ ଆସିବାକୁ ଥିବା ଉତ୍ତରପିଢ଼ିର ଅଗଣିତ ଦାୟାଦଙ୍କପାଇଁ ତାଙ୍କର ସ୍ମୃତି ଦିଗବାରେଣୀ ହୋଇ ରହିଥିବ । ଆମ ପାଇଁ ରଖିଯାଇଛନ୍ତି ସେ ଅନେକ ଶିକ୍ଷଣୀୟ ଦୃଷ୍ଟାନ୍ତ । ନିଜ ଜୀବନର କୈଶୋର, ତାରୁଣ୍ୟ ଓ ଆଦ୍ୟ ଯୌବନ ବେଳର ନାନାବିଧ ଦୁଃଖଦୁର୍ଦ୍ଦଶା, ଅଭାବ ଅସୁବିଧାର ଅଗ୍ନିଦାହ ମଧ୍ୟରେ ଜର୍ଜରିତ ହୋଇ ମଧ୍ୟ 'ଖାଣ୍ଟି ସୁନା' ପରି ନିଜକୁ ସେ ଗଢ଼ିପାରିଥିଲେ ଜଣେ ନିଷ୍କଳ, ସାର୍ଥକ ତଥା ଆଦର୍ଶସ୍ଥାନୀୟ ବ୍ୟକ୍ତି ଭାବରେ । ସାଧୁତା ଓ ଶୃଙ୍ଖଳାର ନିଗଡ଼ ମଧ୍ୟରେ ନିଜେ ଜୀବନ ବିତାଇ ଅନ୍ୟ ଅନେକଙ୍କୁ ସଫଳ ଜୀବନ ଯାପନର ବାଟ ଓ ବାର୍ତ୍ତା ବତାଇ ଦେଇଯାଇଛନ୍ତି ସେ । ସଂକ୍ଷେପରେ କହିଲେ ଶ୍ରୀମଦ୍ ଭଗବଦ୍‌ଗୀତା (ପୁରୁଷୋତ୍ତମ ଯୋଗ; ଅଧ୍ୟାୟ ୧୫।୫)ର ନିଷ୍କର୍ଷ ପ୍ରଫେସର ମହାପାତ୍ରଙ୍କ ଯଥାଯଥ ବ୍ୟକ୍ତିତ୍ୱ ଓ ଜୀବନଚର୍ଯ୍ୟାରେ ପୂର୍ଣ୍ଣତଃ ପ୍ରତିଭାତ ହୋଇଥାଏ.... ।

''ନିର୍ମାନମୋହା ଜିତସଙ୍ଗଦୋଷା
ଅଧ୍ୟାତ୍ମନିତ୍ୟା ବିନିବୃତ୍ତକାମାଃ ।
ଦ୍ୱନ୍ଦ୍ୱୈର୍ବିମୁକ୍ତା ସୁଖଦୁଃଖସଂଜ୍ଞୈ –
ର୍ଗଚ୍ଛନ୍ତି ମୂଢ଼ାଃ ପଦମବ୍ୟୟଂ ତତ୍ ।''

ଅର୍ଥାତ୍, ଅଭିମାନ ଓ ମୋହରୁ ମୁକ୍ତ ହୋଇ, ଆସକ୍ତି ଦୋଷକୁ ପରାହତ କରି, ସର୍ବଦା ଆତ୍ମପ୍ରତିଷ୍ଠ ରହି, କାମନାକୁ ଅବଦମିତ କରି, ସୁଖଦୁଃଖରୂପକ ଦ୍ୱନ୍ଦ୍ୱରୁ ମୁକ୍ତ ହୋଇ ଯେଉଁ ସାଧକଗଣ ବିବେକବନ୍ତ ହୋଇପାରିଛନ୍ତି, ସେମାନେ ପରମପଦ ଲାଭ କରନ୍ତି ।

ଅଳମତି ବିସ୍ତରେଣ ......
ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିରେବ ଶାନ୍ତିଃ ।

**ବାସୁଦେବ କର**

# ଯେଉଁମାନେ ସ୍ମୃତିଚାରଣ କରିଛନ୍ତି...

---



ଶୁଭେଚ୍ଛୁ ମାନଙ୍କ ଶେଷ ଦର୍ଶନ



ଶୋକକୁଳ ପରିବାର ଓ ପ୍ରିୟଜନ



ଶୁଭାକାଂକ୍ଷୀ ମାନଙ୍କ ଶେଷ ଦର୍ଶନ



ଅନ୍ତିମ ଯାତ୍ରା

# ଶୋକବାର୍ତ୍ତା

**ଶ୍ରୀମତୀ ସ୍ମୃତିପ୍ରଭା ଦାସ**

ପ୍ରଫେସର ଡଃ ଗୋକୁଳାନନ୍ଦ ମହାପାତ୍ରଙ୍କ ମହାପ୍ରୟାଣର ଦୁଃଖଦ ସମ୍ବାଦ ରେଭେନ୍ସା ବିଶ୍ୱବିଦ୍ୟାଳୟ ରସାୟନ ବିଜ୍ଞାନ ବିଭାଗର ସମସ୍ତ ଶିକ୍ଷକ ଏବଂ କର୍ମଚାରୀଙ୍କୁ ମର୍ମାହତ କରିଅଛି । ରସାୟନ ବିଜ୍ଞାନ ବିଭାଗ ପ୍ରତି ପ୍ରଫେସର ମହାପାତ୍ରଙ୍କ ଶ୍ରଦ୍ଧା ଏବଂ ଅବଦାନ ଅଦ୍ୱିତୀୟ ଏହା ଅନସ୍ୱୀକାର୍ଯ୍ୟ । ରସାୟନ ବିଜ୍ଞାନକୁ ଲୋକପ୍ରିୟ କରିବାପାଇଁ ଏବଂ ଏହି ବିଭାଗରେ ଦୀର୍ଘଦିନର କାର୍ଯ୍ୟ ତାଙ୍କୁ ଏହି ବିଭାଗରେ ସବୁଦିନପାଇଁ ସ୍ମରଣୀୟ କରି ରଖିବ । ସେ କେବଳ ଜଣେ ବିଖ୍ୟାତ ବୈଜ୍ଞାନିକ ନ ଥିଲେ ଜଣେ ଲୋକପ୍ରିୟ ବିଜ୍ଞାନ ଲେଖକ ଓ ସର୍ବୋପରି ଜଣେ ଭଲ ମଣିଷ ଥିଲେ । ସେ ଆମ ବିଭାଗରେ ଏକ ଉନ୍ନତମାନର ପାଠାଗାର ଓ ବିଜ୍ଞାନାଗାର ପ୍ରତିଷ୍ଠା କରି ରସାୟନ ବିଜ୍ଞାନ ପଢୁଥିବା ସମସ୍ତ ଛାତ୍ରଛାତ୍ରୀଙ୍କୁ ଉପକୃତ କରିଛନ୍ତି । ତାଙ୍କ ଶ୍ରଦ୍ଧା, ଭଲପାଇବା ଏବଂ ସମସ୍ତ ଅବଦାନପାଇଁ ଆମେ ସମସ୍ତେ ତାଙ୍କ ପାଖରେ ଚିରଋଣୀ । ତାଙ୍କ ଅମର ଆତ୍ମାର ସଦ୍‌ଗତିପାଇଁ ଆମେ ସମସ୍ତେ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରୁଅଛୁ ।

ରେଭେନ୍ସା ବିଶ୍ୱବିଦ୍ୟାଳୟର
ରସାୟନ ବିଜ୍ଞାନ ବିଭାଗର
ସମସ୍ତ ଶିକ୍ଷକ ଓ କର୍ମଚାରୀବୃନ୍ଦ

Smrutiprava Das
**ରେଭେନ୍ସା ବିଶ୍ୱବିଦ୍ୟାଳୟର ରସାୟନ ବିଜ୍ଞାନ**
**ବିଭାଗର ସମସ୍ତ ଶିକ୍ଷକ ଓ କର୍ମଚାରୀ ବୃନ୍ଦ**

---

# ଶୋକବାର୍ତ୍ତା

**ସୁବାସିନୀ ଲେଙ୍କା**

ରସାୟନ ବିଜ୍ଞାନ ଆକାଶର ଉଜ୍ଜ୍ୱଳ ତାରକା, ଜନପ୍ରିୟ ବିଜ୍ଞାନ ସାହିତ୍ୟର ସ୍ରଷ୍ଟା, ତଥା 'ଓଡ଼ିଶା କେମିକାଲ୍ ସୋସାଇଟ୍'ର ଭୀଷ୍ମପିତାମହ ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କର ଅବର୍ତ୍ତମାନରେ ଓଡ଼ିଶା କେମିକାଲ୍ ସୋସାଇଟ୍‌ର ସମସ୍ତ ସଭ୍ୟବୃନ୍ଦ ମର୍ମାହତ ।

ଡକ୍ଟର ମହାପାତ୍ରଙ୍କର ଅବର୍ତ୍ତମାନତାକୁ ସହ୍ୟ କରିନେବାପାଇଁ ତାଙ୍କ ପରିବାରର ସଦସ୍ୟ ଏବଂ ଆତ୍ମୀୟମାନଙ୍କୁ ଈଶ୍ୱର ଶକ୍ତି, ଧୈର୍ଯ୍ୟ ଓ ସାହସ ପ୍ରଦାନ କରନ୍ତୁ । ତାଙ୍କ ଅମର ଆତ୍ମା ସଦ୍‌ଗତି ଲାଭ କରୁ ।

ସଭାପତି
ଓଡ଼ିଶା କେମିକାଲ୍ ସୋସାଇଟ୍

---

*Dr. Naresh Chandra Mishra*
*Professor and Head*




*Phone / Fax* :+91-674-2567079 (O)
+91-674-2567566 (R)
+91-9437889778 (M)
*email* : nareshcmishra@gmail.com

**DEPARTMENT OF PHYSICS, UTKAL UNIVERSITY**
**BHUBANESWAR 751004, INDIA.**

Date : 13th July, 2013

## CONDOLENCE RESOLUTION

We the students, teachers, staff of the Department of Physics, Utkal University and members of the Physics Alumni Association are shocked to know the sad demise of Prof. Gokulananda Mahapatra, who was a great scientist, popular science writer and had inspired several generations of students since independence. We express our heartfelt condolence for the bereaved family. May his soul rest in peace.

13.7.2013

(Naresh Chandra Mishra)
Head of the Department of Physics



# ବିଜ୍ଞାନ ପ୍ରଚାର ସମିତି, ଓଡ଼ିଶା


ଦୋଳମୁଣ୍ଡାଇ, କଟକ - ୭୫୩୦୦୯

(ପଞ୍ଜୀକରଣ ସଂଖ୍ୟା କଟକ ୩୩୮୫୨/୭୭, ୧୯୭୭)




## ଶୋକ ପ୍ରସ୍ତାବ

ବିଜ୍ଞାନ ପ୍ରଚାର ସମିତିର ଅନ୍ୟତମ ପ୍ରଧାନ ସ୍ଥପତି ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କ ପ୍ରୟାଣ ସମିତିପାଇଁ ଏକ ଅପୂରଣୀୟ କ୍ଷତି । ତାଙ୍କର ଅବର୍ତ୍ତମାନରେ ଖୁବ୍ ବିଷାଦଗ୍ରସ୍ତ ହୋଇପଡ଼ିଛନ୍ତି ସମିତିର ସଦସ୍ୟବୃନ୍ଦ ।

ପ୍ରଫେସର ମହାପାତ୍ର ଥିଲେ ସମିତିର ମାର୍ଗଦର୍ଶକ ତଥା ସମିତିର ବିବେକ । ଓଡ଼ିଆଭାଷାରେ ବିଜ୍ଞାନକୁ ଗଣଧର୍ମୀ କରାଇବାରେ ସେ ଅଗ୍ରଗଣ୍ୟ ଥିଲେ । ଥିଲେ ଏକ କିଂବଦନ୍ତୀ ବ୍ୟକ୍ତିତ୍ୱ । ତାଙ୍କଠାରୁ ପ୍ରେରଣାପାଇଁ ଅନେକ ବ୍ୟକ୍ତି ଲୋକପ୍ରିୟ ବିଜ୍ଞାନ ଲେଖକ ଭାବରେ ପରିଚିତି ଅର୍ଜନ କରିପାରିଛନ୍ତି । କାରଣ ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ବଳରେ ବିଜ୍ଞାନ ପ୍ରଚାର ସମିତି ରହିଆସିଛି, ଏକ ବିଜ୍ଞାନ ଲେଖକ କର୍ମଶାଳା ।

'ପୃଥିବୀ ବାହାରେ ମଣିଷ' ଓ 'ଉଡ଼ନ୍ତା ଥାଳିଆ'ର ପ୍ରଣେତା ଭାବରେ ସେ ଜନସାଧାରଣଙ୍କ ମହଲରେ ସୁପରିଚିତ ।

ପ୍ରଫେସର ମହାପାତ୍ର ଥିଲେ ଜଣେ କୃତୀ ତଥା ଛାତ୍ରବତ୍ସଳ ଶିକ୍ଷକ, ଅଧ୍ୟବସାୟୀ ଗବେଷକ ଏବଂ ସଫଳ ପ୍ରଶାସକ । ଜଣେ ପ୍ରାବନ୍ଧିକ, କଥାକାର, ଔପନ୍ୟାସିକ, ନାଟ୍ୟକାର, ଶିଶୁସାହିତ୍ୟ ଲେଖକ, ପରିଭାଷା ପ୍ରଣେତା, ପାଠ୍ୟପୁସ୍ତକ ରଚୟିତା, ଜ୍ଞାନକୋଷ ସଂକଳକ ତଥା ପତ୍ରିକା ସଂପାଦକ ଇତ୍ୟାଦି ଭାବରେ ବିଜ୍ଞାନର ପ୍ରଚାର ଓ ପ୍ରସାରରେ ସେ ସର୍ବଦା ବ୍ରତୀ ରହି ଆସିଥିଲେ । ପୁଣି ଥିଲେ ଜଣେ ନିଃସ୍ୱାର୍ଥପର ସମାଜହିତୈଷୀ ।

ବାସ୍ତବରେ ଜଣେ ମଣିଷ ଭଳି ମଣିଷ ଥିଲେ ପ୍ରଫେସର ମହାପାତ୍ର । ସଂକ୍ଷେପରେ କହିଲେ – ସେ ଥିଲେ ତାଙ୍କରି ପରି ।

ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କ ପରି ଆଉ ଜଣେ ସୁଯୋଗ୍ୟ ସନ୍ତାନଙ୍କୁ ଜନ୍ମଦେବାପାଇଁ ଉତ୍କଳ ଜନନୀଙ୍କୁ ଯେ ଆହୁରି କେତେକାଳ ଅପେକ୍ଷା କରିବାକୁ ପଡ଼ିବ, ତାହା କିଏ ଜାଣେ ?

ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କର ଆତ୍ମା ସଦ୍‌ଗତି ଲାଭ କରୁ । ତାଙ୍କ ବିୟୋଗଜନିତ ବ୍ୟଥାକୁ ସହ୍ୟ କରିନେବା ନିମନ୍ତେ ତାଙ୍କ ପରିବାରବର୍ଗ ଏବଂ ଆତ୍ମୀୟମାନଙ୍କୁ ଈଶ୍ୱର ଅଶେଷ ଧୈର୍ଯ୍ୟ ଏବଂ ସାହସ ପ୍ରଦାନ କରନ୍ତୁ ।

**ବୈଷ୍ଣବ ଚରଣ ସିଂହ**
ସଂପାଦକ

**ନିମାଇଁ ଚରଣ ପଣ୍ଡା**
ସଭାପତି



**RAVENSHAW COLLEGE CHEMISTRY ALUMINI ASSOCIATION, CUTTACK – 3**
**DEPARTMENT OF CHEMISTRY**
**REGISTRATION NO - 17612 / 126 OF 2007 – 08**



# ଶୋକବାର୍ତ୍ତା

ରସାୟନ ବିଜ୍ଞାନର ଭୀଷ୍ମ ପିତାମହ ସ୍ୱର୍ଗତ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କର ବିୟୋଗରେ ରେଭେନ୍‌ସା ବିଶ୍ୱବିଦ୍ୟାଳୟ ରସାୟନ ବିଭାଗର ପୁରାତନ ଛାତ୍ରଛାତ୍ରୀମାନେ ଗଭୀର ଶୋକପ୍ରକାଶ କରୁଛନ୍ତି – ସେ ଆମ ସଂଗଠନର ପ୍ରଥମ ତଥା ପ୍ରତିଷ୍ଠାତା ସଭାପତି ଭାବରେ ଆମ୍ଭମାନଙ୍କୁ ଆଜି ପର୍ଯ୍ୟନ୍ତ ଦିଗ୍‌ଦର୍ଶନ ଦେଇ ଆସୁଥିଲେ – ସେହି ମହାନ୍ ଆତ୍ମାର ସଦ୍‌ଗତି ନିମନ୍ତେ ଆମ୍ଭେ ବିଶ୍ୱନିୟନ୍ତା କୃପାମୟ ଭଗବାନ୍‌ଙ୍କ ପାଦପଦ୍ମରେ ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ଶୋକସନ୍ତପ୍ତ ପରିବାର ବର୍ଗଙ୍କୁ ଆମର ସମବେଦନା ଜ୍ଞାପନ କରୁଅଛୁ ।

Secretary
Ravenshaw College Chemistry
Alumni Association, Cuttack-3




# BABA SAGAR DAS HIGH SCHOOL

**DOLAMUNDAI, CUTTACK - 1**

# ବାବା ସାଗର ଦାସ ଉଚ୍ଚ ବିଦ୍ୟାପୀଠ

ଦୋଳମୁଣ୍ଡାଇ, କଟକ - ୧

Ref. No...................                                                                 Date ୧୨/୭/୨୦୧୩

## ବାବା ସାଗର ଦାସ ଉଚ୍ଚ ବିଦ୍ୟାପୀଠ ପରିଚାଳନା କମିଟିର ସଭାପତି ସ୍ୱର୍ଗତଃ ପ୍ରଫେସର ଡଃ ଗୋକୁଳାନନ୍ଦ ମହାପାତ୍ରଙ୍କ ବିୟୋଗରେ

## ଶୋକସଭା

ସ୍ଥାନ : ବାବାସାଗର ଦାସ ବିଦ୍ୟାପୀଠ ପରିସର 'ବିଜୟ ଗୋବିନ୍ଦ ଭବନ' ସଭାଗୃହ, ଦୋଳମୁଣ୍ଡାଇ, କଟକ

ତା ୧୭.୭.୨୦୧୩ ରିଖ (ବୁଧବାର) : ଅପରାହ୍ନ ଘ.୨.୩୦ମି.

ମହାଶୟା / ମହାଶୟ,

ଦୁଃଖର ସହ ଜଣାଉଅଛୁ କି ସ୍ୱର୍ଗତଃ ପ୍ରଫେସର ଡଃ ଗୋକୁଳାନନ୍ଦ ମହାପାତ୍ରଙ୍କ ବିୟୋଗରେ ବାବାସାଗର ଦାସ ଉଚ୍ଚ ବିଦ୍ୟାପୀଠ ପରିଚାଳନା କମିଟି ଏବଂ ବିଦ୍ୟାଳୟ ପକ୍ଷରୁ ଆସନ୍ତା ତା ୧୭.୭.୨୦୧୩ ରିଖ ବୁଧବାର ଅପରାହ୍ନ ଘ. ୨.୩୦ମି ସମୟରେ ଦୋଳମୁଣ୍ଡାଇସ୍ଥିତ 'ବିଜୟ ଗୋବିନ୍ଦ ଭବନ' ସଭାଗୃହରେ ଏକ ଶୋକ ସଭା ଅନୁଷ୍ଠିତ ହେବ ।

ଏଣୁ ଆପଣଙ୍କୁ ବିନୀତ ଅନୁରୋଧ, ଉକ୍ତ ସଭାରେ ଉପସ୍ଥିତ ରହି ସ୍ୱର୍ଗତଃ ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇବା ସଙ୍ଗେ ସଙ୍ଗେ ଶୋକ ସନ୍ତପ୍ତ ପରିବାର ବର୍ଗଙ୍କ ପ୍ରତି ସମବେଦନା ଜ୍ଞାପନ କରିବା ହେବେ ।

ନିବେଦକ

ସ୍ନେହାଳିକା ଆଚାର୍ଯ୍ୟ (signature)
ପ୍ରଧାନ ଶିକ୍ଷକ
ବାବା ସାଗର ଦାସ୍ ଉଚ୍ଚ ବିଦ୍ୟାପୀଠ

ବାସୁଦେବ ବେହେରା (signature)
ବାସୁଦେବ ବେହେରା
ସଂପାଦକ
ବାବା ସାଗର ଦାସ୍ ଉଚ୍ଚ ବିଦ୍ୟାପୀଠ
ପରିଚାଳନା କମିଟି

# ଶୋକବାର୍ତ୍ତା

**୧୧ ଜୁଲାଇ, ୨୦୧୩**

ମହାଶୟ,

'ବିଜ୍ଞାନ ପ୍ରଚାର ସମିତି'ର ପ୍ରାଣପ୍ରତିଷ୍ଠାତା ତଥା ସମକାଳୀନ ଓଡ଼ିଆ ଜାତୀୟ ଜୀବନର ଅଂଶବିଶେଷ ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ ବିୟୋଗ ସମ୍ବାଦ ଗଣମାଧ୍ୟମରୁ ଜାଣି ମୁଁ ମର୍ମାହତ । ଗୋକୁଳାନନ୍ଦବାବୁ ଥିଲେ ସ୍ୱର୍ଗତ ବିନୋଦ କାନୁନ୍‌ଗୋଙ୍କ ଅନ୍ତରଙ୍ଗ । ତାଙ୍କ ଉଦ୍ୟମରେ ହିଁ ଓଡ଼ିଆ ଭାଷାରେ ଜନପ୍ରିୟ ବିଜ୍ଞାନ ସାହିତ୍ୟ ସୃଷ୍ଟିର ମୂଳଦୁଆ ପଡ଼ିଥିଲା । କୁଳମଣିବାବୁ କେତେ ମାସ ତଳେ ଆମକୁ ଛାଡ଼ି ଚାଲିଯାଇଥିଲେ; ଗୋକୁଳାନନ୍ଦବାବୁ ତାଙ୍କ ପଛେ ପଛେ ଗଲେ । ଏହି ଦୁଇ ଘଟନାକ୍ରମ ନିଶ୍ଚିତ ଭାବରେ ଓଡ଼ିଶାରେ ବିଜ୍ଞାନ ସାହିତ୍ୟ ପ୍ରସାରର ମୂଳଖୁଣ୍ଟକୁ ଦୋହଲାଇ ଦେଇଛି । ଗୋକୁଳାନନ୍ଦବାବୁଙ୍କର ବିକଳ୍ପ ସୃଷ୍ଟି ହେବା ବୋଧହୁଏ ଏତେ ସହଜ ନୁହେଁ ।

ପ୍ରକୃତିରେ ମୃତ୍ୟୁ ଚିରନ୍ତନ । କିନ୍ତୁ ଜଣଜଣଙ୍କ ମୃତ୍ୟୁ ଗୋଟାଏ ଗୋଟାଏ ଶୂନ୍ୟତା ସୃଷ୍ଟି କରିଦେଇଥାଏ । ଗୋକୁଳାନନ୍ଦବାବୁ ଥିଲେ ସେହି ଶ୍ରେଣୀର । ଆଜିର ଏହି ଦାରୁଣ ଦୁର୍ଦ୍ଦିନରେ ପ୍ରକୃତି ଆପଣଙ୍କୁ ସାହା ହେବ ବୋଲି ମୋର ଆଶା ।

ଆପଣଙ୍କର ଶୋକସନ୍ତପ୍ତ,

ସମସ୍ତଙ୍କ ଯଥାମାନ୍ୟ ।

(ଦୀପକ କାନୁନ୍‌ଗୋ)
ସଂପାଦକ

ସଂପାଦକ
'ବିଜ୍ଞାନ ପ୍ରଚାର ସମିତି'
ମାର୍ଫତ୍ ୰ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର
'ଆମ୍ରପଲ୍ଲୀ', ଦୋଳମୁଣ୍ଡାଇ
କଟକ -୧

"The desire of knowledge... increases ever with the acquisition of it."

Jnanmandal Foundation C-1 Nilakanthanagar, Bhubaneswar 751 012 Tele (0674) 2560390 TeleFax (0674)2560390 e-mail-jmf_ori@yahoo.co.in

# ଭଦ୍ରକ ଜିଲ୍ଲା ଅବସରପ୍ରାପ୍ତ ସରକାରୀ କର୍ମଚାରୀ ସଂଘ

ଜଗନ୍ନାଥପୁର, ଭଦ୍ରକ - ୭୫୬ ୧୦୦

ପଞ୍ଜିକୃତ ସଂଖ୍ୟା - ୩୮୫-୩୭/୯୫-୯୬

**BHADRAK DISTRICT ABASARAPRAPTA SARAKARI KARMACHARY SANGHA**

Jagannathpur, Bhadrak-756 100

Regd. No.- 385-37/95-96



__ସଭାପତି :__
**ଡଃ ସନାତନ ମହାନ୍ତି**
*କାନୁଗଞ୍ଜ, ମାଧବନଗର*
*ମୋ : ୯୯୩୭୭୬୭୮୮୨*

__ଉପ-ସଭାପତି :__
**ଶ୍ରୀ ଦିଗମ୍ବର ମହାନ୍ତି**
*ଗେଲଟୁଆ, ଭଦ୍ରକ*
*ମୋ : ୯୪୩୭୨୮୧୪୧୪*

**ଶ୍ରୀ ରବିନ୍ଦ୍ର କୁମାର ମହାନ୍ତି**
*ରାଜଘାଟ, କୁଆଁସ, ଭଦ୍ରକ*
*ମୋ : ୯୯୩୮୬୦୩୧୦୯*

__ସାଧାରଣ ସଂପାଦକ :__
**ଶ୍ରୀ ମୁରଲୀଧର ପଣ୍ଡା**
*ଜଗନ୍ନାଥପୁର, ଭଦ୍ରକ*
*ମୋ :* [illegible]

__ଯୁଗ୍ମ ସଂପାଦକ :__
**ଶ୍ରୀ ପ୍ରଭାକର ମଲ୍ଲିକ**
*ବିଜୁପଟ୍ଟନାୟକ ନଗର, ଭଦ୍ରକ*
*ମୋ:* [illegible]

__ସଂପାଦକ (ସଂସ୍କୃତି) :__
**ଶ୍ରୀ ସଦାଶିବ ନାୟକ**
*ନରିପୁର, ଭଦ୍ରକ*
*ମୋ : ୯୩୩୭୦୨୪୯୫୨*

__ସଂପାଦକ (ସେବା) :__
**ଡଃ ଦୁର୍ଯ୍ୟୋଧନ ଦାସ**
*ପ୍ରଫୁଲ୍ଲନଗର, ଭଦ୍ରକ*
*ମୋ : ୯୪୩୭୨୧୪୦୨୧*

__ସଂଗଠନ ସଂପାଦକ :__
**ଶ୍ରୀ ଦେବେନ୍ଦ୍ର ପ୍ରସାଦ ମହାପାତ୍ର**
*ଗଉଡପୁର, ଭଦ୍ରକ*
*ମୋ : ୯୨୩୭୯୬୯୬୦୨*

__ଯୁଗ୍ମ ସଂଗଠନ ସଂପାଦକ :__
**ଶ୍ରୀ କୃଷ୍ଣଚନ୍ଦ୍ର ପଣ୍ଡା**
*ଆରଡିହକ, ଭଦ୍ରକ*
*ଫୋ.ନଂ. : ୨୪୦୪୩୫*

__କୋଷାଧ୍ୟକ୍ଷ :__
**ଶ୍ରୀ ପ୍ରହ୍ଲାଦ ପଲେଇ**
*ନୂଆବଜାର, ଭଦ୍ରକ*
*ମୋ: ୯୪୩୮୦୦୩୩୫୨*

__ହିସାବ ନିରିକ୍ଷକ :__
**ଶ୍ରୀ ଜଗବନ୍ଧୁ ଓଝା**
*ଜଗନ୍ନାଥପୁର, ଭଦ୍ରକ*
*ମୋ :*


ପତ୍ରାଙ୍କ ସଂଖ୍ୟା ...31......  ତାରିଖ 14.7.2013

## ୰ ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କପାଇଁ

## ଶୋକ ପ୍ରସ୍ତାବ

ଅଦ୍ୟ ତା.୧୪.୦୭.୨୦୧୩ରିଖ (ହେରା ପଞ୍ଚମୀ) ଦିବା ୯ ଘଟିକା ସମୟରେ ଭଦ୍ରକ ଜିଲ୍ଲା ଅବସରପ୍ରାପ୍ତ ସରକାରୀ କର୍ମଚାରୀ ସଂଘର ୰ ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ ଦାନ ଜମିରେ ସଭାଗୃହରର ଭିତ୍ତିପ୍ରସ୍ତର ସ୍ଥାପନ ଅବସରରେ ସର୍ବପ୍ରଥମେ ଗତ ତା ୧୦.୦୭.୨୦୧୩ ରିଖ ପବିତ୍ର ରଥଯାତ୍ରା ଦିନ ଦିବଂଗତ ମହାପାତ୍ରଙ୍କ ଆତ୍ମାର ସଦ୍‌ଗତି ନିମିତ୍ତ ନୀରବ ପ୍ରାର୍ଥନା ସହ ଶୋକସଭା ଅନୁଷ୍ଠିତ ହୋଇଅଛି । ସମସ୍ତ ସଦସ୍ୟ ଓ ମୁଖ୍ୟ ଅତିଥି ପୂର୍ବତନ କେନ୍ଦ୍ରମନ୍ତ୍ରୀ ତଥା ବର୍ତ୍ତମାନର ମାନ୍ୟବର ଭଦ୍ରକ ଲୋକସଭାର ସାଂସଦ ଶ୍ରୀଯୁକ୍ତ ଅର୍ଜୁନ ଚରଣ ସେଠୀ ମହୋଦୟ ମଧ୍ୟ ଶୋକ ପ୍ରକାଶ ସହ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଅଛନ୍ତି । ଏହି ଅବସରରେ ସଂଘର ସଭାପତି ଡକ୍ଟର ସନାତନ ମହାନ୍ତି, ଉପସଭାପତି ଶ୍ରୀ ଦିଗମ୍ବର ମହାନ୍ତି, ସାଧାରଣ ସଂପାଦକ ଶ୍ରୀ ମୁରଲୀଧର ପଣ୍ଡା, ଯୁଗ୍ମ ସଂପାଦକ ଶ୍ରୀ ପ୍ରଭାକର ମଲ୍ଲିକ୍, ଶ୍ରୀ ଉଦୟନାଥ ମହାନ୍ତି ଓ ଉପସ୍ଥିତ ବହୁସଂଖ୍ୟକ ସଦସ୍ୟ ଭଦ୍ରକର କୃତୀ ସନ୍ତାନ ପ୍ରଖ୍ୟାତ ବୈଜ୍ଞାନିକ, ସମାଜସେବୀ ଓ ପରୋପକାରୀ ୰ ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କର ବହୁମୁଖୀ ପ୍ରତିଭାର ସ୍ମୃତିଚାରଣ କରି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଅଛନ୍ତି ।

ଏହି ଦାରୁଣ ଦୁଃଖ ସହିବାକୁ ଭଗବାନ୍ ତାଙ୍କର ପୁତ୍ର-କନ୍ୟା ଓ ପରିବାରବର୍ଗଙ୍କୁ ସାହସ, ଧୈର୍ଯ୍ୟ ଓ ସାମର୍ଥ୍ୟ ପ୍ରଦାନ କରନ୍ତୁ, ଏହାହିଁ ସଂଘର ସମସ୍ତ ସଦସ୍ୟଙ୍କ କାମନା ।

ମୁରଲୀଧର ପଣ୍ଡା
**ଶ୍ରୀ ମୁରଲୀଧର ପଣ୍ଡା**
**ସାଧାରଣ ସଂପାଦକ**
**ଭଦ୍ରକ ଜିଲ୍ଲା ଅବସରପ୍ରାପ୍ତ ସରକାରୀ କର୍ମଚାରୀ ସଂଘ,**
**କୁଆଁସ, ଭଦ୍ରକ**

General Secretary
Bhadrak Zilla Abasaraprapta
Sarakari Karmachari Sangha,
Bhadrak

## *CONDOLENCE MESSAGE*

**Birendra Patnaik**

I extend my heartfelt condolences to bereaved family members and pray them to have enough strength to bear the loss.

I was immensely saddened to learn the passing-away of Prof. Gokulananda Mahapatra. He was my teacher at Ravenshaw College and taught me in my undergraduate and graduate classes. Later, when I joined as a teacher, we became colleagues and I learned aspects of teachings from his association, particularly in the laboratory classes. His forum Vigyan Prachar Samiti did influence me to think about science broadly which is still my interest today. Of course, we had read his science fiction books. As it happened, a couple of years later, I left Odisha to do postdoc at Brandeis University in USA. Prof. Mahapatra joined Brandeis as a visiting faculty reasearcher towards the end of my stay there. But I fondly remember many pleasant evenings I spent with his family -wife and childrenTunu and Babuli, not to mention the tasty oriya food cooked by Mrs Mahapatra which I had missed. Again, I had left Odisha before he retuned from the US and we met only a few times during my increasingly infrequent and (very) short visits. He would be missed by the scientific community. May his soul rest in peace.

New Jersey

---

## *CONDOLENCE MESSAGE*

**D. Mangaraj**

I am extremely sorry to note the death of Professor Gokulananda Mohapatra. Gokulanda Babu was not only my teacher, but mentor and guide. He personified both knowledge and love, that breeds talent and quest for higher achievement among his students. His greatest contribution is writing scientific articles and texts in Oriya language and his leadership in making scientific knowledge available to the common man in Orissa.

I was inspired by him both as a student and and later on as a colleague. May God bless his soul to rest in peace at heaven, with his soul mate Kuma Apa.

Retired Senior Scientist,
Battelle Memorial Institute,
Columbus, Ohio, USA.

## *CONDOLENCE MESSAGE*

**B. K Leena.**

Om Shanti. Greetings of Love & Peace ! He was no doubt a great personality. Odisha Bhumi will remember him for his contribution in the field of Science.. May the departed soul rest in Peace! May our most beloved father rest him in His holy lap.

91 is a good age. Every body has already taken the maximum Vatsalya from him. Now give him farewell with a hearty smile & good wishes, that he may shower the same or rather more to the family & others who are waiting next to his eternal journey.

Lots of Love.

Divine Sister,

Director , BK Organisation , Bhubaneswar

## *CONDOLENCE MESSAGE*

**Sandip Kumar Dasverma**

Actually it creates a vacuum - loss of a person who you can share your thoughts for the best advice.

Having said that - It is really a loss to Odisha to lose a man of Prof. Mohapatra's erudition. His pen inspired many to think scientifically and inspired a scientific literature in Odia. Though he was a Chemistry Prof. he was an exceptional person and has significant contribution to popularization of Science in Odisha.

Richland

Washington 99354

US

# ବିଜ୍ଞାନ ପ୍ରଚାର ସମିତିର ପ୍ରାଣପ୍ରତିଷ୍ଠାତା ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର

**ଡାକ୍ତର ନିମାଇଁଚରଣ ପଣ୍ଡା**

ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ମୋର ପୂଜ୍ୟ ଶିକ୍ଷକ ୧୯୪୯ ମସିହାରେ; ସେତେବେଳେ ମୁଁ ରେଭେନ୍ସା କଲେଜରେ ତୃତୀୟ ବାର୍ଷିକ ଛାତ୍ର । ସେ ମୋତେ Organic Chemistry ପଢ଼ାଇଛନ୍ତି । ମୁଁ ୧୯୫୧ ମସିହାରେ B.Sc. ପାସ୍ କଲାପରେ S.C.B. Medical Collegeରେ MBBS ଶିକ୍ଷା ନିମନ୍ତେ ଯୋଗଦାନ କଲି ।

ସେ ଜଣେ ଜ୍ଞାନୀ, ଗୁଣୀ ଓ ଆଦର୍ଶ ଶିକ୍ଷକ । ସର୍ବୋପରି ଅତି ସ୍ନେହୀ ଓ ଉତ୍ତମ ମଣିଷ ।

ସେ ୧୯୪୮ ମସିହାରେ କଲିକତା Presidency କଲେଜରୁ M.Sc Degree ଲାଭ କରିଥିଲେ । ସେହିଦିନଠାରୁ ସେ ରେଭେନ୍‌ସା କଲେଜରେ ଶିକ୍ଷାଦାନ ଓ ଗବେଷଣାରେ ନିୟୋଜିତ ରହିଲେ । ୧୯୫୩ରୁ ୧୯୫୮ ମସିହା ପର୍ଯ୍ୟନ୍ତ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ Ph.D. Degree ପାଇଲେ । ୧୯୬୧ ମସିହାରେ ଆମେରିକାର ବୋଷ୍ଟନ୍‌ସ୍ଥିତ Brandes Universityରେ ପୋଷ୍ଟଡକ୍ଟରାଲ୍ ଗବେଷଣାପାଇଁ ଯାଇଥିଲେ ଓ 'DNA Structure Elucidation' ଉପରେ ଗବେଷଣା କରିଥିଲେ । ସେଥିରେ ଆନ୍ତର୍ଜାତିକ ସ୍ତରରେ ସମ୍ମାନ ଅର୍ଜନ କରିଥିଲେ । ସେଠାରୁ ଅଢ଼େଇ ବର୍ଷ ପରେ ୧୯୬୭ ନଭେମ୍ବରରେ ଫେରିଆସିଥିଲେ । ସେ ଆମେରିକା ଯିବା ସମୟରେ ତାଙ୍କର ପରିବାରଙ୍କୁ ସାଙ୍ଗରେ ନେଇଥିଲେ । ତାଙ୍କର ପରିବାର ପ୍ରତି ସ୍ନେହ-ଶ୍ରଦ୍ଧା ଏଥିରୁ ପ୍ରତିପାଦିତ ହୁଏ ।

ବିଜ୍ଞାନ କୃତି ସହ ତାଙ୍କର ଓଡ଼ିଆ ସାହିତ୍ୟ ପ୍ରତି ମଧ୍ୟ ଆଗ୍ରହ ଅଶେଷ । ସେ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କ ଲେଖା ବାହାର କରୁଥିଲେ । ତାଙ୍କର ଲେଖା କଳିଙ୍ଗ, ଶଙ୍ଖ ଓ ସହକାର ପତ୍ରିକାରେ ବାହାରିଥିଲା । ସେ ୧୯୪୯ ମସିହାଠାରୁ ୧୯୫୭ ମଧ୍ୟରେ ପ୍ରାୟ ୮୦ ଖଣ୍ଡ ଜନପ୍ରିୟ ବିଜ୍ଞାନ ପୁସ୍ତକ ପ୍ରଣୟନ କରିଥିଲେ । ସେ କଲିକତା Presidency କଲେଜରେ ପଢ଼ିଲା ବେଳଠାରୁ ତାଙ୍କ ମନରେ ଓଡ଼ିଶାରେ ଏକ ବିଜ୍ଞାନ ଅନୁଷ୍ଠାନ ଗଢ଼ିବାର ସ୍ୱପ୍ନ ଜନ୍ମ ଲାଭ କରିଥିଲା । 'ବିଜ୍ଞାନ ପ୍ରଚାର ସମିତି' ସେହି ଚିନ୍ତାଧାରାର ସଫଳାୟନ । ବିଜ୍ଞାନ ପ୍ରଚାର ସମିତି ପ୍ରକୃତରେ ତାଙ୍କର ମାନସ ସନ୍ତାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରଥମେ ନ' ଜଣ ପ୍ରତିଷ୍ଠାତା ସଭ୍ୟଙ୍କୁ ନେଇ 'ବିଜ୍ଞାନ ପ୍ରଚାର ସମିତି' ଜନ୍ମ ଲାଭ କଲା ୧୯୪୯ ମସିହା ଅଗଷ୍ଟ ୭ ତାରିଖରେ । ସମିତିର ପ୍ରଥମ ଅଧିବେଶନ କଟକ ମେଡିକାଲ ପରିସର ମଧ୍ୟରେ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କ ବାସଭବନରେ ଅନୁଷ୍ଠିତ ହୋଇଥିଲା । ସେଥିରେ ସଭାପତିତ୍ୱ କରିଥିଲେ ଡଃ ସଦାଶିବ ମିଶ୍ର । ପ୍ରଥମ ଯୁଗ୍ମ ସମ୍ପାଦକ ହେଲେ ଡଃ ରାଧାନାଥ ରଥ ଓ ଡଃ ଗୋକୁଳାନନ୍ଦ ମହାପାତ୍ର । ଯେଉଁ ପ୍ରତିଷ୍ଠାତା ସଭ୍ୟମାନେ ଯୋଗଦାନ କରିଥିଲେ, ସେମାନେ ହେଲେ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ, ଡଃ ସୁକୁମାର ଆଦିତ୍ୟ, ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ର, ଡାକ୍ତର ରାଇକୃଷ୍ଣ ମହାନ୍ତି, ଡଃ ଶ୍ୟାମାନନ୍ଦ ପଟ୍ଟନାୟକ ଓ ଅଧ୍ୟାପକ କୃଷ୍ଣଚରଣ ଦାସ ।

ବିଜ୍ଞାନ ପ୍ରଚାର ସମିତି ୧୯୬୯ ମସିହାରେ 'ବିଜ୍ଞାନ ପ୍ରଭା' ନାମକ ବିଜ୍ଞାନ ପତ୍ରିକା ପ୍ରକାଶ କରିଥିଲା । ପରେ ୧୯୭୭ ମସିହାଠାରୁ 'ବିଜ୍ଞାନାଲୋକ' ପତ୍ରିକା ପ୍ରକାଶ କଲା । ଏଥିସହିତ ବହୁ ବିଜ୍ଞାନ ପାଠ୍ୟପୁସ୍ତକ ପ୍ରକାଶିତ ହୋଇଛି ଓ ଅନେକ ଜନପ୍ରିୟ ବିଜ୍ଞାନ ପୁସ୍ତକମାନ ମଧ୍ୟ ପ୍ରଣୟନ କରାହୋଇଛି ଓ ହେଉଛି ମଧ୍ୟ । ଏଥିରେ ପିଲାମାନେ ଓ ଅନ୍ୟ ବିଜ୍ଞାନପ୍ରେମୀ ଲୋକମାନେ ଉପକୃତ ହେଉଛନ୍ତି । ସମିତି ପକ୍ଷରୁ ସ୍କୁଲ କାର୍ଯ୍ୟକ୍ରମ ମାଧ୍ୟମରେ ବିଜ୍ଞାନ କାର୍ଯ୍ୟକ୍ରମ ଓଡ଼ିଆରେ କରାଯାଏ । ଏହା ପିଲାମାନେ

ଅତ୍ୟନ୍ତ ଆନନ୍ଦ ସହକାରେ ଗ୍ରହଣ କରିଥାଆନ୍ତି । ମୁଁ ବିଜ୍ଞାନ ପ୍ରଚାର ସମିତିର ସମସ୍ତ କାର୍ଯ୍ୟକ୍ରମରେ ଅଶେଷ ଆଗ୍ରହ ସହକାରେ ଭାଗ ନେଇଛି । ବିଜ୍ଞାନ ପ୍ରଚାର ସମିତିଦ୍ୱାରା ପ୍ରକାଶିତ ବହୁ ପୁସ୍ତକରେ ମୋର ଲିଖିତ ସନ୍ଦର୍ଭମାନ ସ୍ଥାନିତ ହୋଇଛି ।

ମୋର ସମିତି ସହିତ ପ୍ରାୟ ୫୦ ବର୍ଷର ସମ୍ପର୍କ । ୧୯୫୯ ମସିହାରେ ଡାକ୍ତର ରାମକୃଷ୍ଣ ମହାନ୍ତି, ମେଡିକାଲ କଲେଜରେ ଯେ ଥିଲେ ମୋର ଶିକ୍ଷକ ଓ ସମିତିର ଜଣେ ପ୍ରତିଷ୍ଠାତା ସଭ୍ୟ, ମୋତେ ସମିତିର ଗୋଟିଏ ସଭାକୁ ତାଙ୍କ ସାଙ୍ଗରେ ନେଇକରି ଯାଇଥିଲେ । ପରେ ୧୯୬୧ ମସିହାରେ AIIMS ଦିଲ୍ଲୀରୁ M.D. କରି ଫେରିବା ପରଠାରୁ ପ୍ରାୟ ସମିତିର ସମସ୍ତ ସଭାସମିତି ଓ ଅନ୍ୟ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରିଛି । ଏବେ ମଧ୍ୟ ନିବିଡ଼ ଭାବରେ ଜଡ଼ିତ । ମୁଁ ସମିତିର ଆଜୀବନ ସଭ୍ୟ, ଯେତେବେଳେ ଯେଉଁ ଦାୟିତ୍ୱ ଆସିଛି ତାକୁ ସମସ୍ତ ନିଷ୍ଠାର ସହ କାର୍ଯ୍ୟକାରୀ କରୁଛି ।

ଏ ସବୁର ପଛରେ ଜଣେ ମହାନ୍ ପୁରୁଷଙ୍କର ନିର୍ଦ୍ଦେଶ, ପ୍ରେରଣା, ଉତ୍ସାହ କାର୍ଯ୍ୟ କରିଛି । ସେ ହେଉଛନ୍ତି ମୋର ପିତୃତୁଲ୍ୟ ପୂଜ୍ୟ ଶିକ୍ଷକ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ।

ଜୟ ବିଜ୍ଞାନ ପ୍ରଚାର ସମିତି ।

କାର୍ଯ୍ୟନିର୍ବାହୀ ସଭାପତି
ବିଜ୍ଞାନ ପ୍ରଚାର ସମିତି

---

# ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ ସ୍ମରଣେ

**ପ୍ରଫେସର ଭାସ୍କର ଦାଶ**

ବିଶିଷ୍ଟ ବୈଜ୍ଞାନିକ, ଶିକ୍ଷକ, ଓଡ଼ିଶାର ଲୋକପ୍ରିୟ ବିଜ୍ଞାନ ଲେଖକ, ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା ଏବଂ ଓଡ଼ିଶାରେ ଅସଂଖ୍ୟ ଲୋକପ୍ରିୟ ବିଜ୍ଞାନ ଲେଖକଙ୍କର ସୃଷ୍ଟିକର୍ତ୍ତା ଆଜି ଆଉ ଇହଧାମରେ ନାହାନ୍ତି । 'ପୃଥିବୀ ବାହାରେ ମଣିଷ' ଉପନ୍ୟାସ ଲେଖି ସାରା ଓଡ଼ିଶାରେ ଚହଳ ପକାଇ ଥିବା ବ୍ୟକ୍ତି ନିଜେ ପୃଥିବୀ ବାହାରକୁ ଚାଲିଯାଇଛନ୍ତି । କିନ୍ତୁ ତାଙ୍କ ସ୍ମୃତି ପ୍ରତ୍ୟେକ ଓଡ଼ିଆଙ୍କ ହୃଦୟରେ ଚିରଦିନ ସ୍ମରଣୀୟ ହୋଇ ରହିବ ।

ତାଙ୍କର ଛାତ୍ର, ସହକର୍ମୀ ଏବଂ ବିଜ୍ଞାନ ଗବେଷଣାରେ ସହଯୋଗୀ ଆଦି ଅନେକ ବିଷୟରେ ମୁଁ ତାଙ୍କର ଅକୁଣ୍ଠିତ ସାହାଯ୍ୟ, ସହାନୁଭୂତି ଏବଂ ଆଶୀର୍ବାଦ ଲାଭ କରିଥିବାରୁ ନିଜକୁ ଗର୍ବିତ ମନେ କରୁଅଛି । ତାଙ୍କରି ଦ୍ୱାରା ପ୍ରଭାବିତ ହୋଇ ମୁଁ ମଧ୍ୟ କେତେଗୁଡ଼ିଏ ବିଜ୍ଞାନଭିତ୍ତିକ ପ୍ରବନ୍ଧ ଲେଖି ପାରିଥିଲି ଏବଂ ତାହା ବିଭିନ୍ନ ବିଜ୍ଞାନ ପତ୍ରିକା ଓ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଅଛି । ତାଙ୍କର ଅଗଣିତ ଛାତ୍ରଛାତ୍ରୀ ମଧ୍ୟ ଆଜି ମୋ ପରି ତାଙ୍କୁ ଝୁରି ହେଉଥିବେ । ଏସବୁ ବିଷୟ ଲେଖିଲେ ଲେଖା ସରିବ ନାହିଁ । କିନ୍ତୁ ମୁଁ ଯେଉଁ ବିଷୟରେ କିଛି ଲେଖିବାକୁ ଯାଉଛି ତାହା ବୋଧହୁଏ ଅନ୍ୟ କୌଣସିଙ୍କ ଭାଗ୍ୟରେ ଘଟି ନାହିଁ । ତାହା ହେଉଛି ସେ ଓ ତାଙ୍କର ପରିବାର (ପତ୍ନୀ, ଗୋଟିଏ ପୁଅ ବାବୁଲି (ନନ୍ଦନନ୍ଦନ) ଓ ବଡ଼ ଝିଅ ଝୁନୁ (ଜ୍ୟୋତ୍ସ୍ନା)ଙ୍କ ସହିତ ସୁଦୂର ଆମେରିକାର ବୋଷ୍ଟନ୍ ସହରରେ ତାଙ୍କ ଘରେ ଦୀର୍ଘ ଏକ ମାସରୁ ଊର୍ଦ୍ଧ୍ୱ ସମୟ କଟାଇବା । ସେ ଅନୁଭୂତି ମୁଁ କେବେ ଏ ଜୀବନରେ ଭୁଲିପାରିବି ନାହିଁ । ମୋତେ ଲାଗୁଥିଲା ମୁଁ ଯେପରି ଭାରତରେ ଗୋଟିଏ ଘର ଛାଡ଼ି ଯାଇ ଆମେରିକାରେ ଆଉ ଗୋଟିଏ ଘର ପାଇଯାଇଛି । ସାର୍ ଓ ମାଡାମ୍ ମୋତେ ନିଜ ପୁଅଭଳି ସ୍ନେହ କରୁଥିଲେ । ମୁଁ ଯେତେବେଳେ ବ୍ରାଣ୍ଡାଇସ୍ ୟୁନିଭର୍ସିଟିରୁ ଫେଲୋସିପ୍ ପାଇଲି ସେତେବେଳେ ପ୍ରଫେସର ମହାପାତ୍ର ସେହି ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିଲେ । ମୋର ଫେଲୋସିପ୍ ପାଇବାରେ ତାଙ୍କର କିଛି ଅବଦାନ ଯେ ନିଶ୍ଚୟ ଥିବ ଏଥିରେ ସନ୍ଦେହ ନାହିଁ । ସେତେବେଳେ ଆମେରିକାକୁ ଗୋଟିଏ ଚିଠି ଲେଖି ତା'ର ଉତ୍ତର

ପାଇବାକୁ ପ୍ରାୟ ୧୫/୨୦ ଦିନ ଲାଗୁଥିଲା । ମୋର ଯିବା ପୂର୍ବରୁ ସାର୍‌ଙ୍କଠାରୁ ଚିଠି ପାଇଥିଲି ଯେ ମୁଁ ବୋଷ୍ଟନ୍‌ରେ ପହଞ୍ଚିବା ସମୟରେ ସାର୍ ଏୟାରପୋର୍ଟରେ ଥିବେ ଓ ମୋତେ ସାଙ୍ଗରେ ତାଙ୍କ ଘରକୁ ନେଇଯିବେ । ମୁଁ ଏୟାରପୋର୍ଟରେ ପହଞ୍ଚି ସବୁ ଚେକ୍ ସାରିଲା ପରେ ଗ୍ଲାସ୍ ମଧ ଦେଇ ଦେଖିଲି ଯେ ବାହାରେ ସାର୍ ଦେଖାଯାଉ ନାହାନ୍ତି । ମୁଁ ଟିକିଏ ବିବ୍ରତ ହୋଇ ପଡ଼ିଲି କାରଣ ସେଠାରେ ମୋର ଆଉ କେହି ଜଣା ନାହାନ୍ତି । ପାଖରେ ପଇସା ମାତ୍ର ୮ ଡଲାର । କିଛି ସମୟ ପରେ ଦେଖିଲି ଜଣେ ଶାଢ଼ି ପିନ୍ଧିଥିବା ଭଦ୍ର ମହିଳା ଓ ଜଣେ ଆମେରିକୀୟ ମହିଳା ସେଠାରେ ଠିଆ ହୋଇ କାହାକୁ ଖୋଜିଲା ଭଳି ଚାହୁଁଛନ୍ତି । ମୁଁ ଗେଟ୍ ବାହାରକୁ ଆସିଲା ପରେ ଶାଢ଼ି ପିନ୍ଧା ମହିଳା ଜଣକ ପଚାରିଲେ, 'ତୁମେ କ'ଣ ଭାସ୍କର ?' ମୁଁ ହଁ ବୋଲି କହିଲି, ମନରେ ଟିକିଏ ଆଶାର ସଞ୍ଚାର ହେଲା । ସେ କହିଲେ, 'ମୁଁ ମିସେସ୍ ମହାପାତ୍ର, ତୁମକୁ ନେବାକୁ ଆସିଛି । ମୁଁ ମାଡାମ୍‌ଙ୍କୁ ଆଗରୁ ଦେଖି ନ ଥିଲି । ଚିହ୍ନା ହେବା ପରେ ଭଗବାନ୍‌ଙ୍କୁ ଅଶେଷ ଧନ୍ୟବାଦ ଦେଲି । ତା'ପରେ ସେ ତାଙ୍କର ବନ୍ଧୁ ମିସେସ୍ ଲୁଡେରଙ୍କ ସହିତ ପରିଚୟ କରାଇଦେଲେ ଏବଂ କହିଲେ ଯେ ସାର୍‌ଙ୍କୁ ବହୁତ ହାଡ଼ଫୁଟି ହୋଇଛି । ତେଣୁ ମୁଁ ତୁମକୁ ନେବାକୁ ଆସିଛି ।

ତା'ପରଠାରୁ ମୁଁ ଆଉ ବିଦେଶରେ ନ ଥିଲି । ମୋତେ ଲାଗିଲା ସତେ ଯେପରି ମୁଁ ନିଜ ଘରେ ଅଛି । ସାର୍ ଓ ମାଡାମ୍‌ଙ୍କ ସ୍ନେହ ଶ୍ରଦ୍ଧା ମୁଁ କେବେହେଲେ ଭୁଲିପାରିବି ନାହିଁ । ତା' ପରଦିନ ସାର୍ ତାଙ୍କର ଜଣେ ସାଙ୍ଗଙ୍କ ସାଥିରେ ମୋତେ ୟୁନିଭରସିଟିକୁ ଜଏନ୍ କରିବାକୁ ପଠାଇଦେଲେ । ସାର୍‌ଙ୍କ ଘରେ ପ୍ରାୟ ୧ମାସ ପର୍ଯ୍ୟନ୍ତ ରହିଲି, କାରଣ ସାର୍‌ଙ୍କ ପରେ ପିଲା ଦୁହିଁଙ୍କୁ ମଧ ହାଡ଼ଫୁଟି ହେଲା । ସମସ୍ତେ ଭଲ ହେବା ପରେ ତାଙ୍କୁ ଆଉ କିଛି ଦିନ ରହିବାକୁ ପଡ଼ିଲା । କାରଣ ଦାଗ ନ ଲିଭିଲା ପର୍ଯ୍ୟନ୍ତ ସେମାନେ ପ୍ଲେନ୍‌ରେ ଆସିବାକୁ ଛାଡ଼ିବେ ନାହିଁ । ଏହି ସମୟ ମଧରେ ସାର୍‌ଙ୍କଠାରୁ ସେଠାରେ ଗବେଷଣା ସମ୍ବନ୍ଧରେ କିଛି ଉପଦେଶ ମଧ ପାଇଲି । ସେହି ରହଣୀର ଅନୁଭୂତି ଦୀର୍ଘ ପଚାଶ ବର୍ଷ ପରେ ଏବେ ବି ମୋ ଆଖିରେ ଜଳଜଳ ହୋଇ ଦେଖାଯାଉଅଛି । ମାଡାମ୍‌ଙ୍କ ହାତ ରନ୍ଧା ଯେ ଥରେ ଖାଇଥିବ ସେ କେବେ ତାକୁ ଭୁଲିପାରିବ ନାହିଁ । ତା'ଛଡ଼ା ସାର୍‌ଙ୍କ ଫରମାସି ଆଜି ପକୋଡ଼ି କର କାଲି ଚୁଙ୍ଗୁଡ଼ି ମାଛ ତରକାରୀ ଓ କଖାରୁଫୁଲ ଭଜା ଇତ୍ୟାଦି ଇତ୍ୟାଦି । ସାର୍ ଓ ମାଡାମ୍‌ଙ୍କ ବାପମା'ତୁଲ୍ୟ ସ୍ନେହ ପିଲାଙ୍କ ସହ ହସଖୁସି ଗପ, ବୋଷ୍ଟନ୍‌ର ସବୁ ଭଲ ଭଲ ଜାଗା ବୁଲି ଦେଖିବା, ସପିଙ୍ଗମଲ୍‌ରୁ ଜିନିଷ କିଣା ଇତ୍ୟାଦିରେ ସମୟ କଟିଗଲା । ତା'ପରେ ସାର୍ ପିଲାମାନଙ୍କ ସହିତ ଭାରତ ଫେରିଆସିଲେ ଆଉ ମୁଁ ସେଠାରେ ୧ବର୍ଷ କଟାଇ ଏବଂ M.I.T. ରେ ଆଉ ଦୁଇବର୍ଷ ଗବେଷଣା କରି ଭାରତ ଫେରିଲି ।

ସାର୍ ଓ ମାଡାମ୍ ଭାରତ ଫେରିଲା ପରେ ମୋର ପିଲାପିଲି ତାଙ୍କରି ଘର ପାଖରେ ଗୋଟିଏ ଭଡ଼ା ଘରେ ରହୁଥିଲେ । ସେମାନେ ପ୍ରାୟ ମୋ ପରିବାରର ଭଲମନ୍ଦ ସବୁବେଳେ ବୁଝୁଥିଲେ । ଅସୁବିଧା ସମୟରେ ସାହାଯ୍ୟ ମଧ କରୁଥିଲେ । ମୁଁ ଫେରିବା ପରେ କଟକରେ ଅଳ୍ପଦିନ ରହି ବାଣୀବିହାର ଚାଲିଆସିଲି । ଅବସର ପରେ କଟକରେ ନିଜ ଘରେ ରାଜାବଗିଚାରେ ଯାଇ ରହିଲି ଯାହାକି ସାର୍‌ଙ୍କ ଘରଠାରୁ ଖୁବ୍ ଅଳ୍ପବାଟ । ତେଣୁ ଅଧିକାଂଶ ସମୟରେ ମୁଁ ତାଙ୍କ ଘରକୁ ଯାଏ । ବିଜ୍ଞାନପ୍ରଚାର ସମିତିର ମିଟିଙ୍ଗ ମଧ ତାଙ୍କ ଘରେ ହେଉଥାଏ । ମୁଁ ଆଉ ମୋର ପରିବାର ସାର୍ ଓ ମାଡାମ୍‌ଙ୍କଠାରୁ ଯେତିକି ସ୍ନେହ ଓ ସହାନୁଭୂତି ପାଇଛନ୍ତି ତାହା କେବେ ଭୁଲି ହେବ ନାହିଁ ।

ମାଡାମ୍ ଓ ସାର୍ ଥିଲେ ଗୋଟିଏ ବୃନ୍ତର ଦୁଇଟି ଫୁଲ । ଗୋଟିଏ ଫୁଲ ଝଡ଼ି ପଡ଼ିବା ପରେ ଆଉ ଗୋଟିଏ କେତେଦିନ ବା ରହିପାରିଥାନ୍ତା ?

ଭଗବାନ୍ କରନ୍ତୁ ଦୁହିଁଙ୍କର ପୁଣି ମିଳନ ହେଉ ପୃଥିବୀ ବାହାରେ । ମୋରି ପରି ସାର୍ ତାଙ୍କର ଅଗଣିତ ଛାତ୍ରଛାତ୍ରୀ, ବନ୍ଧୁବାନ୍ଧବ, ପ୍ରଶଂସକ ଓ ତାଙ୍କର ପିଲାମାନଙ୍କୁ ଶୋକ ସାଗରରେ ଭସାଇ ଦେଇଗଲେ । ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଅଛି । ଭଗବାନ୍ ଏହି ଦୁଃଖ ସହିବାକୁ ତାଙ୍କ ପିଲାମାନଙ୍କୁ ଶକ୍ତି ଦିଅନ୍ତୁ । ଏତିକି ମୋର ପ୍ରାର୍ଥନା ।

# ଡଃ ଗୋକୁଳାନନ୍ଦ ମହାପାତ୍ର – ଜଣେ ଆଦର୍ଶ ମଣିଷ

**ଡକ୍ଟର ପ୍ରଭାତ କୁମାର ମିଶ୍ର**

୧୯୫୧ ମସିହାରେ ମୁଁ ରେଭେନ୍‌ସା କଲେଜରେ ଆଇ.ଏସ୍‌ସି. ଶ୍ରେଣୀରେ ନାମ ଲେଖାଇଲି । ସେ ସମୟରେ ଡଃ ବଳଭଦ୍ର ପ୍ରସାଦ ପ୍ରଫେସର ଭାବରେ କାମ କରୁଥାନ୍ତି । ସେତେବେଳକୁ ସାର୍ ଓ ଡଃ ଡି.ଭି. ରମଣ ରାଓ ଓ ଡଃ ସୁକୁମାର ଆଦିତ୍ୟ ଏକ ସମୟରେ ଅଧ୍ୟାପକ ଭାବରେ ଶିକ୍ଷାଦାନ କରୁଥାନ୍ତି । ତେବେ ମୁଁ ବି.ଏସ୍‌ସି. ପଢ଼ିବା ସମୟରେ ସାର୍ ପ୍ରଥମଥରପାଇଁ ଅର୍ଗାନିକ୍ କେମେଷ୍ଟ୍ରି କ୍ଲାସ୍ ନେଲେ । ତାଙ୍କର ପଢ଼ାଇବା ଶୈଳୀ ଭିନ୍ନ ପ୍ରକାରର ଥିଲା । ଖାଲି ସିଲାବସ୍ ପାଠ୍ୟକ୍ରମ ଭିତରେ ତାଙ୍କର ଶିକ୍ଷାଦାନ ସୀମିତ ନ ରହି ବିଜ୍ଞାନର ବହୁ ଚମତ୍କାର ତଥ୍ୟମାନଙ୍କର ସେ ଅବତାରଣା କରୁଥିଲେ ।

ମୁଁ ଏମ୍.ଏସ୍‌ସି. ପାସ୍ କଲାପରେ ପୁରୀ କଲେଜରେ ଅଧ୍ୟାପକ ଭାବେ ଯୋଗ ଦେଲି । ପଢ଼ାଇବାବେଳେ ପିଲାମାନଙ୍କର କେତେକ ମୌଳିକ ପ୍ରଶ୍ନର ଉତ୍ତର ନ ପାଇଲେ ମୁଁ କଟକ ଆସି ସାର୍‌ଙ୍କର ସାହାଯ୍ୟ ନେଉଥିଲି । କଟକରେ ସାଇନ୍ସ କଂଗ୍ରେସ ୧୯୬୧–୬୨ର ଅଧିବେଶନ ରେଭେନ୍‌ସା କଲେଜରେ ହୋଇଥିଲା । ସେତେବେଳେ ମୁଁ ରେଭେନ୍‌ସା କଲେଜକୁ ବଦଳି ହୋଇଆସିଥାଏ । ସେ ସମୟରେ ସାର୍‌ଙ୍କର ଭାରତର ବିଭିନ୍ନ କେମେଷ୍ଟ୍ରି ପ୍ରଫେସରମାନଙ୍କ ସହ ଜଣାଶୁଣା ଓ ଆଳାପ ଦେଖିଅଛି । ସାର୍‌ଙ୍କ ସହ ଅନେକଥର ପ୍ରାକ୍ଟିକାଲ କ୍ଲାସ ନେଇଅଛି । କ୍ଲାସରେ ସେ ଗୁଣୁ ଗୁଣୁ ହୋଇ ଗୀତ ମଧ୍ୟ ଗାଉଥାନ୍ତି । ମୁଁ ୧୯୬୫ ମସିହାରେ ଉଚ୍ଚଶିକ୍ଷାପାଇଁ ଆମେରିକା ଗଲି । ସେ ସମୟରେ ଏକମାତ୍ର ସାର୍‌ଙ୍କର ରେଫରି ହିସାବରେ ଦେଇଥିବା ମନ୍ତବ୍ୟପାଇଁ ମୁଁ ଆମେରିକାରେ ଆସିଷ୍ଟାଣ୍ଟସିପ୍ ପାଇବା ସମ୍ଭବ ହୋଇଥିଲା । ସାର୍ ତା' ପୂର୍ବରୁ ପ୍ରଫେସର ମହେନ୍ଦ୍ର କୁମାର ରାଉତଙ୍କ ପାଖରେ ପିଏଚ୍.ଡି. କରିଥାନ୍ତି ଓ ପରବର୍ତ୍ତୀ ଅବସ୍ଥାରେ ଆମେରିକାର ବ୍ରାଣ୍ଡାଇସ୍ ୟୁନିଭରସିଟିରେ ପୋଷ୍ଟ–ଡକ୍ଟରାଲ କରି ଫେରିଥାନ୍ତି । ସେଥିପାଇଁ ତାଙ୍କ ମନ୍ତବ୍ୟ ମୋ ପାଇଁ ବହୁତ ସାହାଯ୍ୟ କରିଥିଲା ।

ମୁଁ କଲେଜରେ ପଢ଼ିବା ପୂର୍ବରୁ ତାଙ୍କ ସଙ୍ଗେ ଚିହ୍ନା ପରିଚୟ ହୋଇଥିଲା । ୧୯୪୯ ମସିହାରେ ରେଭେନ୍‌ସା କଲେଜ ଓ ମେଡିକାଲ କଲେଜର କିଛି ଅଧ୍ୟାପକଙ୍କୁ ନେଇ ସେ 'ବିଜ୍ଞାନ ପ୍ରଚାର ସମିତି' ଗଠନ କରିଥିଲେ ଯେଉଁଥିରେ ମୋ ବାପା ଡଃ ସଦାଶିବ ମିଶ୍ର ସଭାପତି ଥିଲେ । ସେ ଓ ଡଃ ରାଧାନାଥ ରଥ ସଂପାଦକ ଥିଲେ । ସେତେବେଳେ ଆମ ଘରେ ବହୁବାର ମିଟିଙ୍ଗ୍ ହେଉଥିବାରୁ ମୁଁ ସାର୍‌ଙ୍କର ସଂସ୍ପର୍ଶରେ ଆସୁଥିଲି । ସେ ଜଣେ ସ୍ୱାଭିମାନୀ ବ୍ୟକ୍ତି ହୋଇଥିବାରୁ ମାତୃଭାଷାରେ ବିଜ୍ଞାନକୁ ଜନସାଧାରଣଙ୍କ ପାଖରେ ପହଞ୍ଚାଇବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେ ସମିତିର ସଭାପତି ଭାବରେ ଶେଷପର୍ଯ୍ୟନ୍ତ ଏହି କାର୍ଯ୍ୟ ନିରବଚ୍ଛିନ୍ନ ଭାବରେ କରିଥିଲେ । ସେ ଖୁବ୍ ସଙ୍ଗୀତପ୍ରେମୀ ଥିଲେ । ଆମେରିକାରୁ ଫେରିବାବେଳେ ସେ ଗୋଟିଏ ରେକର୍ଡପ୍ଲେୟାର ଓ କିଛି ରେକର୍ଡ ମଧ୍ୟ ସାଙ୍ଗରେ ଆଣିଥିଲେ । ମୋର ଗୀତରେ ରୁଚି ଥିବା ଜାଣିବାରୁ ସେ ହଠାତ୍ ମୋତେ ଦିନେ କହିଲେ ଯେ କୌଣସି ଗୋଟିଏ ୟୁରୋପୀୟ ଦେଶରେ ବୁଲୁଥିବା ବେଳେ ଗୋଟିଏ ଗୀତ ଶୁଣିଲେ ଯାହା ହିନ୍ଦୀ ଫିଲ୍ମର ଗୀତର ନକଲ ଥିଲା । ସେ ସବୁ ରେକର୍ଡ ଆଣିଥିଲେ ଓ ମୋତେ ଘରେ ଶୁଣାଇଥିଲେ । ସେ ଅଧ୍ୟାପକ ଥିବା ବେଳେ ସର୍ବଦା ନିଜ କାମରେ ବ୍ୟସ୍ତ ଥାଆନ୍ତି । ଅନ୍ୟମାନଙ୍କ ବିଷୟରେ ଚର୍ଚ୍ଚା କରିବା କି ନିନ୍ଦା କରିବା ମୁଁ କେବେ ଅନୁଭବ କରି ନାହିଁ ।

ଶିକ୍ଷା ବିଭାଗରେ ଅନେକ ଲୋକ ଚାକିରି କରିଛନ୍ତି, ଅର୍ଥ ଲାଭ କରିଛନ୍ତି କିନ୍ତୁ ତାଙ୍କର ମନୋଭାବର ତୁଳନା ନାହିଁ । ସେ ନିଜ ଅର୍ଜିତ ଧନରୁ ଉତ୍କଳ ୟୁନିଭରସିଟି ଓ ରେଭେନ୍ସା ବିଶ୍ୱବିଦ୍ୟାଳୟ କେମେଷ୍ଟ୍ରି ଲାବୋରେଟରୀ, ସମ୍ପୂର୍ଣ୍ଣ ଉନ୍ନତୀକରଣ ଏକ ଭଲ ଲାଇବ୍ରେରୀ ଓ ଯନ୍ତ୍ରପାତି ରକ୍ଷଣାବେକ୍ଷଣପାଇଁ ବ୍ୟବସ୍ଥା କରିଛନ୍ତି । ସେ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଅନେକ ସମ୍ମାନର ଅଧିକାରୀ ଥିଲେ । ସେ'ତ ଭଲ ଶିକ୍ଷକ ଥିଲେ, ତାଙ୍କର ଅନ୍ୟାନ୍ୟ ଗୁଣ ଓ ଆଚରଣ ଯୋଗୁଁ ସେ ଜଣେ ଆଦର୍ଶ ପୁରୁଷରୂପେ ପରିଚୟ ସୃଷ୍ଟି କରିଥିଲେ ।

ତାଙ୍କର ମହାପ୍ରୟାଣରେ ମୁଁ ଆଜି ସମ୍ପୂର୍ଣ୍ଣ ମ୍ରିୟମାଣ । ବିଭୁଙ୍କ ପାଖରେ ତାଙ୍କର ଅମ୍ଳାନ ଆତ୍ମାର ସଦ୍‌ଗତି କାମନା କରିବା ସହ ତାଙ୍କର ପରିବାରବର୍ଗଙ୍କୁ ଏହି ଦୁଃଖ ସହିବାପାଇଁ ପ୍ରଭୁ ସେମାନଙ୍କୁ ଶକ୍ତି ଦିଅନ୍ତୁ, ଏହାହିଁ ପ୍ରାର୍ଥନା କରୁଛି ।

ପ୍ରଫେସରପଡ଼ା, କଟକ

---

# ରୋଗୀ ନିକେତନରୁ ବିଦାୟ ଯାତ୍ରା : ଏକ ମାର୍ମିକ ଅଭିବ୍ୟକ୍ତି

**ଡାଃ ଗିରିଜାନନ୍ଦନ ମହାପାତ୍ର**

ବୋଉ ୨୦୦୬ ମସିହା ଅକ୍ଟୋବର ୧୭ ତାରିଖରେ ଯାଇଥିଲା, ବାପାଙ୍କୁ ଚାହିଁ ଅନ୍ତତଃ ତା' ବିଦାୟର ଦୁଃଖ ଭୁଲି ଯାଇଥିଲି । ସେ ଥିଲେ ମୋର ସକଳ ସଂପଦର ଆଧାର – ଦୁଃଖ ଓ ଅଭାବ ଅନଟନର ସାହା ଭରସା । ସେ ପୁଣି ଜୁଲାଇ ୧୦ ତାରିଖ ରାତି ୯ ଘଟିକା ୩୦ ମିନିଟ୍‌ରେ ଆମକୁ ଦୁଃଖ ସାଗରରେ ଭସାଇଦେଇ ଚାଲିଗଲେ । ମୁଁ ହେଲି ହତଭାଗ୍ୟ, ମାଆ ବାପ ଛେଉଣ୍ଡ । ଏହାଠାରୁ ବଳି ଆଉ ଜୀବନରେ ଅଭାବବୋଧ କଣ ଥାଇପାରେ ! ମୋ ସୁଖରେ ସେ ଯେପରି ଖୁସି ହେଉଥିଲେ, ଦୁଃଖରେ ବି ସେ ସମଭାଗୀ ଦୁଃଖୀ ହେଉଥିଲେ ।

ଆଜି କର୍ତ୍ତବ୍ୟର ଆହ୍ୱାନରେ ମୁଁ ଘରଠାରୁ ସୁଦୂର ବମ୍ବେରେ ରହିଛି । ମାତ୍ର ମନ ମୋର ସବୁବେଳେ ବାପା ବୋଉଙ୍କ ପାଖରେ ଥାଏ । ଆଜି ବାପା ବୋଉ ନାହାନ୍ତି ଭାବିଲା ବେଳକୁ ମୋ' ଉପରେ ଆକାଶ ଛିଡ଼ିପଡ଼ିଲା ପରି ଲାଗୁଛି । ମୁଁ ଘରର ବଡ଼ ପୁଅ – ସବୁ ଦାୟିତ୍ୱ ମୋର – ଏବେ ଆହୁରି ଅଧିକ ବଢ଼ିଗଲା । ସେ ସବୁ ତାଙ୍କରି ଆଶୀର୍ବାଦରେ ସମ୍ପନ୍ନ କରିବି ।

ମୋତେ ମଣିଷ ପରି ମଣିଷଟିଏ କରି ଗଢ଼ିବାରେ ବାପା ବୋଉଙ୍କର ଅବଦାନ ଯଥେଷ୍ଟ । ମୁଁ ଡାକ୍ତର ହୁଏ, ଏହା ଥିଲା ବାପାଙ୍କର ପ୍ରବଳ ଇଚ୍ଛା । ସାଇନ୍ସ ପାଠ ତାଙ୍କ ନିର୍ଦ୍ଦେଶରେ ପଢ଼ିଲି । ପରେ ଡାକ୍ତରୀ ପାଠ ପଢ଼ିବାପାଇଁ ବାପା ହିଁ ମୋ ଭିତରେ ପ୍ରେରଣା ଭରିଦେଲେ । ଏମ୍.ବି.ବି.ଏସ୍ ପରେ ବାପା ଚାହୁଁଥିଲେ ମୁଁ ଏମ୍.ଡି. ଶେଷ କରି ଡାକ୍ତର ହୁଏ । ତାହାହିଁ ହେଲା । ନୂଆ ଦିଲ୍ଲୀରେ ଏମ୍.ଡି. କଲି । ଓଡ଼ିଶା ବାହାରେ ବ୍ୟାପକ ପରିସରକୁ ମୋତେ ଆସିବାପାଇଁ ସୁଯୋଗ ମିଳିଲା । ବାପା କହିଲେ, 'ହଁ ବାହାରକୁ ଯାଆ, ବେଶୀ କଥା ଜାଣିପାରିବୁ ।''

ବୋଉ ଚାଲିଗଲା ପରେ, ବାପାଙ୍କୁ ବହୁ ଯତ୍ନରେ ଆମେ ରଖିଥିଲୁ । ଦିନେ ଆଲମାରିରୁ କ'ଣ କାଢୁଥିବା ବେଳେ ସେ ତଳେ ପଡ଼ିଯିବାରୁ ତାଙ୍କ ହାତ ଭାଙ୍ଗିଗଲା । ଭୁବନେଶ୍ୱର ଆପୋଲୋ ହସ୍‌ପିଟାଲରେ ତାଙ୍କୁ ଚିକିତ୍ସାପାଇଁ ଭର୍ତ୍ତି କରାଗଲା । ସୁସ୍ଥ ହୋଇ ଘରକୁ ଫେରିଲେ । ବଡ଼ ଭଉଣୀ ଟୁନୁର ପୁଅ ବିବାହରେ ସେ ଯୋଗଦେଇ ଆନନ୍ଦ ଅନୁଭବ କରିଥିଲେ । ମୁଁ ଭାବିଲି

– ବାପାଙ୍କୁ ନିଜ ପାଖକୁ ନେଇଯିବି, ଏଠାରେ ଆମ ପାଖରେ ରହିଲେ ଖୁସିହେବେ । ଆମେ ବି ତାଙ୍କୁ ପାଖରେ ପାଇ ଆନନ୍ଦିତ ହେବୁ । ସେ ବମ୍ବେରେ ଥିବାବେଳେ, ମୁଁ ତାଙ୍କୁ ଗାଧୋଇ ଦିଏ – ଖୁଆଇଦିଏ, ସେ ନିଜେ ଚା' ଖାଆନ୍ତି । ସ୍ୱାଭାବିକ ଭାବେ ଖିଆପିଆ କରୁଥିଲେ ।

କିଛି ଦିନ ପରେ ମୋ ସ୍ତ୍ରୀ ରୀନା (ଡା. ପ୍ରଗତି ମହାପାତ୍ର)ଙ୍କୁ ଆମେରିକା ଯିବାକୁ ହେଲା । ସେଠାରେ ମୋ ଝିଅ କ୍ୱାଇଁ ରହନ୍ତି । ଝିଅ ଲିସ୍ପାର ଡେଲିଭରୀପାଇଁ ତାଙ୍କୁ ସେଠାକୁ ଯିବାକୁ ହେଲା । ସେ ସେଠାରେ ଏକା ଚଳିବା, ଖାଇବା ଓ ଅନ୍ୟାନ୍ୟ କାମ ସ୍ୱାଭାବିକ ଭାବେ ବର୍ତ୍ତମାନ ପରିସ୍ଥିତିରେ କରିବା ସମ୍ଭବ ନୁହେଁ । ସେଥିପାଇଁ ରୀନା ଆମେରିକା ଯିବାରୁ ବାପାଙ୍କୁ ବମ୍ବେରେ ରଖିବା ଭଲ ମନେ କଲି ନାହିଁ । ସାନଭାଇ ଡଃ ନନ୍ଦନନ୍ଦନ ମହାପାତ୍ର (ବାବୁଲି) ଅହମ୍ମଦାବାଦରେ ଚାକିରି କରେ । ତା' ସ୍ତ୍ରୀ ସୀମାନୀ ବି ସେଠାରେ ଅଛି । ତେଣୁ ବାପାଙ୍କୁ ସାନଭାଇ ଓ ଭାଇବୋହୂ ସୀମାନୀ ପାଖରେ ରଖିଲି । ଦୁହେଁଯାକ ତାଙ୍କର ବହୁ ଯତ୍ନ ନେଇଛନ୍ତି । ମୁଁ ସବୁ ସମୟରେ ଫୋନ୍‌ରେ ତାଙ୍କ ଭଲମନ୍ଦ ସ୍ୱାସ୍ଥ୍ୟାବସ୍ଥା ସମ୍ପର୍କରେ ଖବର ନେଉଥାଏ ।

ମେ ୩୦ ତାରିଖ ରାତିରେ ସେ କାହାକୁ କିଛି ନ କହି, ନିଜେ ପରିସ୍ରା କରିବାପାଇଁ ପାଇଖାନାକୁ ଯାଉଥିଲେ । ତଳେ ପଡ଼ିଗଲେ । ଅଧିକ ଯନ୍ତ୍ରଣା ଅନୁଭବ କରିବା ପରେ, ମୋ ସାନଭାଇ ବାବୁଲିକୁ ଡାକିଲେ । ବାବୁଲି ଓ ତା' ସ୍ତ୍ରୀ ଦୁହେଁ ବାପାଙ୍କୁ ଟେକାଟେକି କରି, ପରିସ୍ରା କରାଇ ଆଣି ବିଛଣାରେ ଶୁଆଇଦେଲେ । ଭଲ ଥିଲେ । ସକାଳେ ବହୁ ସମୟ ପର୍ଯ୍ୟନ୍ତ ବିଛଣାରୁ ଉଠିଲେ ନାହିଁ । ସେ ଅଚେତ ହୋଇଯାଇଥିବାର ଜାଣିବାକୁ ପାଇ, ବାବୁଲି ବ୍ୟସ୍ତ ହୋଇପଡ଼ିଲା । ସଙ୍ଗେ ସଙ୍ଗେ ଘରୋଇ ଷ୍ଟାର୍ଲିଂ ହସ୍‌ପିଟାଲକୁ ନିଆଗଲା । ମୁଁ ଏ ଖବରପାଇ ଡାକ୍ତରଙ୍କ ସହିତ ପରାମର୍ଶ କଲି । ବିଶେଷଜ୍ଞ ଡାଃ ପରିମଳ ତ୍ରିପାଠୀ ବାପାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରି ବ୍ରେନ୍‌ରେ ରକ୍ତଜମାଟ ବାନ୍ଧିଛି ମତ ଦେଲେ । ଅପରେସନ ଏହାର ଶେଷ ଚିକିତ୍ସା କହିବାପରେ ମୁଁ ମଧ୍ୟ କେତେକ ବିଶେଷଜ୍ଞଙ୍କୁ ପଚାରି ବୁଝିଲି । ମଇ ୩୧ ତାରିଖରେ ଅପରେସନ ପରଠାରୁ ଆଇସିୟୁରେ ତାଙ୍କୁ ରଖାଗଲା । ଭେଣ୍ଟିଲେଟର ଲାଗିଲା । ଚେତା ଫେରିଲା ନାହିଁ । ମୁଁ ବମ୍ବେରେ ଥାଇ ତାଙ୍କ କଥା ବୁଝୁଥାଏ । ଡାକ୍ତରଙ୍କ ସହ ପରାମର୍ଶ କରୁଥାଏ । ମଝିରେ ସାମାନ୍ୟ ସ୍ୱାସ୍ଥ୍ୟର ଉନ୍ନତି ଦେଖାଯିବାପରେ, ତାଙ୍କୁ ସାଧାରଣ ବେଡ୍‌କୁ ଅଣାଯାଇଥିଲା । ଭେଣ୍ଟିଲେଟର କାଢ଼ି ଦିଆଗଲା । ଦେଖାଗଲା – ଅବସ୍ଥାର ପୁନରାବୃତ୍ତି ହେଉଛି । ମୁଁ ବମ୍ବେରେ ଡାକ୍ତରଙ୍କ ସହିତ ପରାମର୍ଶ ସହିତ ଡାଃ ତ୍ରିପାଠୀଙ୍କ ସହିତ ପରାମର୍ଶ କରି ପୁଣି ଆଇସିୟୁକୁ ନେଇଗଲୁ । ଭେଣ୍ଟିଲେଟର ଲଗାଗଲା । ସେ ଅଚେତ ରହିଥିଲେ ହେଁ ଶ୍ୱାସପ୍ରଶ୍ୱାସ ନେଇପାରୁଥିଲେ । ନେଜାଲ୍ ଫିଡ଼ିଂ ଚାଲିଥାଏ । ଅଧିକ ଭଲ ଚିକିତ୍ସା ହେବା ଆଶାରେ ସ୍ୟାମବେଦ ହସ୍‌ପିଟାଲକୁ ନେଲୁ । ସେଠାରେ ଅଳ୍ପଦିନ ଚିକିତ୍ସା ପରେ ଜୁଲାଇ ୧୦ ତାରିଖରେ ସ୍ୱାସ୍ଥ୍ୟର ଅବନତି ଦେଖାଗଲା । ମୁଁ ବମ୍ବେରେ ଥାଇ ସବୁ ଖବର ଅନ୍ତର ଟିକିନିଖି କରି ନେଉଥାଏ । ଡାକ୍ତର ଓ ବାବୁଲି ସହିତ ମୋର ଯୋଗାଯୋଗ ଥାଏ । ମାତ୍ର ଆମର ଦୁର୍ଭାଗ୍ୟ, ଡାକ୍ତରଙ୍କ ସମସ୍ତ ଚେଷ୍ଟା ଓ ଆମର ସକଳ ଯତ୍ନ ସତ୍ତ୍ୱେ ସେ ଚାଲିଗଲେ । ସେଦିନ ରାତି ୯ଟା ୩୦ ମିନିଟ୍‌ରେ ସ୍ୱର୍ଗବାସୀ ହେଲେ । ବାବୁଲି ଓ ସୀମାନୀ ତାଙ୍କ ପାଖରେ ଥିଲେ । ମୋତେ ଖବର ଦେଲେ । ବାବୁଲି ତାଙ୍କୁ ରାତି ରାତି ହସ୍‌ପିଟାଲରେ ଜଗିରହିଛି । ସୀମାନୀ ବି ତାଙ୍କ ପାଖେ ପାଖେ ରହିଥିଲା ।

ମୁଁ ବାପାଙ୍କ ମୃତ୍ୟୁ ଦେଖିପାରିଲି ନାହିଁ । କାରଣ ଘର ଛାଡ଼ି ବମ୍ବେରୁ ଯିବା ମୋ ପକ୍ଷେ ସମ୍ଭବପର ହେଉ ନ ଥିଲା । ଦୁଇ ଭାଇ କଥାବାର୍ତ୍ତା ହେଲୁ ।

ବାପାଙ୍କୁ ନିଶ୍ଚୟ ତାଙ୍କ କର୍ମସ୍ଥଳ ଓ ନିଜ ନିର୍ମିତ ବାସଭବନ କଟକର ଦୋଳମୁଣ୍ଡାଇକୁ ନେବା । ଏକମାତ୍ର ଫ୍ଲାଇଟ ହେଉଛି ମାଧ୍ୟମ । ରାତିରେ ଫ୍ଲାଇଟ୍ ବ୍ୟବସ୍ଥା ହୋଇ ନ ପାରିବାରୁ, ବାବୁଲି ବ୍ୟସ୍ତ ହୋଇ ମୋ ସହିତ ଯୋଗାଯୋଗ କଲା । ମୁଁ କହିଲି – "ବ୍ୟସ୍ତ ହଅନା – ନିଶ୍ଚୟ ଯେମିତି ହେଉ, ବାପାଙ୍କୁ କଟକ ନେବା ।" ଫ୍ଲାଇଟ୍ ବ୍ୟବସ୍ଥା ହେଲା । ଯେଉଁ ଫ୍ଲାଇଟ୍ ଠିକ୍ ହେଲା ତାହା ବମ୍ବେ ବାଟେ ଭୁବନେଶ୍ୱର ଯିବ । ଏଇଠି ମୋର ବାପାଙ୍କ ସହିତ ସାକ୍ଷାତ୍ ହେବ । ସାଥିରେ ତାଙ୍କ ଶବନେଇ ଭୁବନେଶ୍ୱର ବିମାନ ଘାଟୀରେ ପହଞ୍ଚିବୁ । ଦୁଇ ଭାଇ ଓ ଭାଇବୋହୂ ସୀମାନୀ ବାପାଙ୍କ ସହିତ ଫ୍ଲାଇଟ୍‌ରେ ଆସିଲୁ ।

ଭୁବନେଶ୍ୱର ବିମାନବନ୍ଦରରୁ 'ସ୍ୱର୍ଗରଥ' ଗାଡ଼ିରେ ବାଣୀବିହାରର ଉତ୍କଳ ବିଶ୍ୱବିଦ୍ୟାଳୟରେ ପହଞ୍ଚିବା ମାତ୍ରେ, ବିଶ୍ୱବିଦ୍ୟାଳୟର କୁଳପତିଙ୍କ ସମେତ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନେ ବାପାଙ୍କୁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜଣାଇଲେ । ପରେ ପୁଣି ତାଙ୍କ କର୍ମସ୍ଥଳ ଯେଉଁଠି ଅଧ୍ୟାପକ ଭାବେ ତାଙ୍କର ୩୫ ବର୍ଷରୁ ଅଧିକ କାଳ ବିତିଛି, ସେହି ରେଭେନ୍‌ସା କଲେଜକୁ ତାଙ୍କୁ ନିଆଗଲା । ସେଠାରେ କୁଳପତି ଓ ଅଧ୍ୟାପକ ତଥା ଛାତ୍ରଛାତ୍ରୀମାନେ ତାଙ୍କ ପ୍ରତି ଶ୍ରଦ୍ଧା ନିବେଦନ କରିବାପରେ, ନିଜ ବାସଭବନ ଦୋଳମୁଣ୍ଡାଇର 'ଆମ୍ରପଲ୍ଲୀ' ଅଣାଗଲା । ଅସଂଖ୍ୟ ଛାତ୍ର, ସହପାଠୀ, ସହକର୍ମୀ, ଶୁଭେଚ୍ଛୁ ଓ ଶୁଭାନୁଧ୍ୟାୟୀ ତାଙ୍କ ମରଶରୀରକୁ ଅପେକ୍ଷାକରି ଘଣ୍ଟା ଘଣ୍ଟା ଧରି ରହିଥାଆନ୍ତି । ଶ୍ରଦ୍ଧାଞ୍ଜଳି ସହ ପୁଷ୍ପଗୁଚ୍ଛରେ ମରଶରୀର ଆଚ୍ଛାଦିତ ହୋଇଗଲା ପରେ, ଶବ ଶୋଭାଯାତ୍ରା ଅଶ୍ରୁର ସ୍ରୋତରେ ଖାନନଗର ଶ୍ମଶାନକୁ ଆଗେଇଗଲା – ନିଃଶେଷ ହୋଇଗଲା ବାପାଙ୍କ ମରଶରୀର ।

ବାପାଙ୍କ ଜୀବଦ୍ଦଶାରେ କେତୋଟି କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲେହେଁ, ଆଉ କେତୋଟି ପୂର୍ଣ୍ଣାଙ୍ଗ ହୋଇପାରି ନାହିଁ । ରେଭେନ୍‌ସା ବିଶ୍ୱବିଦ୍ୟାଳୟ, କଟକରେ Advanced Organic Chemistry Lab, Analytical Lab & PG Seminar Library, ଉତ୍କଳ ବିଶ୍ୱବିଦ୍ୟାଳୟ ବାଣୀବିହାର ଭୁବନେଶ୍ୱରରେ Advanced Organic Chemistry Lab, Endowment Chair (Research Grant), କଟକର ଦୋଳମୁଣ୍ଡାଇଠାରେ ବାବା ସାଗର ଦାସ ସ୍କୁଲ୍ ପରିସରରେ 'ବିଜୟ ଗୋବିନ୍ଦ ଭବନ' ପ୍ରଭୃତି ନିଜ ଅର୍ଥ ବ୍ୟୟରେ ବାପା ତାଙ୍କ ଜୀବଦ୍ଦଶାରେ କରିଯାଇଛନ୍ତି । ଦୋଳମୁଣ୍ଡାଇଠାରେ ବାବା ସାଗରଦାସ ସ୍କୁଲରେ ନିର୍ମିତ ସଭାଗୃହରେ ୨୦୦ ଦର୍ଶକ-ଦର୍ଶକା ବସିପାରୁଛନ୍ତି । ଏଠାରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମମାନ କରାଯାଇପାରୁଛି । ତାଙ୍କ ନିଜ ଜନ୍ମପୀଠ ଭଦ୍ରକରେ ଯେଉଁଠି ହାଇସ୍କୁଲ ଶିକ୍ଷା ସମାପ୍ତ କରିଥିଲେ, ସେହି ଭଦ୍ରକ ହାଇସ୍କୁଲ (ବର୍ତ୍ତମାନ ଜିଲ୍ଲା ସ୍କୁଲ)ରେ ବିଜ୍ଞାନ ଗବେଷଣାଗାର ପ୍ରତିଷ୍ଠାପାଇଁ ପରିକଳ୍ପନା କରିଥିଲେ । ତା'ର ପ୍ରାଥମିକ କାର୍ଯ୍ୟ ଆରମ୍ଭ ହୋଇଯାଇଛି । ଘରର ବଡ଼ପୁଅ ଭାବେ ଏହାକୁ ପୂର୍ଣ୍ଣାଙ୍ଗ କରିବା ଦାୟିତ୍ୱ ମୋର ଅଧିକ ବୋଲି ମୁଁ ଅନୁଭବ କରିଛି । ତାଙ୍କ ଜନ୍ମପୀଠ ଭଦ୍ରକର କୁଆଁସ ଗୃହକୁ ମୋର ଗୋସମା ଫୁଲଦେବୀଙ୍କ ନାମରେ 'ଫୁଲଦେବୀ ସ୍ମୃତି ଭବନ' କରାଯିବାର ପରିକଳ୍ପନାକୁ ସାକାରରୂପ ଦିଆଯିବ । ଭଦ୍ରକର ଅବସରପ୍ରାପ୍ତ ସରକାରୀ କର୍ମଚାରୀ ସଂଘର ସ୍ଥାୟୀ କାର୍ଯ୍ୟାଳୟ ଗୃହପାଇଁ ବାପା ଜମି ଦାନ କରିଛନ୍ତି, ଏହାର ନାମକରଣ 'ନିତ୍ୟାନନ୍ଦ ଭବନ' ରଖାଯାଇଛି । ବାପାଙ୍କ ଅଧୁରା କାର୍ଯ୍ୟକ୍ରମକୁ ପୂର୍ଣ୍ଣାଙ୍ଗ କରିବା ଦିଗରେ ମୁଁ ପ୍ରତିଶ୍ରୁତିବଦ୍ଧ । ଏ ଦିଗରେ ତାଙ୍କର ଆଶୀର୍ବାଦ ମୋ ଉପରେ ବର୍ଷୁଥାଉ, ଏତିକି ମୋର ବିନମ୍ର ପ୍ରାର୍ଥନା । ସେ ମୋତେ ଅନେକ ଦେଇଛନ୍ତି, ମୁଁ ବା ତାଙ୍କୁ କ'ଣ ଦେଇ ପିତୃଋଣ ଶୁଝିପାରିବି ! କେବଳ ଲୁହର ପ୍ରଣତିଟିଏ ବାକୁଛି – ଏ ଅକିଞ୍ଚନ ହତଭାଗ୍ୟ । ଘେନା ହେଲେ କୃତାର୍ଥ ମନେକରିବି ।

କନସ୍‌ଲଣ୍ଟାଣ୍ଟ, ନିଉକ୍ଲିଅର ମେଡ଼ିସନ୍
ରାହିଜା ହସ୍‌ପିଟାଲ ଓ ଭାଟିଆ ହସ୍‌ପିଟାଲ,ମୁମ୍ବାଇ

# ମୋ ସ୍ମୃତିରୁ ଚେନାଏ

ପୀତାମ୍ବର ମିଶ୍ର

ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଥିଲେ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ 'ବିଜ୍ଞାନ ପ୍ରଚାର ସମିତି'ର ବରେଣ୍ୟ ସ୍ରଷ୍ଟା । ତାଙ୍କ ସହିତ ମୋର ସମ୍ପର୍କ ଦୀର୍ଘ ଦିନର । ତିନି ଦଶନ୍ଧି ଧରି ତାଙ୍କ ରଚିତ ବହୁ ଉପାଦେୟ ପୁସ୍ତକ 'ବିଦ୍ୟାପୁରୀ' ପ୍ରକାଶ କରିଆସିଛି । ସେଗୁଡ଼ିକ ଏବେବି ବହୁଳଭାବେ ପ୍ରସାରିତ ଏବଂ ପ୍ରଶଂସିତ । ପ୍ରକାଶନ ଉପଲକ୍ଷେ ଆମ ଭିତରେ ପ୍ରାୟ ମଝିରେ ମଝିରେ ଦେଖାସାକ୍ଷାତ୍ ହୁଏ । କାର୍ଯ୍ୟକ୍ରମ ଉପଲକ୍ଷେ କେବେ କେବେ ଦୋଳମୁଣ୍ଡାଇସ୍ଥିତ ବାସଭବନ 'ଆମ୍ରପଲ୍ଲୀ'କୁ ମୁଁ ଯାଉଥିଲି । ସେ ମଧ୍ୟ ତାଙ୍କ ବହି କାମ ଦେଖିବାକୁ ଆମ ଡି.ଟି.ପି. ବିଭାଗକୁ ଆସୁଥିଲେ । ଏହି ଅବସରରେ ମୁଁ ତାଙ୍କଠାରୁ ଅନେକ ସ୍ନେହ-ଶ୍ରଦ୍ଧା ଓ ଦିଗ୍‌ଦର୍ଶନ ପାଇଛି ।

ତାଙ୍କ ପାଣ୍ଡୁଲିପି ପ୍ରସ୍ତୁତ କରିବାର ଶୈଳୀ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଏହି ପରିଣତ ବୟସରେ ସେ ବୈଜ୍ଞାନିକ ଜ୍ଞାନକୋଷ ଭଳି ବିରାଟ ଗ୍ରନ୍ଥର ପାଣ୍ଡୁଲିପି ଯତ୍ନର ସହ ପ୍ରସ୍ତୁତ କରି ନିର୍ଦ୍ଧାରିତ ଚିତ୍ର ସହିତ ପ୍ରକାଶନପାଇଁ ଦେଇଥିଲେ । ନିର୍ଭୁଲ ମୁଦ୍ରଣ ଓ ନିର୍ଦ୍ଧାରିତ ସମୟରେ ପୁସ୍ତକ ପ୍ରକାଶନପାଇଁ ସେ ଗୁରୁତ୍ୱ ଦେଉଥିଲେ । ଶେଷ ପ୍ରୁଫ୍ ସେ ନିଜେ ଦେଖୁଥିଲେ ଏବଂ ବହିର ପ୍ରଚ୍ଛଦ ସମ୍ପର୍କରେ ସୂଚନା ଦେଉଥିଲେ । ମୋଟ ଉପରେ ଲେଖକର ଚିନ୍ତା, ଚେତନା, ଭାଷା, ଶୈଳୀ ଓ ତଥ୍ୟ ତଥା ତତ୍ତ୍ୱର ସଠିକତା ଉପରେ ସେ ଅଧିକ ସଚେତନ ଥିଲେ । ସେ ଥିଲେ ସୌନ୍ଦର୍ଯ୍ୟବୋଧ ଓ ସମୟାନୁବର୍ତ୍ତିତାର ପ୍ରତୀକ ।

ମୁଁ ତାଙ୍କ ରଚିତ ଲୋକପ୍ରିୟ ବିଜ୍ଞାନଭିତ୍ତିକ ଉପନ୍ୟାସ, ଗଳ୍ପ, ନାଟକ, ବିଶିଷ୍ଟ ବୈଜ୍ଞାନିକମାନଙ୍କ ଜୀବନୀ ସମେତ ଛାତ୍ରୋପଯୋଗୀ ବିଜ୍ଞାନଭିତ୍ତିକ ପୁସ୍ତକମାନ ପ୍ରକାଶ କରିଛି । ବଡ଼ ବିସ୍ମୟର କଥା ଯେ ନିଜର ଅସୁସ୍ଥତା ସତ୍ତ୍ୱେ ସେ ବୈଜ୍ଞାନିକ ଜ୍ଞାନକୋଷ ଗ୍ରନ୍ଥର ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ ପ୍ରସ୍ତୁତ କରି ତା'ର ଶେଷ ପ୍ରୁଫ୍ ଦେଖିଯାଇଛନ୍ତି ମଧ୍ୟ । ଗ୍ରନ୍ଥଟି ଏବେ ପ୍ରକାଶନ ଅବସ୍ଥାରେ ରହିଛି ।

ତାଙ୍କ ରଚିତ ପୁସ୍ତକ ପ୍ରକାଶନ ବ୍ୟତୀତ ତାଙ୍କ ମୁଖ୍ୟ ସଂପାଦନାରେ 'ବିଜ୍ଞାନ ପ୍ରଚାର ସମିତି' ଆନୁକୂଲ୍ୟରେ 'ବିଜ୍ଞାନାଲୋକ' ପତ୍ରିକାକୁ ବିଦ୍ୟାପୁରୀ ଗତ ଦୁଇ ଦଶନ୍ଧି ଧରି ପ୍ରକାଶ କରିଆସୁଅଛି ।

କାଳର ଅପ୍ରତିହତ ସ୍ରୋତରେ ସେ ଭାସିଗଲେ କେଉଁ ଅଜଣା ରାଇଜକୁ ୧୦ ଜୁଲାଇ ୨୦୧୩ ଶ୍ରୀଗୁଣ୍ଡିଚା ଦିନ । ତା' ସହିତ ଭାସିଗଲା ତାଙ୍କ ଆଖିର ସ୍ୱପ୍ନ ଓ ହୃଦୟର ଭାବ । ଅସମ୍ପୂର୍ଣ୍ଣ ରହିଗଲା ତାଙ୍କର କେତେ କେତେ ମଧୁମୟ କଳ୍ପନା-ଜଳ୍ପନା ଓ ଓଡ଼ିଆ ସାହିତ୍ୟ ତଥା ବିଜ୍ଞାନ ସାହିତ୍ୟକୁ ସମୃଦ୍ଧ କରିବାର ସମ୍ଭାବନା ।

## ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କ ପ୍ରଣୀତ
## ବିଦ୍ୟାପୁରୀ ପ୍ରକାଶିତ ପୁସ୍ତକାବଳୀ

### ଉପନ୍ୟାସ

ପୃଥିବୀ ବାହାରେ ମଣିଷ
ନିସ୍ତବ୍ଧ ଗୋଧୂଳି
ନିଶ୍ଚଳ ପୃଥିବୀ
ମୃତ୍ୟୁ ରଶ୍ମି
ଡାଇନୋସରର ହସ
ଉଡ଼ନ୍ତା ଥାଳିଆ

### ନାଟକ

ରାଜନର୍ତ୍ତକୀ

### ଜ୍ଞାନକୋଷ

ବୈଜ୍ଞାନିକ ଜ୍ଞାନକୋଷ – ୧ମ
ବୈଜ୍ଞାନିକ ଜ୍ଞାନକୋଷ – ୨ୟ
ବୈଜ୍ଞାନିକ ଶବ୍ଦକୋଷ

### ଜୀବନୀ

ନୋବେଲ ପୁରସ୍କାର ବିଜେତା ରସାୟନବିଜ୍ଞାନୀ
ସୋଭିୟେତ ବିଜ୍ଞାନ ଓ ବୈଜ୍ଞାନିକ

### ଅନ୍ୟ କେତେକ ଲୋକପ୍ରିୟ ବିଜ୍ଞାନ ପୁସ୍ତକ

ପୃଥିବୀର ସପ୍ତାଶ୍ଚର୍ଯ୍ୟ
ବିଜ୍ଞାନର ଶ୍ରେଷ୍ଠ ଆବିଷ୍କାର
ଯୁଗାନ୍ତକାରୀ ଆବିଷ୍କାର
ବିଜ୍ଞାନର ଜୟଯାତ୍ରା
ଚିନି କୁଆଡୁ ଆସେ
ପ୍ରାଚୀନ ଭାରତରେ ବିଜ୍ଞାନଚର୍ଚ୍ଚା ଓ ଗବେଷଣା
ଶାନ୍ତି ଓ ଅଶାନ୍ତିରେ ପରମାଣୁ ଶକ୍ତି
ବିଜ୍ଞାନ ଜଗତର ନୂଆ ନୂଆ ଆବିଷ୍କାର
ବିଜ୍ଞାନ ଜଗତର ନୂଆ ନୂଆ ଉଦ୍ଭାବନ
ଯନ୍ତ୍ର ମଣିଷ
ବିଜ୍ଞାନର କରାମତି
ଆମ ବିଶ୍ୱ ଓ ଆମ ପୃଥିବୀ
ଚନ୍ଦ୍ର ଅଭିଯାନ
ଚନ୍ଦ୍ରଲୋକରେ ମଣିଷ
କମ୍ପ୍ୟୁଟର
ଭିଟାମିନ୍ ଓ ହରମୋନ୍
ଏଣ୍ଟିବାୟୋଟିକ୍ସ
ଉଡ଼ନ୍ତା ଥାଳିଆ ଓ ଏହାର ରହସ୍ୟ
ବୈଜ୍ଞାନିକଙ୍କ ମଜାକଥା
ବିଜ୍ଞାନର ଆଦିପର୍ବ
ଦୂରବୀକ୍ଷଣ ଯନ୍ତ୍ର
ଅଣୁବୀକ୍ଷଣ ଯନ୍ତ୍ର
ଟେଲିଗ୍ରାଫ୍ ଓ ଟେଲିଫୋନ୍
ରେଡ଼ିଓ ଟ୍ରାନ୍‌ଜିଷ୍ଟର
ଆଧୁନିକ ଚଳଚ୍ଚିତ୍ର
ଆଇନଷ୍ଟାଇନ ଓ ଆପେକ୍ଷିକ ତଥ୍ୟ
ପରମାଣୁ ବୋମା
ରେଡ଼ିୟମ୍ ଓ କିଉରି
ଆପେକ୍ଷିକ ତଥ୍ୟ
କାଚର କୁହୁକ
ଆଲକାତରା
ତୁମକୁ ସତ ମୋତେ ମିଛ
ଭିଡିଓ ଟେଲିଫୋନ୍
ଟେଲିଭିଜନ
କିଏ ବେଶି ଭାରୀ
ଆମ ପରିବେଶ

---

# ବିଜ୍ଞାନାନନ୍ଦ ଗୋକୁଳାନନ୍ଦ

**ଅନ୍ନଦା ପ୍ରସାଦ ରାୟ**

ଆଧୁନିକ ବିଜ୍ଞାନ ଜଗତର ଜଣାଶୁଣା ବୈଜ୍ଞାନିକ ଡଃ ଗୋକୁଳାନନ୍ଦ ମହାପାତ୍ରଙ୍କ ସୁଦୀର୍ଘ ଜୀବନର ସୂର୍ଯ୍ୟାସ୍ତ ହୋଇଗଲା । ବିଜ୍ଞାନ ପ୍ରଚାର ସମିତି ମାଧ୍ୟମରେ ସେ ଓଡ଼ିଆ ଭାଷାରେ ବିଜ୍ଞାନର ଗୂଢ଼ ଅର୍ଥକୁ ଲୋକପ୍ରିୟ ଶୈଳୀରେ ଉପସ୍ଥାପନ କରି ଓଡ଼ିଆସାହିତ୍ୟ, ବିଜ୍ଞାନକୁ, ଏହି ସାହିତ୍ୟର ମର୍ଯ୍ୟାଦାରେ ଭୂଷିତ କରିଥିଲେ । ଏହା ଥିଲା ତାଙ୍କର ଅନବଦ୍ୟ କୃତି । କଟକ ଥିଲା ତାଙ୍କର ପ୍ରିୟ ସହର । ଏହି ସହରରେ ସେ ବହୁତ ବୁଦ୍ଧିଜୀବୀଙ୍କୁ ବିଜ୍ଞାନର ଚମତ୍କାରିତା ସମ୍ପର୍କରେ ବାସ୍ତବସତ୍ୟର ବିଦ୍ୟମାନତାକୁ ବୁଝାଇଥିଲେ ।

ବିଜ୍ଞାନ ଓ ସାହିତ୍ୟ ସମାନ ଭାବରେ ଦୁଇଟି ପକ୍ଷ । ସଭ୍ୟତାର ବିକାଶ ଫଳରେ ବିଜ୍ଞାନର ଜୟଯାତ୍ରା ଆଜି ପର୍ଯ୍ୟନ୍ତ ଅବ୍ୟାହତ ରହିଛି । ମାନବିକ ଜ୍ଞାନର ଯଥାର୍ଥ ଉପଯୋଗଦ୍ୱାରା ବିଜ୍ଞାନ ସୃଷ୍ଟି ହୁଏ । ଏହାର ମୂଳ ହେଉଛି ମାନବିକ ଅନ୍ୱେଷା – ଯାହା ତା'ର ଆଦିମ ଚରିତ୍ରଠାରୁ ଆଧୁନିକ ଚରିତ୍ର ଯାଏ କେବଳ ଅନ୍ୱେଷଣ କରିଆସିଛି । ଜ୍ଞାନ ପରିଭାଷାରେ ବିଜ୍ଞାନ ହିଁ ସତ୍ୟର ଉଦ୍‌ଘାଟନ କରେ ।

ଗୋକୁଳାନନ୍ଦବାବୁଙ୍କ ସମଗ୍ର ଜୀବନ ଥିଲା ଅଧ୍ୟୟନ, ଅନୁଧ୍ୟାନ, ଗବେଷଣା ଓ ସର୍ଜନାର ଜୀବନ । ରେଭେନ୍ସା ମହାବିଦ୍ୟାଳୟରେ ସେ ବିଜ୍ଞାନ ଅଧ୍ୟାପକ ଭାବେ କାର୍ଯ୍ୟ କରି ଆନ୍ତର୍ଜାତିକ ସ୍ତରରେ ବିଜ୍ଞାନର ଭୂୟୋଦର୍ଶିତାକୁ ନିଜର ଲେଖନୀ ମୁନରେ ଫୁଟାଇ ପାରିଥିଲେ । ଜଣେ କଳାର ଛାତ୍ର ମଧ୍ୟ ତାଙ୍କ ରଚିତ ବିଜ୍ଞାନ ପୁସ୍ତକକୁ ଆଗ୍ରହରେ ପଢୁଥିଲା । ବିଜ୍ଞାନବୈଚିତ୍ର୍ୟ ଭିତରେ ସେ ସୃଷ୍ଟିର ବୈଚିତ୍ର, ଜୀବନାନୁଭୂତିର ବୈଚିତ୍ର୍ୟ ସମ୍ବଳିତ କେତେକ ସୁଖପାଠ୍ୟ ସାହିତ୍ୟ ମଧ୍ୟ ସୃଷ୍ଟି କରିଥିଲେ । ଆମେରିକା ଭ୍ରମଣବୃତ୍ତାନ୍ତ ତାଙ୍କର ଗୋଟିଏ ଅତି ତଥ୍ୟପୂର୍ଣ୍ଣ ଆଲେଖ୍ୟ ।

ସେ ଥିଲେ ଜଣେ ପରିପୂର୍ଣ୍ଣ ମଣିଷ । ଜ୍ଞାନ-ବିଜ୍ଞାନ, ସାମାଜିକ, ପାରିବାରିକ ଜୀବନରେ ସେ ଅତ୍ୟନ୍ତ ସଙ୍ଗତିସମ୍ପନ୍ନ ଜୀବନଯାପନ କରିଥିଲେ । କୌଣସି ଦୃଷ୍ଟିରୁ ସେ ଅପୂର୍ଣ୍ଣ ନ ଥିଲେ । ତାଙ୍କର ସବୁଠାରୁ ବଡ଼ ଅବଦାନ ହେଲା ସେ ବହୁ ଯୁବବୈଜ୍ଞାନିକଙ୍କୁ ସୃଷ୍ଟି କରିଥିଲେ । ସେମାନଙ୍କୁ ପ୍ରେରଣା ଦେଉଥିଲେ । ବିଜ୍ଞାନ ସହିତ ଜୀବନର ସମନ୍ୱୟ ହେବା ଦିଗରେ ସେ ଶେଷ ପର୍ଯ୍ୟନ୍ତ ଚେଷ୍ଟା କରିଥିଲେ । ପରିଣତ ବୟସରେ ଅହମ୍ମଦାବାଦ୍‌ଠାରେ ତାଙ୍କର ଦେହତ୍ୟାଗ ହେଲା । ଏ ସମ୍ବାଦ ଥିଲା ଓଡ଼ିଶା ପାଇଁ ଏକ ଅପୂରଣୀୟ କ୍ଷତିର ଯନ୍ତ୍ରଣା । ତାଙ୍କର ସେହି ଜିଜ୍ଞାସା, ଅନୁସନ୍ଧିତ୍ସାର ବାଣୀରୁ ଓଡ଼ିଶାବାସୀ ବଞ୍ଚିତ ହୋଇଗଲେ ।

ଆମେ ସବୁ ବିଜ୍ଞାନର ବିସ୍ମୟକର ଅବଦାନରେ ଉପକୃତ ହୋଇ ଆସିଛୁ କିନ୍ତୁ ବିଜ୍ଞାନ କ'ଣ ସେ ବିଷୟରେ ମୁଣ୍ଡ ଖେଳାଉ ନାହିଁ । ତା'ର କାରଣ ବିଜ୍ଞାନ ଏକ ଅତି ଜଟିଳ ଓ ଦୀର୍ଘ ଅଧ୍ୟବସାୟର ବିଷୟ । ଏହାର ବ୍ୟାପକ କ୍ଷେତ୍ର ଓ ସୂକ୍ଷ୍ମାତିସୂକ୍ଷ୍ମ ପ୍ରକ୍ରିୟା ଜଣେ ସାଧାରଣ ମଣିଷର ଜାଣିବା କଷ୍ଟକର । କିନ୍ତୁ ଗୋକୁଳାନନ୍ଦବାବୁ ଆମ ଭଳି କୋଟି କୋଟି ସାଧାରଣ ମଣିଷଙ୍କ ମନ ଗ୍ରହଣ କରିବା ଭଳି ଭାଷାରେ ବିଜ୍ଞାନ ବିଷୟବସ୍ତୁକୁ ଉପନ୍ୟାସ ଯେମିତି ଆମ ଆଖି ଆଗରେ ଉପସ୍ଥାପିତ କରିଯାଇଛନ୍ତି, ତାହା ବାସ୍ତବିକ ଜଣେ ସୃଜନାତ୍ମକ ମଣିଷର କୃତିତ୍ୱ ଭଳି ବିବେଚିତ ହେବ । ବିଜ୍ଞାନର ବହୁ ବିଭାଗ ରହିଛି – ଶରୀର ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ପଦାର୍ଥବିଜ୍ଞାନ, ରସାୟନ ବିଜ୍ଞାନ, ଉଦ୍ଭିଦବିଜ୍ଞାନ, ମନୋବିଜ୍ଞାନ, ମହାକାଶ ବିଜ୍ଞାନ ପର୍ଯ୍ୟନ୍ତ ବିସ୍ତୃତ ବିଜ୍ଞାନର ବିବିଧ ଦିଗନ୍ତ ।

ବର୍ତ୍ତମାନ ତେଣୁ ଆମେ ଏକ ବିଜ୍ଞାନ ଯୁଗରେ ବାସ କରୁଛୁ ଏବଂ ଆମର ପ୍ରତ୍ୟେକ ବିଷୟରେ ଏକ ବୈଜ୍ଞାନିକ ଦୃଷ୍ଟିକୋଣ ରହିବା ଉଚିତ - ଏହା ଗୋକୁଳାନନ୍ଦବାବୁଙ୍କର ସମଗ୍ର ଜୀବନ ଓ ସାଧନାର ସଂଦେଶ ଥିଲା, ସମାଜପାଇଁ, ଭବିଷ୍ୟତ୍‌ପାଇଁ । ଓଡ଼ିଶାରେ ଆମ ଭାରତ ଇତିହାସରେ ପଠାଣି ସାମନ୍ତଙ୍କଠାରୁ ଯେଉଁ ବିଜ୍ଞାନର ଭୂମିକାଟିଏ ସୃଷ୍ଟି ହୋଇଥିଲା ତା'ର ଆହୁରି ଏକ ମହାନ୍ ଭୂମିକା ଡଃ ପ୍ରାଣକୃଷ୍ଣ ପରିଜାଙ୍କଦ୍ୱାରା ପ୍ରତିଷ୍ଠା ଲାଭ କରିଥିଲା । ଓଡ଼ିଶାରେ ବୈଜ୍ଞାନିକ ସୃଷ୍ଟି ହୋଇପାରିବେ, ଏହି ବିଶ୍ୱାସ ସୃଷ୍ଟି କରିବାରେ ଡଃ ଗୋକୁଳାନନ୍ଦ ମହାପାତ୍ର ଅଗ୍ରଣୀ ହୋଇ ଓଡ଼ିଶାରେ ଏକ ବୈଜ୍ଞାନିକ ପରିବେଶ ସୃଷ୍ଟି କରିଯାଇଛନ୍ତି । ସେଥିପାଇଁ ଓଡ଼ିଶା ଆଜି ତାଙ୍କର ଅନୁପସ୍ଥିତିକୁ ଅନୁଭବ କରୁଛି । ବ୍ୟଥିତ ହେଉଛି । ତାଙ୍କର ସାହିତ୍ୟ ମଧ୍ୟ ଉଚ୍ଚକୋଟୀର । ଜଣେ ଶିକ୍ଷାବିତ୍ ଭାବରେ ତାଙ୍କର ଖ୍ୟାତି ଅମଳିନ ରହିବ । ତାଙ୍କ ହାତଗଢ଼ା ଅନୁଷ୍ଠାନ ବିଜ୍ଞାନ ପ୍ରଚାର ସମିତି ଓଡ଼ିଶାରେ ବିଜ୍ଞାନର ପରିପ୍ରସାରପାଇଁ ଏହାର ସଦସ୍ୟମାନଙ୍କୁ ନିଶ୍ଚୟ ପ୍ରେରଣା ଦବ ।

---

# ସେ କେବଳ ସାର୍ ନ ଥିଲେ, ଥିଲେ ଗୁରୁ

**ପ୍ରଫେସର ସଦାନନ୍ଦ ତରାସିଆ**

ଅନ୍ୟ ଦିନ ପରି ସେ ଦିନ ମଧ୍ୟ ଦିନଟିଏ ଥିଲା । ଅପରାହ୍ଣ ସମୟ । ସନ୍ଧ୍ୟା ଆସନ୍ନପ୍ରାୟ । ଅସ୍ତଗାମୀ ସୂର୍ଯ୍ୟଙ୍କ ତୀର୍ଯ୍ୟକ୍ ରଶ୍ମିରେ ଚାରିଆଡ଼ ଆଲୋକିତ । ପଦାର୍ଥବିଜ୍ଞାନ ବିଭାଗର ସାମନା କ୍ୱାଡ୍ରେଙ୍ଗଲ୍ ଚଳଚଞ୍ଚଳ ହୋଇଉଠିଲା । ସେଦିନ କଲେଜ ଛୁଟିଥିବାରୁ ଛାତ୍ରଛାତ୍ରୀଙ୍କ ଗହଳି ନ ଥିଲା । କିନ୍ତୁ ତରୁଣ ତଥା ପ୍ରୌଢ଼ ଅଧ୍ୟାପକ ଓ ଅଧ୍ୟାପିକାମାନେ ମିଶି ଚୌକି ସଜାଡ଼ିବା ଓ ଦରି ବିଛାଇବାରେ ଲାଗି ପଡ଼ିଥିଲେ । ଅବଶ୍ୟ କେତେକ କର୍ମଚାରୀ ସାହାଯ୍ୟ କରୁଥିଲେ । ସେ ପଟେ ଫଟୋଗ୍ରାଫ୍‌ର ଗ୍ରୁପ୍ ଫଟୋ ନେବାପାଇଁ ତିନିଗୋଡ଼ିଆ ଷ୍ଟାଣ୍ଡ୍ ଉପରେ କଳା କନା ଘୋଡ଼ା ହୋଇଥିବା କ୍ୟାମେରା ସଜାଡୁ ଥାଏ । ଏହି ସମୟରେ କନିକା ଲାଇବ୍ରେରୀ ପଟୁ ଧୀରେ ଧୀରେ, ପଦାର୍ଥ ବିଜ୍ଞାନ ବାରଣ୍ଡା ଦେଇ ପାହାଚ ତଳକୁ ଓହ୍ଲାଇ ଆସିଲେ ଦୁଇ ଜଣ ବୟୋବୃଦ୍ଧ ଅଧ୍ୟାପକ - ଜଣେ ବିଦାୟୀ ଓ ଆଉ ଜଣେ ସଦ୍ୟାସୀନ ପ୍ରିନ୍‌ସିପାଲ - ରାଜ୍ୟ ତଥା ଦେଶର ପ୍ରମୁଖ ମହାବିଦ୍ୟାଳୟ ରେଭେନ୍ସା କଲେଜର ସେ ଦୁଇ ଜଣ ହେଉଛନ୍ତି ସ୍ୱନାମଧନ୍ୟ ପ୍ରଫେସର ଡକ୍ଟର ମହେନ୍ଦ୍ର କୁମାର ରାଉତ ଏବଂ ପ୍ରଫେସର ଡକ୍ଟର କ୍ଷେତ୍ରମୋହନ ପଟ୍ଟନାୟକ । ସେ ଦୁହିଁଙ୍କ ପଛେ ପଛେ ଆସୁଥାନ୍ତି ତିନି ଜଣ ବରିଷ୍ଠ ଅଧ୍ୟାପକ । ସେମାନଙ୍କ ମଧ୍ୟରୁ, ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଅନ୍ୟତମ । ଅନ୍ୟ ଦୁଇ ଜଣ ହେଲେ, ପ୍ରଫେସର ବି.ଜେ.ବି. ମହାପାତ୍ର ଏବଂ ପ୍ରଫେସର ଆଲତାଫ୍ ହୁସେନ । ଏହି ଦୃଶ୍ୟ ଦେଖି ଉପସ୍ଥିତ ଅଧ୍ୟାପକମାନଙ୍କ ମନରେ କିପରି ଭାବୋଦ୍ରେକ ହୋଇଥିବ ଜାଣେନା । କିନ୍ତୁ ରେଭେନ୍ସା କଲେଜ ଷ୍ଟାଫ୍ କ୍ଳବ୍‌ର ଅନ୍ୟତମ ସମ୍ପାଦକରୂପେ, ମୁଁ ଗଭୀର ନିଃଶ୍ୱାସଟିଏ ମାରିଥିଲି । କାରଣ ସେ ଦୁଇ ଜଣ ସ୍ୱାଭିମାନୀ ବ୍ୟକ୍ତିବିଶେଷ (ପ୍ରଫେସର ଡକ୍ଟର ମହେନ୍ଦ୍ର କୁମାର ରାଉତ ଏବଂ ପ୍ରଫେସର ଡକ୍ଟର କ୍ଷେତ୍ରମୋହନ ପଟ୍ଟନାୟକ) । ତାହା ଅବଶ୍ୟ ମୋର କେତେକ ସମ୍ମାନନୀୟ ବରିଷ୍ଠ ଅଧ୍ୟାପକଙ୍କ ଲକ୍ଷ୍ୟରୁ ବାଦ୍ ଯାଇ ନ ଥିଲା । ଏହି ସମସ୍ତ ବ୍ୟାଖ୍ୟା କରିବାର ମୂଳ ଲକ୍ଷ୍ୟ ହେଲା, ଗୋକୁଳାନନ୍ଦବାବୁଙ୍କ ପ୍ରତି ବିଭାଗ ତଥା ବରିଷ୍ଠତା ନିର୍ବିଶେଷରେ ସମସ୍ତ ସହକର୍ମୀଙ୍କ ଥିବା ଶ୍ରଦ୍ଧା ଓ ସମ୍ମାନର ଏକ ନମୁନା । ଏହି ଘଟଣାକ୍ରମ ରେଭେନ୍ସା କଲେଜ ଇତିହାସରେ ଲିପିବଦ୍ଧ ହୋଇ ନ ଥାଇପାରେ, କିନ୍ତୁ ଏହି ଲେଖକର ମନ ଓ ହୃଦୟରେ ଯେଉଁ ଗଭୀର ରେଖାପାତ କରିଛି, ତାହା କେବେ ଲିଭିବ ନାହିଁ ।

ମୁଁ ସହକର୍ମୀ ହେବା ପୂର୍ବରୁ, ସାର୍‌ଙ୍କ ଛାତ୍ର ଥିଲି । ତେଣୁ ଛାତ୍ରରୂପେ ମୋ ମନ କଥା କହିବାକୁ ଗଲାବେଳେ, ତାହା ସାର୍‌ଙ୍କ ଅଗଣିତ ଛାତ୍ରଙ୍କ ପ୍ରଶଂସା ସ୍ରୋତରେ ମିଶିଯିବ । ସେ ଥିଲେ ସ୍ୱଳ୍ପଭାଷୀ, ସ୍ମିତହାସ୍ୟଯୁକ୍ତ, ଅଜାତଶତ୍ରୁ, ଗୁଣୀ ମାନବ । ସ୍ଥିରଚିତ୍ତ, ଅବିଚଳିତ ମୁଖମଣ୍ଡଳ ତଥା ଧୀରଗମନ ଥିଲା ତାଙ୍କ ବ୍ୟକ୍ତିତ୍ୱର ପରାକାଷ୍ଠା । ତେଣୁ ସେ ଗୁଣବତ୍ତା ବିଷୟରେ ନ ଦୋହରାଇ କେତୋଟି ବ୍ୟକ୍ତିଗତ ସ୍ମୃତିବହୁଳ ଘଟଣା ବର୍ଣ୍ଣନା କରିବାପାଇଁ ମୋର ପ୍ରୟାସ ।

ଦୀର୍ଘ ୫୫ ବର୍ଷ ତଳର କଥା । ୧୯୫୮ ମସିହାରେ ପଦାର୍ଥବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ପାଇବାପାଇଁ ମୁଁ ମୟୂରଭଞ୍ଜ ପ୍ରଫେସରଙ୍କ ଗବେଷଣା ସହକାରୀରୂପେ ନିଯୁକ୍ତି ପାଇଥିଲି । ଅଧିକାଂଶ ସମୟ ବିଭାଗରେ ହିଁ କଟୁଥିଲା । ସେତେବେଳେ ବିଭାଗର ପରମ୍ପରା ସବୁ ଭିନ୍ନ ଥିଲା । ସ୍ନାତକୋତ୍ତର ସମୟରୁ ହିଁ ଛାତ୍ର ଓ ଶିକ୍ଷକଙ୍କ ମଧ୍ୟରେ ଅତି ନିବିଡ଼ ସମ୍ପର୍କ ଥିଲା । ଶିକ୍ଷକମାନଙ୍କ ପ୍ରତି ଛାତ୍ରମାନଙ୍କ ଭକ୍ତି ଓ ସମ୍ମାନ, ତଥା ଛାତ୍ରମାନଙ୍କ ପ୍ରତି ଶିକ୍ଷକମାନଙ୍କ ସ୍ନେହ ଓ ଶ୍ରଦ୍ଧା ଏହାକୁ ନିବିଡ଼ତର କରିଥିଲା । ସେମାନଙ୍କ ମଧ୍ୟରେ ଅବାଧ ମିଳାମିଶା ଥିଲା । ସୌଭାଗ୍ୟକ୍ରମେ ମୁଁ ବର୍ଷେ ଅବଧିରେ ଅଧ୍ୟାପକ ରୂପେ ନିଯୁକ୍ତିପାଇ ରେଭେନ୍ସା କଲେଜରେ ଯୋଗଦାନ କଲି । ସେତେବେଳୁ ବିଜ୍ଞାନ ପ୍ରଚାର ସମିତିର କାର୍ଯ୍ୟକ୍ରମ ସମ୍ପର୍କରେ ଅବଗତ ଥିଲି । ଆମ ବିଭାଗର ଅନ୍ୟତମ ଅଧ୍ୟାପକ ଶ୍ରୀ ପ୍ରଶାନ୍ତ କୁମାର ମିଶ୍ରଙ୍କ ପ୍ରେରଣାରେ ସମିତିର ଏକ ଅଧିବେଶନରେ ଯୋଗଦାନକରି ସମିତିର ସଭ୍ୟଭୁକ୍ତ ହେଲି । ସଭ୍ୟମାନଙ୍କ ବିଭିନ୍ନ ବିଷୟରେ ଲେଖା, ପଠନ ଓ ଆଲୋଚନା ଶୁଣି ବିଜ୍ଞାନକୁ ଲୋକପ୍ରିୟ କରିବାପାଇଁ ମୋ ମନରେ ଆଗ୍ରହ ସୃଷ୍ଟି ହେଲା । ସର୍ବୋପରି ଗୋକୁଳାନନ୍ଦ ସାର୍‌ଙ୍କ ଲିଖିତ ବହି, ଲେଖା ଓ ଆଭିମୁଖ୍ୟ ମୋ ମନରେ ବିଶେଷ ଛାପ ପକାଇଥିଲା । ସେଥିରେ ଅନୁପ୍ରାଣିତ ହୋଇ ମୁଁ ମୋର ପ୍ରଥମ ଲେଖା (ଆଧୁନିକ ଯୁଗର ବାର୍ତ୍ତାବହ ଟେଲିଗ୍ରାଫ୍) ଉପସ୍ଥାପନ କରିଥିଲି । ସେ ଦିନଠାରୁ ଆଉ ପଛକୁ ଫେରି ନାହିଁ । ଏ କ୍ଷେତ୍ରରେ ମୋତେ ଉତ୍ସାହିତ କରୁଥିବା ବରିଷ୍ଠ ଅଧ୍ୟାପକ ତଥା ସଭ୍ୟମାନଙ୍କ ମଧ୍ୟରେ ଗୋକୁଳାନନ୍ଦବାବୁ ଥିଲେ ମୋର ଅନ୍ୟତମ ଗୁରୁ । ତାଙ୍କ ସହିତ ଯାଇ କଟକ ବାହାରେ ଅନେକ ବିଜ୍ଞାନ ପ୍ରଚାର ସଭାରେ ଯୋଗଦାନ କରି ଉପକୃତ ହୋଇଥିଲି । ସେହି ସଭା ଓ ପରବର୍ତ୍ତୀ ସମୟର ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ଅତି ଆନନ୍ଦଦାୟକ ଲାଗୁଥିଲା ।

ଅନ୍ୟ ଏକ ଦିନର କଥା । ସେତେବେଳେ ଗୋକୁଳାନନ୍ଦ ସାର୍, ସକୁଟୁମ୍ବ ବିଦେଶରୁ ସଦ୍ୟ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଦିନେ ତାଙ୍କ ଘରକୁ ଆମ୍ଭମାନଙ୍କୁ ନିମନ୍ତ୍ରଣ କରିଥାନ୍ତି । ବିଦେଶ ଗସ୍ତ ସମୟର ଅନୁଭୂତି ବର୍ଣ୍ଣନା କରୁଥାନ୍ତି । ଆଜି କାଲିର Handycam ସେତେବେଳେ ନ ଥିଲା । କମ୍ପ୍ୟୁଟର କିମ୍ବା ଟେଲିଭିଜନ ନ ଥିଲା । ସେ ତାଙ୍କ Movie Camera ରେ ଉତ୍ତୋଳିତ ଛବି, ନିଜ ଛୋଟ Projector ମାଧ୍ୟମରେ ପରଦାରେ ଉତ୍‌କ୍ଷେପିତ କରିଥିଲେ । ସେଥିରୁ ଆମେ ଜାଣି ପାରିଥିଲୁ, ସେ କେବଳ ବିଜ୍ଞାନପ୍ରେମୀ ନ ଥିଲେ, Technology Savvy ମଧ୍ୟ ଥିଲେ । କହିବା ବାହୁଲ୍ୟ, ସେହି ଅଧିବେଶନରେ ଶ୍ରୀମତୀ ମହାପାତ୍ରଙ୍କ ସ୍ନେହ ଓ ଆତିଥେୟତାରେ ଆମ୍ଭେମାନେ ଅତି ଆନନ୍ଦିତ ହୋଇଥିଲୁ । ସାର୍ ଅଳ୍ପ କଥା କହନ୍ତି ସତ୍ୟ, କିନ୍ତୁ ସେତିକିରେ ସମସ୍ତଙ୍କ ମନ କିଣି ନିଅନ୍ତି ।

ସେହି ସମୟରେ ଭୁବନେଶ୍ୱରର ବିଭିନ୍ନ ସ୍ଥାନରେ ସମିତିର ସଭା ହେଉଥିଲା । ସେତେବେଳେ ଆଲୋଚନା ହୁଏ, ଭୁବନେଶ୍ୱରରେ ସମିତିର ଗୋଟିଏ ଶାଖା ଖୋଲିବାପାଇଁ । ସମିତିର କେତେକ ନିୟମ, ଅଧିନିୟମ ମଧ୍ୟ ପ୍ରସ୍ତୁତ କରାଗଲା । ପରେ ପରେ, ପ୍ରଫେସର ସୂର୍ଯ୍ୟମଣି ବେହେରାଙ୍କ ସହଯୋଗରେ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର (SRC) ରେ ଶାଖାର କେତେକ ସଭା ମଧ୍ୟ ହୋଇଥିଲା । କିନ୍ତୁ ପ୍ରଫେସର ବେହେରା ଅନୁଷ୍ଠାନ ଛାଡ଼ିବାପରେ ଶାଖା ସମିତିର ସଭା ଅନୁଷ୍ଠିତ ହୋଇ ପାରି ନ ଥିଲା । ପୁଣି କିଛିଦିନ ବ୍ୟବଧାନ ପରେ ପ୍ରଫେସର ପତିତପାବନ ମିଶ୍ରଙ୍କ ଅନୁରୋଧକ୍ରମେ ଏହାର ଏକ ବିଶେଷ ଅଧିବେଶନ ତାଙ୍କ ବାସଭବନରେ ଆୟୋଜିତ କରାଯାଇ ଭୁବନେଶ୍ୱର ଶାଖାର ପୁନରୁତ୍ଥାନ କରାଗଲା । ପରେ ପରେ ଏହା

ବାଣୀବିହାରସ୍ଥ ପ୍ରାଣିବିଜ୍ଞାନ ବିଭାଗରେ ନିୟମିତ ଭାବେ ଆୟୋଜିତ ହେଲା ।

ସାର୍ ଯେକୌଣସି ସଭାସମିତିରେ ଦେଖିଲେ ପ୍ରଥମେ ପଚାରନ୍ତି, "ତରାସିଆ ! ସମିତି କେମିତି ଚାଲିଛି ? ସଭ୍ୟମାନେ ଆସୁଛନ୍ତି ତ ? କେମିତି ଅଛ ?" ସାର୍‌ଙ୍କର ଏହି ସ୍ନେହପୂର୍ଣ୍ଣ କଥା ମୋର ମନ କିଣି ନିଏ । ମୁଣ୍ଡ ନଇଁ ଯାଏ ।

ଅନ୍ୟ ଏକ ଘଟଣା ମନେ ପଡ଼େ । ଆଞ୍ଚଳିକ ବିଜ୍ଞାନ କେନ୍ଦ୍ରରେ Prehistoric Life Park ଉପରେ Light & Sound ସହିତ ଏକ ଅନୁଭାଗ ଖୋଲା ଯାଇଥାଏ । ସାର୍, ଅନ୍ଧାରରେ (ଅଳ୍ପ ଆଲୋକ ସାହାଯ୍ୟରେ) ନିଜ ଝିଅ ସହିତ ଖୁବ୍ ଆସ୍ତେ ଆସ୍ତେ ଯାଇ ସମସ୍ତ exhibit ଦେଖିଥିଲେ । ଏହି ପରିଣତ ବୟସରେ ବିଜ୍ଞାନ ବିଷୟରେ ସାର୍‌ଙ୍କ ଜିଜ୍ଞାସା ଦେଖିଲେ ପ୍ରକୃତରେ ଆଶ୍ଚର୍ଯ୍ୟ ଲାଗେ । ସତେ ଯେମିତି, 'he dreams science, thinks science, breathes science and loves science'.

ତାଙ୍କ ଜୀବନରେ ବିଜ୍ଞାନ ହିଁ ଥିଲା ସବୁକିଛି । 'ଉଡ଼ନ୍ତା ଥାଳିଆ' ପରି ତାଙ୍କ ପ୍ରାଣବାୟୁ ଅନ୍ତରୀକ୍ଷକୁ ଚାଲିଗଲା । ସତେ ଯେମିତି ସେ 'ପୃଥିବୀ ବାହାରର ଏକ ମଣିଷ' ।

ସେହି ଗୁରୁଙ୍କ ଅମରାତ୍ମା ପ୍ରତି ମୋର ସହସ୍ର ପ୍ରଣାମ ଓ ଶ୍ରଦ୍ଧାଞ୍ଜଳି ।

ତାଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ଭଗବାନ୍‌ଙ୍କ ନିକଟରେ ପ୍ରାର୍ଥନା ।

---

# ମୋର ପରମ ପୂଜ୍ୟ ଗୁରୁ
# ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କ ସ୍ମରଣେ

**ପ୍ରଫେସର ପଦ୍ମଲୋଚନ ନାୟକ**

ମୋର ବରେଣ୍ୟ ଗୁରୁ, ବିଜ୍ଞାନ ସାହିତ୍ୟ ଜଗତର ଜନକ, ଭୀଷ୍ମ ପିତାମହ, ଓଡ଼ିଶାର ବିଜ୍ଞାନ ପ୍ରଚାର ସମିତିର ପ୍ରାଣପ୍ରତିଷ୍ଠାତା ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଆଉ ଇହ ଜଗତରେ ନାହାନ୍ତି । ସେ ଆମ୍ଭମାନଙ୍କୁ ଶୋକସାଗରରେ ଭସାଇ ଜୁଲାଇ ୧୦ ତାରିଖ ଶ୍ରୀଗୁଣ୍ଡିଚା ଦିନ ଇହଧାମ ପରିତ୍ୟାଗ କରିଛନ୍ତି । ଆମ୍ଭମାନଙ୍କୁ ଶୋକସାଗରରେ ଭସାଇ ସେ ବିଜ୍ଞାନ ପ୍ରଚାର ସମିତିକୁ ଆମ୍ଭମାନଙ୍କୁ ଛାଡ଼ି ଦେଇ ଚାଲିଗଲେ । ଆଜି ତାଙ୍କର ସ୍ନେହ, ଶ୍ରଦ୍ଧା ତଥା ଉପଦେଶ କଥା ମନେ ପଡ଼ିଲେ, ଆଖିରୁ ଲୁହ ଝର ଝର ହୋଇ ବୋହିଯାଏ । ଆମେରିକାରେ ଡି.ଏନ୍.ଏ. ଉପରେ ଉଚ୍ଚତର ଗବେଷଣା କରୁଥିବା ସମୟରେ ସେ ଓଡ଼ିଶାର ବିଭିନ୍ନ ସମ୍ବାଦପତ୍ରରେ 'ନୀଳଚକ୍ର ବାନାର ସେପାରିରୁ' ନାମକ ପ୍ରବନ୍ଧ ପ୍ରକାଶ କରୁଥିଲେ । ସେହି ଜଗନ୍ନାଥ, ଜଗତର ନାଥ ନୀଳଚକ୍ର ବାନାର ପ୍ରତୀକ ମହାପ୍ରଭୁ ଜଗନ୍ନାଥ ତାଙ୍କୁ ଶ୍ରୀଗୁଣ୍ଡିଚା ଦିନ ସ୍ୱର୍ଗଦ୍ୱାର ନେଇଗଲେ । ହେ ପୁଣ୍ୟାତ୍ମା ! ତୁମର ଆତ୍ମା ସ୍ୱର୍ଗରେ ପ୍ରସ୍ଫୁଟିତ ହେଉ । ତୁମେ ଅମର, ତୁମେ ଅସାଧାରଣ, ତୁମେ ବିଜ୍ଞାନର ଜନକ, ଆଜି ଆମେ ବିଜ୍ଞାନପ୍ରେମୀ, ବିଜ୍ଞାନ ପ୍ରଚାର ସମିତିର ଅଧିବେଶନରେ ତୁମକୁ ମନେ ପକାଇ ଆଖିରୁ ଲୁହ ଝରାଇବୁ ।

ପ୍ରଫେସର ମହାପାତ୍ର ୨୪.୦୫.୧୯୨୨ ମସିହାରେ ଆମ ଭଦ୍ରକର କୁଆଁସ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପିତା ଶ୍ରୀ ବିଜୟଗୋବିନ୍ଦ ମହାପାତ୍ର ଗ୍ରାମରେ ଜମିବାଡ଼ି ଦେଖାଶୁଣା କରୁଥିଲେ । ୧୯୪୧ ମସିହାରେ ଭଦ୍ରକ ହାଇସ୍କୁଲ୍‌ରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କଲେ । ୧୯୪୩ ମସିହାରେ ସେ ରେଭେନ୍‌ସା ମହାବିଦ୍ୟାଳୟରୁ ଆଇ.ଏସ୍‌ସି. ପାସ୍ କଲେ ଏବଂ ୧୯୪୫ ମସିହାରେ ବି.ଏସ୍‌ସି. ରସାୟନ ଶାସ୍ତ୍ରରେ ଅନର୍ସରେ ଦ୍ୱିତୀୟ ଶ୍ରେଣୀରେ ପ୍ରଥମ ହୋଇ

ପାସ୍ କଲେ । ୧୯୪୭ ମସିହାରେ ସେ କଲିକତାର ପ୍ରେସିଡେନ୍ସି ମହାବିଦ୍ୟାଳୟରେ ଏମ୍.ଏସ୍‌ସି. ପାସ୍ କରି ୧୯୪୮ ମସିହାରେ ରେଭେନ୍‌ସା ମହାବିଦ୍ୟାଳୟରେ ରସାୟନ ବିଜ୍ଞାନର ଅଧ୍ୟାପକରୂପେ ଯୋଗଦାନ କଲେ । ତା'ପରେ ସେ ରେଭେନ୍‌ସା ମହାବିଦ୍ୟାଳୟରେ ଆଇ.ଏସ୍‌ସି., ବି.ଏସ୍‌ସି. ଏବଂ ଏମ୍.ଏସ୍‌ସି. କ୍ଲାସ୍‌ରେ ଜୈବରସାୟନ ବିଜ୍ଞାନ ବିଷୟରେ ଶିକ୍ଷାଦାନ କରୁଥିଲେ । ୧୯୫୮ ମସିହାରେ ଜୈବ ରସାୟନ ବିଜ୍ଞାନ ବିଭାଗରେ ଗବେଷଣା କରି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ଲାଭ କଲେ । ୧୯୬୩ ମସିହାରେ ସେ ଉଚ୍ଚତର ଗବେଷଣା କରିବାପାଇଁ ଆମେରିକାର ପ୍ରସିଦ୍ଧ Brandies ବିଶ୍ୱବିଦ୍ୟାଳୟରେ ଡି.ଏନ୍.ଏ. (DNA Structure Elucidation) ସମ୍ପର୍କିତ ଗବେଷଣା କରି ପୁଣି ୧୯୬୩-୬୪ ମସିହାରେ ରେଭେନ୍‌ସା ବିଦ୍ୟାଳୟରେ ଅଧ୍ୟାପକରୂପେ ଯୋଗଦାନ କଲେ ।

ମୋର ଆଜି ମନେପଡୁଛି, ୧୯୫୮ ମସିହାରେ ରେଭେନ୍‌ସା କଲେଜରେ ମୁଁ ବି.ଏସ୍‌ସି. କ୍ଲାସ୍‌ରେ ନାମ ଲେଖାଇଥାଏ । ରେଭେନ୍‌ସା କଲେଜର ରସାୟନ ବିଜ୍ଞାନ ବିଭାଗରେ ସିଏଲ୍‌ଟି-୨ରେ ଆମର ପ୍ରଥମ କ୍ଲାସ୍ ଆରମ୍ଭ ହେଲା । ମୁଁ ଡରି ଡରି ପଚାରି ପଚାରି ସିଏଲ୍‌ଟି-୨ରେ ଯାଇ ଦ୍ୱିତୀୟ ଧାଡ଼ିରେ ବସିଲି । କିଛି ସମୟ ପରେ ହସ ହସ ମୁହଁରେ ଚକ୍, ଡଷ୍ଟର ଏବଂ ଉପସ୍ଥାନ ବହି ଧରି ଜଣେ ଶିକ୍ଷକ ଆମ ଶ୍ରେଣୀଗୃହକୁ ପ୍ରବେଶ କଲେ । ଆମେ ସବୁ ଛିଡ଼ା ହୋଇଗଲୁ । ସେ ଉପସ୍ଥାନ ନ ନେଇ ପ୍ରଥମେ ଆମକୁ ଜଣ ଜଣ କରି ପଚାରିଲେ ଯେ, ଆମେ କେଉଁ କଲେଜରୁ ଆଇ.ଏସ୍‌ସି. ପାସ୍ କରି ଆସିଛୁ । ମୋର ପାଳି ପଡ଼ିଲା ଏବଂ ମୁଁ କହିଲି ଯେ ମୁଁ ଫକିରମୋହନ କଲେଜରୁ ଆଇ.ଏସ୍‌ସି. ପାସ୍ କରିଛି ଏବଂ ମୋର ଘର ଭଦ୍ରକରେ । ସେ ହସି ହସି କହିଲେ ଯେ, ତୁମେ ଆମ ଭଦ୍ରକ ପିଲା, ହଉ, ହଉ, ଏଠାରେ ପାଠପଢ଼ । ତା'ପରେ ସେ ଆମକୁ ଅର୍‌ଗାନିକ୍ କେମେଷ୍ଟ୍ରିରେ କ୍ଲୋରୋଫର୍ମ ସମ୍ବନ୍ଧରେ ପଢ଼ାଇଲେ ଏବଂ କ୍ଲୋରୋଫର୍ମ କିଏ ଏବଂ କାହିଁକି ଉଦ୍ଭାବନ କରିଥିଲେ, ସେ ସମ୍ବନ୍ଧରେ ଆମକୁ ବିଶଦ ଭାବରେ ବୁଝାଇଲେ । ମୁଁ ତାଙ୍କର ପାଠପଢ଼ାର ଶୈଳୀ ଏବଂ ଚମତ୍କାର ବକ୍ତୃତା ଶୁଣି ଭବିଷ୍ୟତ୍‌ରେ ଏକ ରସାୟନ ବିଜ୍ଞାନୀ ହେବି ବୋଲି ମନସ୍ଥ କଲି ଏବଂ ତାଙ୍କରି ପ୍ରେରଣାରେ ଏକ ରସାୟନ ବିଜ୍ଞାନୀ ହେଲି । ମୋର ଆଉ ଗୋଟେ କଥା ମନେପଡୁଛି, ସାର୍ ଆମର ବି.ଏସ୍‌ସି. ପ୍ରାକ୍‌ଟିକାଲ୍‌ରେ Internal ଥାଆନ୍ତି । ପ୍ରଫେସର ବଳଭଦ୍ର ପ୍ରସାଦ ଆମର External ହୋଇ ଆସିଥାନ୍ତି । ଆମକୁ ଭାରି ଡର ଲାଗୁଥାଏ । ସାର୍, ଭଦ୍ରକ ପିଲା ବୋଲି ମୋତେ ଆଗରୁ ଜାଣିଥିଲେ । ମୁଁ ଡରି ଡରି କହିଲି, ସାର୍, ମୋତେ ପ୍ରାକ୍‌ଟିକାଲ୍ ପରୀକ୍ଷା ବହୁତ ଡର ଲାଗୁଛି । ସେ ମୋତେ କହିଲେ, ପ୍ରଫେସର ପ୍ରସାଦ ଯାହା ପଚାରିବେ, ତୁମେ ତାଙ୍କୁ ଭାବିଚିନ୍ତି ଉତ୍ତର ଦେବ । ପରୀକ୍ଷାଦିନ ମୁଁ ଡରି ଡରି ପ୍ରାକ୍‌ଟିକାଲ ପରୀକ୍ଷା ଦେଉଥାଏ । ବଳଭଦ୍ର ପ୍ରସାଦଙ୍କ ଆଗରେ ସାର୍ ଛିଡ଼ା ହୋଇଥାନ୍ତି । Viva voce ପାଇଁ ମୋତେ ଡକରା ପଡ଼ିଲା । ମୁଁ ଯାଇ ବସିଲାପରେ ପ୍ରଫେସର ପ୍ରସାଦ ମୋତେ ବହୁତ ପ୍ରଶ୍ନ ପଚାରିଲେ ଏବଂ ମୁଁ ସବୁଗୁଡ଼ିକର ଉତ୍ତର ଠିକ୍ ଭାବରେ ଦେଉଥାଏ । ମୋର viva voce ଶେଷରେ ପ୍ରଫେସର ପ୍ରସାଦ କହିଲେ, ଗୋକୁଳାନନ୍ଦ, ଏ ପିଲା ରସାୟନ ବିଜ୍ଞାନ ସମ୍ବନ୍ଧରେ ଭଲ ଜ୍ଞାନ ଅର୍ଜନ କରିଛି ଏବଂ ଭଲ ଉତ୍ତର ମଧ୍ୟ ଦେଉଛି । ତା' ଉତ୍ତର ଶୁଣି ମୁଁ ଭାରି ଖୁସି । ତା'ପରେ ମୁଁ ପ୍ରାକ୍‌ଟିକାଲ୍ ପରୀକ୍ଷାରେ ଯେଉଁ Radical Detection ହୁଏ, ସେହି Radical ଗୁଡ଼ିକୁ ସମୟ ଅଭାବରୁ ବାହାର କରିପାରିଲି ନାହିଁ । ୬ଟି Radical ମଧ୍ୟରୁ ୫ଟି ରେଡ଼ିକାଲ୍ ବାହାର କଲି ଏବଂ ଯାହା Compound କରିବାକୁ ଦିଆଯାଇଥିଲା, ତାକୁ ମଧ୍ୟ ଭଲ ଭାବରେ ତିଆରି କଲି, କିନ୍ତୁ ମୋର ମନ ବୁଝିଲା ନାହିଁ । ପରୀକ୍ଷା ଶେଷରେ ପରୀକ୍ଷାଗାରରୁ ବାହାରି ହଷ୍ଟେଲ୍‌କୁ ପଳେଇ ଆସିଲି । ରାତିସାରା ଭଲ ନିଦ ହେଲା ନାହିଁ । ତା' ପର ଦିନ ସନ୍ଧ୍ୟାରେ ସାର୍‌ଙ୍କୁ ତାଙ୍କ ରୁମ୍‌ରେ ଦେଖା କଲି । ମୁଁ ତାଙ୍କୁ କାନ୍ଦ କାନ୍ଦ ମୁହଁରେ କହିଲି, ସାର୍, ମୋର ପରୀକ୍ଷାରେ ଖରାପ ହୋଇଗଲା । ସେ ମୋତେ କହିଲେ, ଡକ୍ଟର

ପ୍ରସାଦ ତୁମର ଉତ୍ତର ଶୁଣି ବହୁତ ଖୁସି ହୋଇଛନ୍ତି ଏବଂ ସେ ତୁମକୁ ବହୁତ ନମ୍ବର ଦେଇଛନ୍ତି । ମୁଁ ସାର୍‌ଙ୍କୁ ପ୍ରଣାମ କରି ଆସିଲି । ତା'ପରେ ମୁଁ ୧୯୬୦ ମସିହାରେ ରସାୟନ ବିଭାଗରେ ଏମ୍.ଏସ୍‌ସି.ରେ ନାମ ଲେଖାଇଲି । ମୋ ସାଙ୍ଗରେ ନବ (ପ୍ରଫେସର ଏନ୍.କେ. ରାୟ), ରବି (ଶ୍ରୀ.ଆର୍.ଏନ୍. ସେନାପତି, ଆଇ.ଏ.ଏସ୍.), ପ୍ରକାଶ (ପ୍ରଫେସର ଡକ୍ଟର ପି.କେ. ମହାପାତ୍ର), ଧନେଶ୍ୱର (ଡକ୍ଟର ଧନେଶ୍ୱର ରାଉତ) ମଧ୍ୟ ନାମ ଲେଖାଇଲେ । ସାର୍ ଆମକୁ 'Terpene' ପଢ଼ାଉଥିଲେ । ମୋର ମନେ ଅଛି, ସେ BARDHAN SYNTHESIS OF BALBIANIC ACID ଖୁବ୍ ସୁନ୍ଦର ଭାବରେ ପଢ଼ାଉଥିଲେ । ୧୯୬୨ ମସିହାରେ ମୁଁ ପ୍ରଥମ ଶ୍ରେଣୀରେ ଏମ୍.ଏସ୍‌ସି. ପାସ୍ କଲା ପରେ ମୁଁ ରସାୟନ ବିଜ୍ଞାନ ବିଭାଗରେ ଅଧ୍ୟାପକରୂପେ ଯୋଗଦାନ କଲି । ତା'ପରେ ସାର୍ ଆମେରିକା ଗଲେ । ଆମେରିକାରୁ ସେ ୧୯୬୩ ମସିହାରେ ଭାରତ ପ୍ରତ୍ୟାବର୍ତ୍ତନ କରି ପୁଣି ଅଧ୍ୟାପକରୂପେ ଯୋଗଦାନ କଲେ । ସାର୍‌ଙ୍କ ସାଙ୍ଗରେ ମିଶି ମୁଁ ବହୁତ ଥର ଆଇ.ଏସ୍‌ସି., ବି.ଏସ୍‌ସି. ଏବଂ ଏମ୍.ଏସ୍‌ସି. କ୍ଲାସ୍‌ରେ ପ୍ରାକ୍‌ଟିକାଲ କ୍ଲାସରେ ଶିକ୍ଷାଦାନ କରିଛି । ସେ ପ୍ରାକ୍‌ଟିକାଲ କ୍ଲାସ୍‌ରେ ମୋତେ ସବୁବେଳେ ନିର୍ଦ୍ଦେଶ ଦିଅନ୍ତି ପିଲାମାନଙ୍କୁ ବୁଝେଇବାକୁ ଏବଂ ମୁଁ ଯେଉଁଠି ଭୁଲ୍ କରେ, ସେ ତାକୁ ସଂଶୋଧନ କରନ୍ତି । ସାର୍‌ଙ୍କ ସାଙ୍ଗରେ ମୁଁ ଦୀର୍ଘ ୨୦ ବର୍ଷ ଅଧ୍ୟାପକ ଏବଂ ପ୍ରାଧ୍ୟାପକରୂପେ କାମ କରିଛି । ୧୯୭୭-୭୮ ମସିହାରେ ମୁଁ ଆମେରିକାରୁ ଫେରିଲା ପରେ ସେ ରସାୟନ ବିଜ୍ଞାନର ମୁଖ୍ୟ ଥାନ୍ତି । ସେ ମୋତେ ରସାୟନ ବିଜ୍ଞାନ ବିଭାଗର ଅଧିକାଂଶ କାର୍ଯ୍ୟ, ଯଥା – Store, Library ଏବଂ Seminar ଦାୟିତ୍ୱରେ ରଖିଥାନ୍ତି । ଆମର ପ୍ରତି ସପ୍ତାହରେ Balabhadra Prasad Post Graduate Seminar ହୁଏ ଏବଂ ସେ ପିଲାମାନଙ୍କୁ ଉପଦେଶ ଦିଅନ୍ତି । ସେ ଜଣେ ଉଚ୍ଚକୋଟୀର ଶିକ୍ଷକ, ଗବେଷକ ଏବଂ ବିଜ୍ଞାନପ୍ରେମୀ ଥିଲେ ।

ବିଜ୍ଞାନ ପ୍ରଚାର ସମିତିକୁ ମୁଁ କାହିଁକି ଯାଉ ନାହିଁ ବୋଲି ସେ ମୋତେ ଡକାଇ ପଠାଇଲେ ଏବଂ ବିଜ୍ଞାନ ପ୍ରଚାର ସମିତିର ଆଜୀବନ ସଭ୍ୟରୂପେ ମୁଁ ଯୋଗଦାନ କଲି । ସେହିଦିନଠାରୁ ପ୍ରତି ମାସରେ ଦୁଇ ଥର ତାଙ୍କର ଆମ୍ରପଲ୍ଲୀ ବାସଭବନରେ ଦେଖାକରି ତାଙ୍କର ଆଶୀର୍ବାଦ ନିଏ ଏବଂ ସେ ସବୁବେଳେ ହସ ହସ ମୁହଁରେ ମୋତେ ପଚାରନ୍ତି, 'ପଦ୍ମଲୋଚନ ! ତମେ କେମିତି ଅଛ ?' ଥରେ ସେ ମୋତେ ଆଦେଶ ଦେଲେ, 'ପଦ୍ମଲୋଚନ ! ତୁମେ ରେଭେନ୍‌ସା ବିଶ୍ୱବିଦ୍ୟାଳୟର ରସାୟନ ବିଜ୍ଞାନ ବିଭାଗ ସମ୍ବନ୍ଧରେ ଏକ ଇତିହାସ ଲେଖ । ସେହି ଇତିହାସରେ ଅତୁଲ୍ ଚନ୍ଦ୍ର ଗାଙ୍ଗୁଲି, ବାବା କର୍ତ୍ତାର ସିଂହ, ଲୋକନାଥ ମିଶ୍ର, ବଳଭଦ୍ର ପ୍ରସାଦ, ଶର୍ବାଣୀଶେଖର ଗୁହସରକର, ଦୟାନିଧି ପଟ୍ଟନାୟକ, ମହେନ୍ଦ୍ର କୁମାର ରାଉତ ଇତ୍ୟାଦିଙ୍କର ଜୀବନୀ ଭଲଭାବରେ ଉଲ୍ଲେଖ କର ।' ତା'ପରେ ମୁଁ ସାର୍‌ଙ୍କୁ ପଚାରିଲି, ସାର୍, ମୁଁ ଆପଣଙ୍କର ଜୀବନୀ କ'ଣ ଲେଖିବି, ମୋତେ ଲେଖା ଦିଅନ୍ତୁ । ସେ ମୋତେ କହିଲେ, ମୋ ଜୀବନୀ ତୁମେ ଭଲଭାବେ ଜାଣିଛ ଏବଂ ତୁମେ ଭଲ ଭାବେ ଲେଖିବ ବୋଲି ମୋର ଆଶା । ସାର୍‌ଙ୍କର ଶେଷ ଆଶା ଏ ପର୍ଯ୍ୟନ୍ତ ମୁଁ ପୂରଣ କରିପାରି ନାହିଁ, କାରଣ ଏପର୍ଯ୍ୟନ୍ତ ସେ ପାଣ୍ଡୁଲିପି ମୁଁ ଶେଷ କରି ନାହିଁ । ସାର୍‌ଙ୍କର ସ୍ନେହ, ଶ୍ରଦ୍ଧା ଏବଂ ଉପଦେଶ ମୁଁ ଜୀବନରେ କେବେ ଭୁଲିପାରିବି ନାହିଁ । ଆଜି ଯଦି ରସାୟନ ବିଜ୍ଞାନ ବିଭାଗରେ ମୁଁ କିଛି ଗବେଷଣା କରି ଆନ୍ତର୍ଜାତିକ ସ୍ତରରେ ନାମ କରିଛି, ସେଥିପାଇଁ ସାର୍‌ଙ୍କ ଆଶୀର୍ବାଦ ମୋର ମସ୍ତକ ଉପରେ ଅଛି । ଆଜି ସେହି ପରମ ପୂଜ୍ୟ, ଭୀଷ୍ମ ପିତାମହ, ଗୁରୁଦେବଙ୍କ ଚରଣରେ ମୁଁ ପ୍ରଣିପାତ କରୁଛି ଏବଂ ଆଶା କରୁଛି ସେ ସ୍ୱର୍ଗରେ ରହି ଆମକୁ ଆଶୀର୍ବାଦ କରନ୍ତୁ । ଏତିକି ଜଗନ୍ନାଥଙ୍କ ପାଖରେ ମୋର ପ୍ରାର୍ଥନା ।

ଭୂତପୂର୍ବ ପ୍ରଫେସର ଏବଂ ରସାୟନବିଜ୍ଞାନ ମୁଖ୍ୟ,
ରେଭେନ୍‌ସା ମହାବିଦ୍ୟାଳୟ

# ସ୍ୱଗତୋକ୍ତି ଭଗ୍ନ ହୃଦୟର...

ଡକ୍ଟର ପ୍ରିୟତମା ଦେଓ

ବିଚାରା ସେ ଆମ୍ରପଲ୍ଲୀ !
ସେମିତି ହୋଇଛି ଠିଆ, ନିର୍ବାକ୍, ନିଃସ୍ପନ୍ଦ
ଅନ୍ତଃପୁରୁ ଶୁଭୁ ନାହିଁ କୋଳାହଳ ଆଉ
ଶୁଭୁ ନାହିଁ କୋଳାହଳ, ନାହିଁ କାହିଁ ଗହଳି ଚହଳି
ଶୂନ୍ୟ କରି ଶ୍ରୀମନ୍ଦିର
କାଳିଆ ଗଲାଣି ଚାଲି କେତେବେଳୁ
ଚଢ଼ି ତା'ର ନନ୍ଦିଘୋଷ ରଥ ।
ଆଗୋ ଆମ୍ରପଲ୍ଲୀ,
ଶୁଣ ଥରେ କାନ ଡେରି, ଶୁଣ ସନ୍ତର୍ପଣେ
ନିରବତା ଉତ୍ତରୀୟ ଭେଦି
ସୁଁ ସୁଁ ଶବଦ ଶୁଭେ କୁମୁଦିନୀ ସ୍ମୃତି ସଦନରୁ
କାନ୍ଦୁଛନ୍ତି ଲକ୍ଷ୍ମୀ ପାଟଦେଈ
ଅଶରୀରୀ ଆତ୍ମା ତାଙ୍କ ବିଳପି ଉଠୁଛି
ଶୂନ୍ୟ କରି ତାଙ୍କ ପୁର
ଶୂନ୍ୟ କରି ଦେଇ ଦିବ୍ୟ ରତ୍ନ ସିଂହାସନ
କୁଆଡ଼େ ଗଲେ କେଜାଣି ଲୀଳାମୟ ଭୁବନମୋହନ !
ସେ ଏକା ଖୋଜୁ ନାହାନ୍ତି
ନିରବେ ଖୋଜୁଛି ତାଙ୍କୁ ତାଙ୍କ ବାଣୀପୀଠ
ସତେ କି ଆସିବେ ନାହିଁ ବାଣୀପୁତ୍ର ତାଙ୍କ ପୁରେ ଆଉ
ଲେଖିବେନି ତାଙ୍କ କୋଳେ ବସି
ବିଜ୍ଞାନର ଉପନ୍ୟାସ, ଭାଷାକୋଷ ଆଉ କେତେ ବିଜ୍ଞାନଚରିତ ?
ପ୍ରିୟ ଆମ୍ରପଲ୍ଲୀ
ଚାହିଁ ଦେଖ, ଚାହିଁ ଦେଖ ବଡ଼ ଦାଣ୍ଡେ ଥରେ
କେମିତି  ଚାଲିଛି ରଥ ଶରଧାବାଲିରେ
ଆତ୍ମୀୟ ସ୍ୱଜନ ଆଉ ସଖା ଶିଷ୍ୟ ମିଳି
ଟାଣୁଛନ୍ତି ତାଙ୍କ ରଥ ଗହଳି ଲଗାଇ
ବିଞ୍ଚି ଦେଉଛନ୍ତି ଶ୍ରଦ୍ଧା ଭକତି ସୁମନ
ସେ ସୁମନ ସୁବାସରେ
ମହକୁଛି ବଡ଼ଦାଣ୍ଡ, ମହକୁଛି ପ୍ରତି ରେଣୁ ଶରଧା ବାଲିର
ଆଖିରେ ଆଖିଏ ଲୁହ, ହୃଦେ କୋହ ଚାପି,
ହାତେ ଧରି ରଥର ଦଉଡ଼ି, ଗୁଣ ତାଙ୍କ ସୁମରନ୍ତି ଜଣ ଜଣ କରି
ଶିଷ୍ୟ କହେ ଗୁରୁ ମୋର ଦେବତା ସମାନ ।
ଚିର ଋଣୀ କରି ଗଲେ ଦେଇ ଦିବ୍ୟଜ୍ଞାନ ।।
ସଖାଏ କହନ୍ତି ଥିଲେ ପଙ୍କେ ପଦ୍ମ ସମ ।
ବାଲ୍ୟକାଳୁ ବାସୁଥିଲେ ତୁଳସୀ ସମାନ ।।
ଭଉଣୀ କହଇ ଭାଇ ଧର୍ମ ଯୁଧିଷ୍ଠିର ।
ଜନକ ସମାନ ସନ୍ଥ ନାହିଁ ପଟାନ୍ତର ।।
ନନ୍ଦନ, ନନ୍ଦିନୀ ହୋଇ ଶୋକରେ ଅଧୀର ।
ବାହୁନନ୍ତି ପିତା ଆମ ଶ୍ରବଣ କୁମାର ।।
ଲଇଖଣ ସମ ଭାଇ ଥିଲେ ଆମ ପିତା ।
ତାଙ୍କ ପରି ହେଲୁ ନାହିଁ ମନେ ଲାଗେ ବ୍ୟଥା ।।
କିଏ କହେ ମୋ' ମଥାରେ ରଖିଥିଲେ ହାତ ।
ତାଙ୍କ ସମ କିଏ ହେବ ଅନାଥର ନାଥ !
ହାୟ ସେଇ ମହାମାନବଟି...
କାହିଁ ଏବେ ଚାଲିଗଲା ଭରି ଦେଇ
ଅନନ୍ତ ଶୂନ୍ୟତା ସବୁରି ମନରେ...
ନା, ନା,
ମୋଟେ ଆଉ କାନ୍ଦ ନାହିଁ ରାଜଜେମାମାନେ
ଲୁହ ଆଉ ଢାଳ ନାହିଁ ପ୍ରିୟଜନଗଣ
ତୁ ବି ତାଙ୍କୁ ଝୁର୍ ନାହିଁ
ଝୁର୍ ନାହିଁ ଆଉ ଆମ୍ରପଲ୍ଲୀ
ନିଜକୁ ବୁଝାଇ କହ, କହ ବାରମ୍ବାର
ସେ ଆଉ ଫେରିବେ ନାହିଁ
ଲେଉଟିବେ ନାହିଁ କେବେ ଆମ ଗହଣକୁ
ଏକରୁ ଅନେକ ହୋଇ, ହୋଇ ପୁଣି ଅନେକରୁ ଏକ
ସିଏ ତ ଗଲେଣି ମିଶି ପରଂବ୍ରହ୍ମ ପରମାତ୍ମାଠାରେ
ସେଇଠି ସୁଖେ ଥାଆନ୍ତୁ
ଆନନ୍ଦେ ରହନ୍ତୁ ସେଠି ଆମ ପ୍ରିୟତମ
ଆଶୀର୍ବାଦ କରୁଥାନ୍ତୁ, ତୋତେ, ମୋତେ ଆମ ସମସ୍ତଙ୍କୁ ।।

# ଅନିର୍ବାଣ ଦୀପଶିଖା ବୈଜ୍ଞାନିକ ଗୋକୁଳାନନ୍ଦ

ଡାକ୍ତର ନିରଞ୍ଜନ ତ୍ରିପାଠୀ

**ପରିବର୍ତ୍ତିନୀ ସଂସାରେ ମୃତୋ କୋଽବା ନଜାୟତେ ।**
**ସ ଜାତଃ ଯେନ ଜାତେନ ଜାତି ବଂଶ ସମୃନ୍ନତଃ ।**

ଉତ୍କଳ ଜନନୀର ବରପୁତ୍ର, ବିଶିଷ୍ଟ ବୈଜ୍ଞାନିକ, ଲୋକପ୍ରିୟ ବିଜ୍ଞାନ ଲେଖକ, ଗବେଷକ, ପ୍ରାବନ୍ଧିକ, ଗାଳ୍ପିକ, ଔପନ୍ୟାସିକ ଜ୍ଞାନଦୀପ୍ତ ପ୍ରତିଭାଧର ବ୍ୟକ୍ତିତ୍ୱ, ସମାଜସେବୀ ସଂଗଠକ, ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ୨୦୧୩ ମସିହା ଜୁଲାଇ ମାସ ୧୦ ତାରିଖ ରାତ୍ରି ୯.୩୦ ମିନିଟ୍‌ରେ ପବିତ୍ର ଶ୍ରୀଗୁଣ୍ଡିଚାତିଥିର ମହାମିଳନର ଅବସର ନେଇ ଆଉ ଏକ ଜଗନ୍ନାଥ ପୀଠ ଗୁଜୁରାଟର ଅହମ୍ମଦାବାଦଠାରେ ଏକ ସଂଭ୍ରାନ୍ତ ହସପିଟାଲରେ ସ୍ୱର୍ଗାରୋହଣ କରିଛନ୍ତି । ସ୍ୱର୍ଗତ ଗୋକୁଳାନନ୍ଦ ୧୯୨୨ ମସିହା ମେ ୨୪ ତାରିଖରେ ଭଦ୍ରକଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ବିଜୟଗୋବିନ୍ଦ ମହାପାତ୍ର ଓ ମାତାଙ୍କ ନାମ ଫୁଲଦେବୀ ।

ଗୋକୁଳାନନ୍ଦ ଭଦ୍ରକର କୁଆଁସ ପ୍ରାଇମେରୀ ବିଦ୍ୟାଳୟରୁ ଶିକ୍ଷା ଶେଷ କଲାପରେ କଟକ ଆସିଥିଲେ ଏବଂ ରେଭେନ୍‌ସା କଲେଜରୁ ବି.ଏସ୍‌ସି. ଓ ବିଶ୍ୱବିଦ୍ୟାଳୟରୁ ରସାୟନବିଜ୍ଞାନରେ ଉପାଧିରେ ଏମ୍.ଏସ୍‌ସି. ଡିଗ୍ରୀ ଲାଭ କରିଥିଲେ । ମେ ୧୯୪୮ ମସିହାରେ ରେଭେନ୍‌ସା କଲେଜରେ ଅଧ୍ୟାପକ ରୂପେ ରସାୟନବିଜ୍ଞାନ ବିଭାଗରେ ଯୋଗଦାନ କରିଥିଲେ । ପରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପିଏଚ୍.ଡି. ଓ ଯୁକ୍ତରାଷ୍ଟ୍ର ଆମେରିକାର ବ୍ରାଣ୍ଡର୍ସ ବିଶ୍ୱବିଦ୍ୟାଳୟରୁ ପୋଷ୍ଟଡକ୍ଟରାଲ ଡିଗ୍ରୀ ଲାଭ କରିଥିଲେ । ପରବର୍ତ୍ତୀ କାଳରେ ରସାୟନ ବିଜ୍ଞାନର ପ୍ରଫେସର ତଥା ବିଭାଗୀୟ ମୁଖ୍ୟ ଭାବେ ଦୀର୍ଘଦିନ ଦାୟିତ୍ୱ ତୁଲାଇ ୧୯୮୦ ମସିହାରେ ରେଭେନ୍‌ସା କଲେଜରୁ ଅବସର ଗ୍ରହଣ କରିଥିଲେ । ୧୯୭୦ ମସିହାରେ ଓଡ଼ିଶା ଟେକ୍ସଟ୍‌ବୁକ୍ ବ୍ୟୁରୋର ନିର୍ଦ୍ଦେଶକ କାର୍ଯ୍ୟ ତୁଲାଇଥିଲେ । ତାଙ୍କ ଦିଗ୍‌ଦର୍ଶନରେ ୧୦ଜଣ ଯୁବ ବୈଜ୍ଞାନିକ ପିଏଚ୍.ଡି. ଲାଭ କରିଥିଲେ । ଗୋକୁଳାନନ୍ଦ ସ୍ୱାଧୀନତାର ଅବ୍ୟବହିତ ପରେ ପରେ ଓଡ଼ିଆ ସାହିତ୍ୟରେ ଲୋକପ୍ରିୟ ବୈଜ୍ଞାନିକ ସାହିତ୍ୟର ଅଭାବ ଉପଲବ୍ଧି କରିଥିଲେ । କଲିକତାରେ ପଢୁଥିବାବେଳେ ସେ ବୈଜ୍ଞାନିକ ପ୍ରବନ୍ଧ ଲେଖି ଓଡ଼ିଆ ସାହିତ୍ୟ ପତ୍ରିକା, ସହକାର, ଶଙ୍ଖ ପ୍ରଭୃତିରେ ବିଜ୍ଞାନ ପ୍ରବନ୍ଧ ପ୍ରକାଶ କରିଥିଲେ । କାଲକଟା ରେଡ଼ିଓ ଷ୍ଟେସନ୍‌ରୁ ଓଡ଼ିଆ ପ୍ରସାରଣ ମଧ୍ୟ କରିଥିଲେ । ସେଥିରେ ତାଙ୍କର ମନ ମାନି ନ ଥିଲା । କଟକରେ ଅଧ୍ୟାପକ ଭାବରେ ଯୋଗଦାନ କଲା ପରେ ସେ ସମାନ ମନୋଭାବସମ୍ପନ୍ନ ବୁଦ୍ଧିଜୀବୀ ଅଧ୍ୟାପକମାନଙ୍କ ସହିତ ମିଶି ୧୯୪୯ ମସିହାରେ ବିଜ୍ଞାନ ପ୍ରଚାର ସମିତି ଗଠନ କରିଥିଲେ । ଏଥିରେ ଡକ୍ଟର ଗୋପାଳଚନ୍ଦ୍ର ପଟ୍ଟନାୟକ (ମେଡ଼ିସିନ୍), ଡକ୍ଟର ହରିହର ପଟ୍ଟନାୟକ (ଉଦ୍ଭିଦ ବିଜ୍ଞାନ) ଓ ଡକ୍ଟର ସଦାଶିବ ମିଶ୍ର (ଅର୍ଥଶାସ୍ତ୍ର) ଡକ୍ଟର ବିଦ୍ୟାଧର ପ୍ରମୁଖ ଯୋଗଦାନ କରିଥିଲେ ।

ପରବର୍ତ୍ତୀକାଳରେ ଏହି ସ୍ୱନାମଧନ୍ୟ ବୈଜ୍ଞାନିକମାନେ ଲୋକପ୍ରିୟ ବିଜ୍ଞାନ ରଚନାର 'ସପ୍ତ ମହାରଥୀ' ରୂପେ ପରିଚିତ ହୋଇଥିଲେ । ୧୯୪୯ରୁ ୨୦୧୩ ମସିହା ପର୍ଯ୍ୟନ୍ତ ବିଜ୍ଞାନ ପ୍ରଚାର ସମିତିର ପ୍ରବହମାନ ଧାରା କ୍ଷୁଦ୍ର ଗଙ୍ଗୋତ୍ରୀରୁ ବିଶାଳ କାୟ ପବିତ୍ର ଗଙ୍ଗାନଦୀରେ ପରିଣତ ହୋଇଛି । ଓଡ଼ିଆ ବିଜ୍ଞାନସାହିତ୍ୟର ଦିଗ ବାରେଣୀ ରୂପେ ଶତାଧିକ ଓଡ଼ିଆ ବିଜ୍ଞାନ ଲେଖକ ସୃଷ୍ଟି କରି ଅଜ୍ଞାନ ଅନ୍ଧକାରରୁ ଜ୍ଞାନାଞ୍ଜନ ପ୍ରଦାନପୂର୍ବକ ମୁକ୍ତି ପ୍ରଦାନ କରି ଜନମାନସରେ ବୈଜ୍ଞାନିକ ଚିନ୍ତାଧାରା (ସାଇଣ୍ଟିଫିକ୍ ଟେମ୍ପର୍) ପ୍ରଦାନ କରିପାରିଛନ୍ତି ।

## "ସା ବିଦ୍ୟା ଯା ବିମୁକ୍ତୟେ ।"

ସେହି ଉଦାର ଉପନିଷଦୀୟ ବାଣୀ ଗୋକୁଳାନନ୍ଦଙ୍କପାଇଁ ପ୍ରଯୁଜ୍ୟ । ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସେ ନିଜେ ତାଙ୍କର ଅମର ଲେଖନୀରୁ ନିସୃତ ରଚନାବଳୀ ତଥା ଲେଖକ ସୃଷ୍ଟି ମାଧ୍ୟମରେ ଅସଂଖ୍ୟ ରଚନାବଳୀ ଓଡ଼ିଆ ବୈଜ୍ଞାନିକ ଭାଷା ସାହିତ୍ୟକୁ ଋଦ୍ଧିମନ୍ତ କରିଛି, ଏହା କହିବାରେ କୌଣସି ଦ୍ୱିମତ ନାହିଁ । ବିଜ୍ଞାନ ପ୍ରଚାର ସମିତିଦ୍ୱାରା ପ୍ରକାଶିତ ଶତାଧିକ ପୁସ୍ତକ ଓ ଏହାର ମୁଖପତ୍ର । ବିଜ୍ଞାନାଲୋକ ଏହାର ଜ୍ୱଳନ୍ତ ଉଦାହରଣ ଗୋକୁଳାନନ୍ଦ ରଚନାବଳୀ ।

ଗୋକୁଳାନନ୍ଦ ରଚନାବଳୀକୁ ଦଶଭାବରେ ବିଭକ୍ତ କରାଯାଇପାରେ ।

୧. କଲେଜ ରସାୟନବିଜ୍ଞାନ ସ୍ତରରେ ପାଠ୍ୟପୁସ୍ତକ – ୧୦
୨. ବିଦ୍ୟାଳୟ ସ୍ତରର ବିଜ୍ଞାନ ପୁସ୍ତକ – ୫
୩. ଲୋକପ୍ରିୟ ବିଜ୍ଞାନ ପୁସ୍ତକ ରଚନା – ୮୦
୪. ବୈଜ୍ଞାନିକ ସାହିତ୍ୟ–ଉପନ୍ୟାସ ଓ ଗଳ୍ପ – ୧୨
୫. କିଶୋର ବିଜ୍ଞାନ ପୁସ୍ତକ – ୧୦
୬. ବିଜ୍ଞାନ ଜ୍ଞାନକୋଷ – ୨
୭. ବିଜ୍ଞାନ ଅଭିଧାନ – ୧
୮. ସଚିତ୍ର ବିଜ୍ଞାନ ଅଭିଧାନ – ୧
୯. ଭ୍ରମଣ କାହାଣୀ – ୩
୧୦. ପତ୍ରପତ୍ରିକାରେ ବିଜ୍ଞାନ ରଚନା – ୨୭

୧୯୫୩ ମସିହାରେ ମାତ୍ର ୩୦ ବର୍ଷ ୧୯୬୯ ମସିହାରେ ନିଲ ଆର୍ମଷ୍ଟ୍ରଙ୍ଗଙ୍କ ବୟସରେ ଚନ୍ଦ୍ର ଅଭିଯାନର ବହୁ ପୂର୍ବରୁ ତାଙ୍କର ବୈଜ୍ଞାନିକ ଉପନ୍ୟାସ ପୃଥିବୀ ବାହାରେ ମଣିଷ ଏକ ଯୁଗାନ୍ତକାରୀ ରଚନା । ଏହି ଉପନ୍ୟାସରେ ଚନ୍ଦ୍ର ଅଭିଯାନପାଇଁ ଯେଉଁ ତଥ୍ୟ ସବୁ ଦିଆଯାଇଛି ତାହା ଚନ୍ଦ୍ର ଅଭିଯାନରେ ଅନେକାଂଶରେ ବ୍ୟବହୃତ ହୋଇଥିଲା । ଏଚ୍.ଜି.ୱେଲସ, ସାର୍ ଜେମ୍ସ ଜିନ୍ ଯେଉଳି ଭାବରେ ଭବିଷ୍ୟରେ ବିଜ୍ଞାନକୁ କଳ୍ପନାରେ ରୂପ ଦେଇଥିଲେ ଗୋକୁଳାନନ୍ଦ ଓଡ଼ିଆ ସାହିତ୍ୟ ଜଗତରେ ସେହିଭଳି ଥୁରୀଣ ମହାରଥୀ ।

ଉଡ଼ନ୍ତା ଥାଳିଆ, ନିଃଶବ୍ଦ ଗୋଧୂଳି, ଚନ୍ଦ୍ରର ମୃତ୍ୟୁ ପ୍ରଭୃତି ତାଙ୍କର ଅନନ୍ୟ ସୃଷ୍ଟି । ବିଜ୍ଞାନର ବହୁ କ୍ଲିଷ୍ଟ ଲୁକ୍କାୟିତ ତଥ୍ୟକୁ ସରଳ ଓଡ଼ିଆ ଭାଷାରେ ଲୋକ ଲୋଚନକୁ ଆଣିବାପାଇଁ ସେ ଶତାଧିକ ବିଜ୍ଞାନ ଗଳ୍ପ ପୁସ୍ତକ ରଚନା କରିଛନ୍ତି । ସର୍ବୋପରି ତାଙ୍କର ଅଧ୍ୟୟନ, ଅନୁଶୀଳନ ଗବେଷଣା, ଏଷଣା ଓ ରଚନା ଶୈଳୀର ପଟାନ୍ତର ନାହିଁ । ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ, ୟୁରୋପର ଅନେକ ଦେଶ ଭ୍ରମଣ କରି ଯେଉଁ ଭ୍ରମଣ କାହାଣୀ ଲେଖିଛନ୍ତି ତାହା ଉପନ୍ୟାସ ଭଳି ସୁଖ ପାଠ୍ୟ ।

## ସମ୍ମାନ ଓ ପୁରସ୍କାର

ଭାରତୀୟ ତଥା ଆନ୍ତର୍ଜାତୀୟ ରସାୟନବିଜ୍ଞାନ ପତ୍ରିକାରେ ସେ ସତୁରୀରୁ ଉର୍ଦ୍ଧ୍ୱ ମୌଳିକ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶ କରିଛନ୍ତି । ଶ୍ରେଷ୍ଠ ମୌଳିକ ଗବେଷଣାମୂଳକ ପ୍ରବନ୍ଧ ରଚନାପାଇଁ ତାଙ୍କୁ ୧୯୫୯ ମସିହାରେ କୁପର ସ୍ମାରକୀ ସ୍ୱର୍ଣ୍ଣପଦକ ତଥା ରସାୟନ ବିଜ୍ଞାନୀ ସଂଘର ଫେଲୋସିପ୍ ପ୍ରଦାନ କରାଯାଇଥିଲା ।

ବୈଷୟିକ ରସାୟନବିଜ୍ଞାନ ବ୍ୟତୀତ ସେ ଲୋକପ୍ରିୟ ବିଜ୍ଞାନ ଲେଖାପାଇଁ ଅଜସ୍ର ସମ୍ମାନର ଅଧିକାରୀ । ଦୁଇଥର ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ବିଜ୍ଞାନ ଏକାଡେମୀ ପୁରସ୍କାର, ସାମନ୍ତ ଚନ୍ଦ୍ରଶେଖର ସମ୍ମାନ, ସଂଭ୍ରାନ୍ତ କଳିଙ୍ଗ ଫାଉଣ୍ଡେସନ୍ ପୁରସ୍କାର ବିଜ୍ଞାନ ବନ୍ଧୁ ସମ୍ମାନ, ଉତ୍କଳ ତଥା ରେଭେନ୍ସା ବିଶ୍ୱବିଦ୍ୟାଳୟ ତରଫରୁ ଅନସାରୀ ଡି.ଏସ୍‌ସି. ଉପାଧି ଲାଭ କରିଥିଲେ । ଏହି ସମ୍ମାନର ଲିଷ୍ଟ ଶତାଧିକ ।

## ସମାଜସେବା

ସମାଜସେବା ଗୋକୁଳାନନ୍ଦଙ୍କର ସହଜାତ ପ୍ରବୃତ୍ତି ବିଜ୍ଞାନ ପ୍ରଚାର ସମିତି ମାଧ୍ୟମରେ ସ୍କୁଲମାନଙ୍କରେ ବିଜ୍ଞାନ ଶିକ୍ଷାପାଇଁ ସଂପାନ୍ନ ତଥା ଶିକ୍ଷା ଦାନ କରି ସେ ବହୁ ଛାତ୍ରଛାତ୍ରୀ ଶିକ୍ଷକମାନଙ୍କ ମଧ୍ୟରେ ବୈଜ୍ଞାନିକ ଚିନ୍ତାଧାରା ଉଦ୍ରେକ କରାଇବାରେ ସହାୟକ ହୋଇଥିଲେ ।

ସ୍କୁଲ କଲେଜରେ ଆର୍ଥିକ ଦୁର୍ବଳ ଶ୍ରେଣୀର ଛାତ୍ରଛାତ୍ରୀ ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କ ସ୍ୱଉପାର୍ଜିତ ପାଣ୍ଠିରୁ ବୃତ୍ତିର ବ୍ୟବସ୍ଥା କରିଥିଲେ । ଅବସର ପରେ ପିତାଙ୍କ ନାମରେ ବିଜୟଗୋବିନ୍ଦ ଟ୍ରଷ୍ଟ, ମାତାଙ୍କ ନାମରେ ଫୁକଦେବୀ ଟ୍ରଷ୍ଟ, ପରଲୋକଗତ ପତ୍ନୀଙ୍କ ନାମରେ କୁମୁଦିନୀ ଟ୍ରଷ୍ଟ ଗଠନ କରିଥିଲେ । ବିଜୟ ଗୋବିନ୍ଦ ଟ୍ରଷ୍ଟ, ମେଡ଼ିସିନ୍, ପଦାର୍ଥବିଜ୍ଞାନ, ରସାୟନ ବିଜ୍ଞାନ ଉଦ୍ଭିଦବିଜ୍ଞାନ ପ୍ରଭୃତି ମୌଳିକ ବିଜ୍ଞାନରେ ଉତ୍କର୍ଷ ଲାଭ କରିଥିବା ବରିଷ୍ଠ ବୈଜ୍ଞାନିକମାନଙ୍କୁ 'ସ୍କ୍ରୋଲ୍ ଅଫ୍ ଅନର୍' ଓ ସ୍ୱର୍ଣ୍ଣପଦକ ପ୍ରଦାନ କରୁଥିଲେ । ଫୁକଦେବୀ ଟ୍ରଷ୍ଟ ମାଧ୍ୟମରେ ଶିଶୁ ଓ କିଶୋର ଲେଖାପାଇଁ ସମ୍ମାନ ଓ କୁମୁଦିନୀ ଟ୍ରଷ୍ଟ ମାଧ୍ୟମରେ ନାରୀ ଲେଖିକାମାନଙ୍କୁ ସମ୍ମାନପାଇଁ ଆୟୋଜନ କରିଥିଲେ ।

ପିତାମାତା ପତ୍ନୀଙ୍କ ନାମରେ ଟ୍ରଷ୍ଟ ଗଠନ କଲା ପରେ ସେ ନିଜ ଓ ପରଲୋକଗତ ନିଜ ବଡ଼ଭାଇଙ୍କ ନାମରେ ଡକ୍ଟର ଗୋକୁଳାନନ୍ଦ ନିତ୍ୟାନନ୍ଦ ମହାପାତ୍ର ଫାଉଣ୍ଡେସନ୍ ୨୦୧୧ ମସିହା ମେ ୧୮ ତାରିଖରେ ଗଠନ କରିଥିଲେ । ଏହି ଫାଉଣ୍ଡେସନ୍‌ର ଠାର ହେଲା – ଜି.ଏନ୍.ଏମ୍.ଏଫ୍. । ଏହି ଅନୁଷ୍ଠାନ ମାଧ୍ୟମରେ ସେ ଅନୁମତି ନେଇ ନିଜର ପୈତୃକ ସମ୍ପତ୍ତି ବିକି ଯେଉଁ ବିପୁଳ ଅର୍ଥ ଲାଭ କରିଥିଲେ, ସେଥିରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ବାବା ସାଗର ଦାସ ବିଦ୍ୟାପୀଠ ଗୋକୁଳାନନ୍ଦ କନଭେନ୍‌ସନ୍ ହଲ, ଭଦ୍ରକ ହାଇସ୍କୁଲରେ ଗୋକୁଳାନନ୍ଦ ସାଇନ୍‌ସ ବ୍ଲକ୍, ରେଭେନ୍‌ସା ବିଶ୍ୱବିଦ୍ୟାଳୟ ରସାୟନ ବିଜ୍ଞାନ ବିଭାଗରେ ବାତାନୁକୂଳ ପୁସ୍ତକାକାର ତଥା ସଂପାନ୍ନ ଗୃହ, ଉତ୍କଳ ବିଶ୍ୱବିଦ୍ୟାଳୟରେ ଆଡ଼ଭାନ୍‌ସଡ ଅର୍ଗାନିକ୍ କେମିଷ୍ଟ୍ରୀ ଲାବୋରୋଟରୀ ନିର୍ମାଣ କରାଇଛନ୍ତି ।

## ଗୋକୁଳାନନ୍ଦ ଜୀବନାଦର୍ଶ

୧୯୭୯ ମସିହାଠାରୁ ୨୦୧୩ ପର୍ଯ୍ୟନ୍ତ ଦୀର୍ଘ ଚାରି ଦଶନ୍ଧି ଧରି ଗୋକୁଳାନନ୍ଦ ମହାପାତ୍ରଙ୍କ ସହିତ ମୋର ସମ୍ପର୍କ ରହିଆସିଛି । ସାନ ବଡ଼ ନିର୍ବିଶେଷରେ ମୋ ଭଳି ସମସ୍ତଙ୍କୁ ପ୍ରଭାବିତ କରି ବିଜ୍ଞାନ ଲେଖାପାଇଁ ସେ ଉତ୍ସାହିତ କରୁଥିଲେ । ତାଙ୍କର ମୋ ପ୍ରତି ବିଶେଷ ସ୍ନେହ ଥିଲା । ସେ ଯେତେ ପ୍ରକାର ଗଠନମୂଳକ କାର୍ଯ୍ୟ କରୁଥିଲେ ସେଥିରେ ମୋତେ ମିଶାଉଥିଲେ । ତାଙ୍କର ସ୍ୱାସ୍ଥ୍ୟ ସମ୍ବନ୍ଧରେ ମଧ୍ୟ ସେ ମୋ ସହିତ ପରାମର୍ଶ କରୁଥିଲେ ।

ତାଙ୍କ ସନ୍ନିବେଶରେ ମୋତେ ପ୍ରଭାବିତ କେତେଗୁଡ଼ିଏ ତଥ୍ୟ ହେଲା –

୧. ସାମର୍ଥ୍ୟ ଅନୁସାରେ ଅନ୍ୟଙ୍କୁ ସାହାଯ୍ୟ କର । କାହାରି ମନରେ କଷ୍ଟ ହେଲାଭଳି କାର୍ଯ୍ୟ କର ନାହିଁ ।

୨. ନିଜ ଉପରେ ସବୁ ଦାୟିତ୍ୱ ନ ରଖି ଯୋଗ୍ୟତା ଅନୁସାରେ ଦାୟିତ୍ୱ ବିଭକ୍ତିକରଣ କରି ହସ୍ତାନ୍ତର କର ଯେଉଁଭଳିଭାବେ କାର୍ଯ୍ୟଟି ଠିକ୍ ସମୟରେ ସୂଚାରୁରୂପେ ସଂପାଦିତ ହେବ ।

୩. ସମାଜରେ ଯେଉଁ ଦୃଶ୍ୟମାନ ଅନ୍ଧବିଶ୍ୱାସ ଅଛି, ଯଥା – ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟପରାଗରେ ହାଣ୍ଡିଛାଡ଼ ଏବଂ ସହକାରୀ ଛୁଟି, ପୂଜାନାମରେ ନୃଶଂସ ପଶୁବଳି, ଗୁଣିଗାରେଡ଼ ଏବଂ ତନ୍ତ୍ର ମାଧ୍ୟମରେ ବଳି, ପୂଜା, ଡେଉଁରିଆ ତାବିଜ, ଛାତ୍ରମାନଙ୍କ କ୍ଷେତ୍ରରେ ପଢ଼ାପଢ଼ି ନ କରି ପରୀକ୍ଷା ପୂର୍ବରୁ ପୂଜାପାଠ ଇତ୍ୟାଦି ଦୂରୀଭୂତ ହେବା ଦରକାର ବୋଲି ସେ ଉପଲବ୍ଧି କରିଥିଲେ । ସେଥିପାଇଁ 'ବିଜ୍ଞାନାଲୋକ' ପତ୍ରିକାରେ ସଂପାଦକୀୟରେ ଏସବୁର ସେ ମୁକ୍ତ କଣ୍ଠରେ ତୀବ୍ର ନିନ୍ଦା କରି ଲେଖା ପ୍ରକାଶ କରୁଥିଲେ । ସେ କହୁଥିଲେ, ଅନ୍ଧବିଶ୍ୱାସ ତ୍ୟାଗ କର । ଯୁକ୍ତିହୀନ ପରମ୍ପରାର ସେ ଥିଲେ ବିରୋଧୀ ।

୪. ଗାନ୍ଧୀ ଚେତନାରେ ଉଦ୍‌ବୁଦ୍ଧ ଗୋକୁଳାନନ୍ଦ କୌଣସି ବଡ଼ କାର୍ଯ୍ୟପାଇଁ ପଦପଦବୀରେ ରହିବାର ଆବଶ୍ୟକତା ଅନୁଭବ କରୁ ନ ଥିଲେ । ବିଜ୍ଞାନ ପ୍ରଚାର ସମିତିର ବାଷଠି ବର୍ଷ ଜୀବନ କାଳ ମଧ୍ୟରେ ସେ ପଚାଶ ବର୍ଷରୁ ଉର୍ଦ୍ଧ୍ୱ କୌଣସୀ ପଦବୀ ଗ୍ରହଣ କରି ନ ଥିଲେ । କିନ୍ତୁ ଗାନ୍ଧୀଙ୍କ ପରି ତାଙ୍କୁ ନ ପଚାରି କୌଣସି କାର୍ଯ୍ୟ ହେଉ ନ ଥିଲା । ଆର୍ଥିକ ଶୃଙ୍ଖଳା ସହିତ ସମୟ ଓ ମନ ଦେଇ କାର୍ଯ୍ୟକଲେ ଯେ କୌଣସି ଅନୁଷ୍ଠାନରେ ଜଣେ ଦିଗ୍‌ଦର୍ଶକ ତଥା ଆଦରଣୀୟ ସଭ୍ୟ ହୋଇ ରହିପାରିବ ସେ ତା'ର ବଳିଷ୍ଠ ଉଦାହରଣ ।

୫. ନିରଳସ ମଙ୍ଗଳକାରୀ କାର୍ଯ୍ୟ ଚାଲୁ ରହିଥିଲେ, ସମୟକ୍ରମେ ଗଙ୍ଗୋତ୍ରୀର କ୍ଷୁଦ୍ର ସ୍ରୋତ ମଧ୍ୟ ଗଙ୍ଗାସାଗରରେ ପରିଣତ ହୁଏ ଏବଂ ତା'ର ପରିଣାମ ମଧ୍ୟ ସୁଖକର ହୋଇଥାଏ । ଗୋକୁଲାନନ୍ଦଙ୍କର ସାମଗ୍ରୀକ କୃତି ଓଡ଼ିଶାର ବୈଜ୍ଞାନିକ ଗବେଷଣା, ବିଜ୍ଞାନ ସାହିତ୍ୟ ତଥା କଲେଜ ସ୍ତରୀୟ ଓଡ଼ିଆ ବିଜ୍ଞାନ ପାଠ୍ୟ ପୁସ୍ତକ ପ୍ରଚଳନର ଅର୍ଦ୍ଧ ଶତାବ୍ଦୀର ଇତିହାସ ନିରଳସ ପରିଶ୍ରମ ହିଁ ବିଶାଳ କାର୍ଯ୍ୟ ସଂପାଦନ କରିଥାଏ ।

୬. ସଂସାରର ସବୁ କାର୍ଯ୍ୟରେ ଲିପ୍ତ ରହି ମଧ୍ୟ ସେ 'ପଦ୍ମପତ୍ରରେ ପାଣିଭଳି' ମୋହଗ୍ରସ୍ତ ନ ଥିଲେ । 'ସେ ପରୋପକାରାୟ ସ୍ୱର୍ଗାୟ, ପାପାୟ ପର ପୀଡ଼ନେ' ନୀତିରେ ବିଶ୍ୱାସ କରୁଥିଲେ । ସେଥିପାଇଁ ବାପା, ମା, ସ୍ତ୍ରୀ, ଭାଇ ସମସ୍ତଙ୍କ ନାମରେ ଟ୍ରଷ୍ଟ ଗଠନ କରି ପୈତୃକ ସମ୍ପତ୍ତି ବିକ୍ରୟ କରି ବିଲଗେଟ୍‌ସ୍'ଙ୍କ ଭଳି ନିଜର ପୈତୃକ ଓ ଉପାର୍ଜିତ ଧନର ବହୁଳ ଅଂଶ ଦାନ କରିଛନ୍ତି । ଆବଶ୍ୟକତାଠାରୁ ଅଧିକ ଧନ ସଂଗ୍ରହ ଆବଶ୍ୟକତା ନାହିଁ ବୋଲି ସେ ନିଜ ଆଚରଣରେ ଦେଖାଇଛନ୍ତି ।

୭. ସେ ଦୁଃଖ ଓ ଭୟରେ ମନ ଉଦ୍‌ବିଗ୍ନ କରୁ ନ ଥିଲେ । ବହୁ ଦୁଃଖ ସମୟରେ ତାଙ୍କ ସହିତ ଅନ୍ତରଗ ଆଳାପରେ କେବେ ତାଙ୍କୁ ଧୈର୍ଯ୍ୟଚ୍ୟୁତ ଅସ୍ଥିର ହେବା ଅନୁଭବ କରି ନାହିଁ ।

୮. ସମୟ ପରିଚାଳନା ତାଙ୍କର ସ୍ୱଭାବ ସିଦ୍ଧ ପ୍ରବୃତ୍ତି । ନିର୍ଦ୍ଦିଷ୍ଟ ସମୟ ଅନୁସାରେ ସେ ନିର୍ଦ୍ଦିଷ୍ଟ କାର୍ଯ୍ୟ ସୁରୁଖୁରୁରେ ସମାପ୍ତ କରିପାରୁଥିଲେ । କାର୍ଯ୍ୟ ସମାପନରେ ଦୀର୍ଘସୂତ୍ରୀଭାବ ତାଙ୍କର ସ୍ୱଭାବ ବିରୁଦ୍ଧ ଥିଲା । ଆଚରଣରେ ସେ ଏହା ସମସ୍ତଙ୍କୁ ଶିଖାଉଥିଲେ ।

୯. ଗୋଟିଏ ଦିନରେ ବହୁପ୍ରକାର କାର୍ଯ୍ୟ, ଯଥା – ଅଧ୍ୟୟନ, ଅଧ୍ୟାପନା, ଗବେଷଣା, ଥିସିସ୍ ଗାଇଡ୍, ଲୋକପ୍ରିୟ ବିଜ୍ଞାନ ରଚନା, ପାଠ୍ୟପୁସ୍ତକ ରଚନା, ଉପନ୍ୟାସ, ଗଳ୍ପରଚନା ରୋଷାଇ ଭଳି ବିଭିନ୍ନ ପ୍ରକାର କାର୍ଯ୍ୟ (ମଲଟି ଟାସ୍କିଂ) ସହଜରେ କରିପାରୁଥିଲେ । ଆଚରଣରେ କେବେ ବାଗାଡମ୍ବର କିମ୍ବା ବିରକ୍ତି ପ୍ରକାଶ କରୁ ନ ଥିଲେ । 'ଆହାର ବିହାର ଆଚାର ବିଚାର'ର ଏକ ସାମଗ୍ରୀକ ସନ୍ତୁଳନ ନିଜ ଜୀବନରେ ଆଚରଣ କରୁଥିଲେ । ଫଳରେ ଦୀର୍ଘ ତିରିଶ ବର୍ଷରୁ ଊର୍ଦ୍ଧ୍ୱ ଡାଇବେଟିସ୍ ରୋଗ ଭୋଗ କରୁଥିଲେ ମଧ୍ୟ ତାଙ୍କ ଶରୀରରେ ଏହି ରୋଗର କୌଣସି କୁପ୍ରଭାବ ପରିଲକ୍ଷିତ ହୋଇ ନ ଥିଲା । ନିର୍ଦ୍ଦିଷ୍ଟ ଔଷଧ ସେବନରେ ମଧ୍ୟ ସେ ନିୟମିତ ଥିଲେ ।

ଗୋକୁଳାନନ୍ଦଙ୍କ ଦେହାନ୍ତ ପରେ ତାଙ୍କର ପ୍ରିୟ ବାସଭବନ 'ଆମ୍ରପଲ୍ଲୀ' ଏବେ ନିଃସଙ୍ଗ । ଆମ୍ରପଲ୍ଲୀ ଥିଲା ବୈଜ୍ଞାନିକ ଚିନ୍ତାଧାରା ପରିପ୍ରକାଶର ଏକ ମୁକ୍ତ ବିଶ୍ୱବିଦ୍ୟାଳୟ ଯେଉଁଠାରେ ବରିଷ୍ଠ ବୈଜ୍ଞାନିକ ଓ ବିଜ୍ଞାନ ଶିକ୍ଷକମାନେ ନିଜର ସ୍ୱକୀୟ ପ୍ରବନ୍ଧ ପାଠ କରୁଥିଲେ ଏବଂ ଭାବର ଆଦାନପ୍ରଦାନ ମଧ୍ୟରେ ସତ୍ୟାନୁଶୀଳନ କରୁଥିଲେ ।

ଡକ୍ଟର ମହାପାତ୍ରଙ୍କ ଶେଷକୃତ୍ୟ, ଜନସାଧାରଣଙ୍କ ସ୍ନେହ ଶ୍ରଦ୍ଧାରେ ସହରର ସମସ୍ତ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଉପସ୍ଥିତିରେ ହାର୍ଦ୍ଦିକ ସମ୍ମାନ ସହିତ ସଂପନ୍ନ ହୋଇଛି । ଉତ୍କଳ ତଥା ରେଭେନ୍ସା ବିଶ୍ୱବିଦ୍ୟାଳୟରେ ତାଙ୍କର ମର ଶରୀର ପ୍ରତି ଅଜସ୍ର ଶ୍ରଦ୍ଧା ନିବେଦନ କରାଯାଇଛି । ମୃତ୍ୟୁରେ ସେ ହୋଇପଡ଼ିଛନ୍ତି ମହୀୟାନ ।

ଶେଷ କୃତ୍ୟ ସମୟରେ ତାଙ୍କର ସମଗ୍ର ପରିବାର ତାଙ୍କ ସହିତ ଉପସ୍ଥିତ ଥିଲେ । ଜ୍ୟେଷ୍ଠପୁତ୍ର ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଆଣବିକ ହୃଦ୍‌ରୋଗ ବିଜ୍ଞାନ ବିଶେଷଜ୍ଞ ପ୍ରଫେସର ଗିରିଜାନନ୍ଦନ ମହାପାତ୍ର ମୁଖାଗ୍ନି ଦେଇଥିଲେ । ତାଙ୍କର ପୁଅ ଝିଅ ନାତି ନାତୁଣୀ ସମସ୍ତେ ଉଚ୍ଚପ୍ରତିଷ୍ଠିତ । ଝିଅ, ପୁଅ, ବୋହୂ ଜ୍ୟୋତ୍ସ୍ନା, ସ୍ନିଗ୍ଧା, ଟୁନୁ, ନନ୍ଦନନ୍ଦନ, ଶିବାନୀ, ପ୍ରଗତି, କ୍ୱାଇଁ ନାତି ନାତୁଣୀମାନଙ୍କୁ ସମବେଦନା ଜଣାଉଛି ।

ସେ ଏକ ଅନିର୍ବାଣ ଦୀପଶିଖା । ତାଙ୍କର ପିଲାମାନେ ଏହି ଗୌରବର ବାର୍ତ୍ତାବହ ।

ପ୍ରଫେସର ମେଡ଼ିସିନ୍
ନିମସାହି, କଟକ

# 'ମୁଁ' କହୁନଥିବା ବ୍ୟକ୍ତିତ୍ୱ

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ସାର୍ ପରଲୋକକୁ ଚାଲିଗଲେ । ଚାଲିଗଲେ ଶ୍ରୀଗୁଣ୍ଡିଚାର ପବିତ୍ର ତିଥିରେ । ଶ୍ରୀଜଗନ୍ନାଥପ୍ରେମୀମାନଙ୍କ ଦୃଷ୍ଟିରେ ଏହି ଦିବସଟିର ତାତ୍ପର୍ଯ୍ୟ ଅତି ମହତ୍ତ୍ୱପୂର୍ଣ୍ଣ । ବାଣୀକଣ୍ଠ ନିମାଇଁଚରଣ ହରିଚନ୍ଦନ ପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ 'ବାହୁଡ଼ାରେ ମୋତେ ବାହୁଡ଼ାଇ ନିଅ' ଶୀର୍ଷକ ଏକ ଜଣାଣ ଗାଇଥିଲେ । ଭକ୍ତର ଏହି ଆକୁଳ ନିବେଦନକୁ ରକ୍ଷାକରି ନିଜର ପୁଣ୍ୟ ବାହୁଡ଼ା ଦିବସରେ ହିଁ ପ୍ରଭୁ ତାଙ୍କୁ ବାହୁଡ଼େଇ ନେଇଥିଲେ ବୈକୁଣ୍ଠଧାମକୁ । କିନ୍ତୁ ସାର୍ ଦେଖାଣତରେ ଭକ୍ତ ନ ଥିଲେ; ହେଲେ ତାଙ୍କୁ ପ୍ରାପ୍ତ ହୋଇଗଲା ଭଗବାନ୍‌ଙ୍କ କୃପା । ଶ୍ରୀଗୁଣ୍ଡିଚାରେ ସଂସାର ତ୍ୟାଗ କରିବା ସାର୍‌ଙ୍କ ସୁକୃତିର ଫଳ ନୁହେଁ ତ ?

ଓଡ଼ିଆ ଭାଷାରେ ବିଜ୍ଞାନକୁ ଜନପ୍ରିୟ କରିବା ଲକ୍ଷ୍ୟରେ ସାର୍ ବିଜ୍ଞାନ ବିଷୟକ ପ୍ରବନ୍ଧମାନ ଲେଖିଛନ୍ତି । ଲେଖିଛନ୍ତି ଉପନ୍ୟାସ, ନାଟକ, ବୈଜ୍ଞାନିକମାନଙ୍କ ଜୀବନୀ । ସଂକଳନ କରିଛନ୍ତି ବିଜ୍ଞାନ ଜ୍ଞାନକୋଷ । ଲେଖନୀ ଚଳେଇଛନ୍ତି ବିଜ୍ଞାନର ସମସ୍ତ ପ୍ରମୁଖ ଶାଖାରେ । ତାଙ୍କଦ୍ୱାରା ପ୍ରଣୀତ ଜନପ୍ରିୟ ବିଜ୍ଞାନ ପୁସ୍ତକର ସଂଖ୍ୟା ଶତାଧିକ, ସହସ୍ରାଧିକ ତାଙ୍କ ଲେଖନୀପ୍ରସୂତ ବିଜ୍ଞାନ ଲେଖାର ସଂଖ୍ୟା ।

ବାସ୍ତବରେ ଓଡ଼ିଆ ଭାଷାରେ ବିଜ୍ଞାନକୁ ଲୋକପ୍ରିୟ କରାଇବାରେ ସାର୍ ଥିଲେ ଅଦ୍ୱିତୀୟ । ଥିଲେ ଅଗ୍ରଣୀ ତଥା ପଥପ୍ରଦର୍ଶକ । ଯେତେବେଳେ ହାଇସ୍କୁଲ ସ୍ତରରେ ଇଂରାଜୀଭାଷାରେ ବିଜ୍ଞାନ ପଢ଼ାଯାଉଥିଲା, ସେତେବେଳେ ସେ ଓଡ଼ିଆ ଭାଷାରେ ବିଜ୍ଞାନ ପାଠ୍ୟପୁସ୍ତକ ରଚନା କରି ବିଜ୍ଞାନ ଅଧ୍ୟାପକମାନଙ୍କ ମହଲରେ ଚହଳ ପକେଇ ଦେଇଥିଲେ । ଏପରିକି ଓଡ଼ିଆରେ ବିଜ୍ଞାନ ପାଠ୍ୟପୁସ୍ତକ ଲେଖି ବିଜ୍ଞାନ ଅଧ୍ୟାପକମାନଙ୍କ ମାନସମ୍ମାନ ତଳେ ପକେଇଦେଲେ ବୋଲି ଅଧ୍ୟାପକମାନଙ୍କ ତୁଣ୍ଡରୁ କୁତ୍ସା ଶୁଣିବାପାଇଁ ପଡ଼ିଥିଲା ସାର୍‌ଙ୍କୁ ।

କିନ୍ତୁ ଏହା ତ ଥିଲା କିଛି ଦଶକ ତଳର କଥା । ମାତ୍ର ସାଂପ୍ରତିକ ପରିପ୍ରେକ୍ଷୀରେ ଦେଖିଲେ ଆମ ରାଜ୍ୟରେ ବିଜ୍ଞାନକୁ ଜନପ୍ରିୟ କରାଇବାରେ ସାର୍ ଯେଉଁ ଉଦ୍ୟମ କରିଥିଲେ, ତାହା ନେଇଗଲା ଏକ ଆନ୍ଦୋଳନର ରୂପ । ସେ ଥିଲେ ଏହି ଆନ୍ଦୋଳନର ମଙ୍ଗୁଆଳ । ନିଜ ମାନସପୁତ୍ର 'ବିଜ୍ଞାନ ପ୍ରଚାର ସମିତି' ମାଧ୍ୟମରେ ବିଜ୍ଞାନକୁ ସାର୍ବଜନୀନ କରେଇ ଦେଇପାରିଲେ ସାର୍ । ବିଜ୍ଞାନକୁ ଲୋକାଭିମୁଖୀ କରାଇବାରେ ସଂପ୍ରତି ଯେଉଁ ଲେଖକମାନେ ବ୍ରତୀ ରହିଛନ୍ତି, ସେମାନଙ୍କ ମଧ୍ୟରୁ ଅନେକେ ପ୍ରତ୍ୟକ୍ଷ ଏବଂ ପରୋକ୍ଷଭାବରେ ସାର୍‌ଙ୍କଦ୍ୱାରା ଉଦ୍‌ବୁଦ୍ଧ । ତାଙ୍କରି ଯୋଗୁହିଁ ଆମ ଭାଷାରେ ବିଜ୍ଞାନ ସାହିତ୍ୟ ଏକ ସ୍ୱତନ୍ତ୍ର ସ୍ୱାଦର ସାହିତ୍ୟ ଭାବରେ ପରିଚିତି ପ୍ରାପ୍ତ ହୋଇପାରିଛି । ବିଜ୍ଞାନ ବିଷୟକ ଉପସ୍ଥାପନରେ ଶୈଳୀ ତଥା ଭାଷା ନିର୍ବାଚନ ଦୃଷ୍ଟିରୁ ସାର୍ ଛାଡ଼ିଯାଇଛନ୍ତି ନିଜସ୍ୱ ଅନନ୍ୟ ଛାପ । ହୁଏତ ଏହା 'ଗୋକୁଳାନନ୍ଦୀୟ ସାହିତ୍ୟ' ଭାବରେ ବହନ କରିଛି ସ୍ୱତନ୍ତ୍ର ପରିଚିତି ।

ହଁ, ଜନପ୍ରିୟ ବିଜ୍ଞାନ ଲେଖକ ଭାବରେ ସାର୍ ଥିଲେ ଅସାଧାରଣ, ଏକ କିମ୍ବଦନ୍ତୀ । କିନ୍ତୁ କେଉଁଭଳି ମଣିଷ ଥିଲେ ସେ ?

ସେ ଥିଲେ ମଣିଷ ପରି ଜଣେ ମଣିଷ । ତାଙ୍କୁ ଈର୍ଷା କରିହୁଏ; କାରଣ ତାଙ୍କୁ ଅନୁକରଣ କରି ତାଙ୍କରିପରି ହେବା ତାତ୍ତ୍ୱିକ ଦୃଷ୍ଟିକୋଣରୁ ହୁଏତ ସମ୍ଭବ

ହୋଇପାରେ ସିନା, କିନ୍ତୁ ଏପରି ଏକ ବାସନାକୁ ବାସ୍ତବାୟିତ କରିବା ବୋଧହୁଏ ସମ୍ଭବ ନୁହେଁ । ପ୍ରକୃତରେ ସାର୍ ଥିଲେ କେବଳ ସାର୍‌ଙ୍କ ପରି । ଆଉ କେହି ତାଙ୍କ ପାସଙ୍ଗରେ ବି ପଡ଼ିପାରିବେ ନାହିଁ । ଏଥିପାଇଁ ଯେଉଁମାନେ ସାର୍‌ଙ୍କ ଭଳି ଜଣେ ବ୍ୟକ୍ତିତ୍ୱଙ୍କ ଘନିଷ୍ଠ ସାନ୍ନିଧରେ ଆସିଛନ୍ତି, ସେମାନେ ନିଶ୍ଚିତ ଭାବରେ ମହାଭାଗ୍ୟବାନ୍ ।

ସାର୍‌ଙ୍କ କୃତି ଓ କୀର୍ତ୍ତିର ଫର୍ଦ୍ଦ ଅତି ଦୀର୍ଘ । କିନ୍ତୁ ସେଗୁଡ଼ିକ 'ମୋର' କୃତି ବୋଲି କହିବୁଲିବା ଥିଲା ତାଙ୍କ ପ୍ରକୃତିର ପରିପନ୍ଥୀ ।

ସାର୍ ଆମେରିକାରେ କଟେଇଥିଲେ ପାଖାପାଖି ଅଢ଼େଇ ବର୍ଷ । ଗବେଷଣା କରିଥିଲେ ଡି.ଏନ୍.ଏ. ଉପରେ । ସେ ସମୟରେ ଡି.ଏନ୍.ଏର ଖୁବ୍ ନାଆଁ । ଡି.ଏନ୍.ଏ. ସଂକ୍ରାନ୍ତ ଗବେଷଣାକୁ ଦିଆଯାଉଥିଲା ଅତି ଗୁରୁତ୍ୱ । କିନ୍ତୁ ସାର୍ ଏ ସମ୍ପର୍କରେ ପ୍ରୌଢ଼ି ପ୍ରଦର୍ଶନ କରିବା ଦୂରେ ଥାଉ, ଅନ୍ୟମାନଙ୍କ ଆଗରେ ଉଲ୍ଲେଖ କରିବାପାଇଁ ମଧ ବିମୁଖ ଥିଲେ ।

ତାଙ୍କରି ଉଦ୍ୟମରେ ହିଁ ଆହୂତ ହୋଇଥିଲା 'ବିଜ୍ଞାନ ପ୍ରଚାର ସମିତି' ଗଠନ କରିବାର ପ୍ରଥମ ସଭା । ସେହି ସଭାରେ ସମିତି ଜନ୍ମ ନେଲା । ହେଲେ ନିଜେ ସମିତିର ଜନ୍ମଦାତା ବୋଲି ସେ କେବେ ଦାବି କରୁ ନ ଥିଲେ । ବରଂ ଏହାର ଶ୍ରେୟଃ ଦେଉଥିଲେ ଅନ୍ୟ ପ୍ରତିଷ୍ଠାତା ସଭ୍ୟମାନଙ୍କୁ ।

ଏବକାର ଲୋକେ ସାମାନ୍ୟ ସୁଯୋଗ ମିଳିବାମାତ୍ରେ ଆତ୍ମପ୍ରଂଶସାରେ ମୁଖର ହୋଇ ଉଠୁଛନ୍ତି । କିନ୍ତୁ ସାର୍ ଏ ସମ୍ପର୍କରେ ଥିଲେ ଜଣେ ବ୍ୟତିକ୍ରମ । କେଇଟି ବହି ଲେଖିଛନ୍ତି, କେଉଁ କେଉଁ ବିଷୟରେ ଲେଖିଛନ୍ତି, ସେଗୁଡ଼ିକ କେତେଦୂର ଆଦୃତ ହୋଇଛି ଇତ୍ୟାଦି ବିଷୟରେ ସାର୍ ଅବଲମ୍ବନ କରୁଥିଲେ ନିରବତା । ଅନ୍ୟମାନଙ୍କ ସମ୍ମୁଖରେ ବଖାଣିବାରେ ଥିଲେ ସମ୍ପୂର୍ଣ୍ଣ ବୀତସ୍ପୃହ ।

ନିଜକୁ ବିଜ୍ଞାପିତ କରିବା ଥିଲା ତାଙ୍କର ନୀତିବିରୁଦ୍ଧ । ନିଜକୁ ଜାହିର କରିବାପାଇଁ ଚାହୁଁ ନ ଥିବାରୁ ହିଁ ସାର୍ ବୋଧହୁଏ ବଡ଼ପାଟିରେ କଥାବାର୍ତ୍ତା କରୁ ନ ଥିଲେ । ସାମାନ୍ୟ ସାମାନ୍ୟ କଥାରେ ରାଗି ଯାଉ ନ ଥିଲେ । ନିଜ ମତକୁ ସାବ୍ୟସ୍ତ କରିବା ନିମନ୍ତେ ଜଡ଼ିତ ହୋଇପଡୁ ନ ଥିଲେ ଯୁକ୍ତିତର୍କରେ । ସମସ୍ତଙ୍କର ଭଲଗୁଣଗୁଡ଼ିକ ହିଁ ତାଙ୍କ ଦୃଷ୍ଟିରେ ପଡୁଥିଲା । ସେଥିପାଇଁ ଅନ୍ୟମାନଙ୍କର ଦୋଷପ୍ରତି ଦୃଷ୍ଟି ନ ଦେବା ଥିଲା ତାଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ । ପ୍ରତ୍ୟେକଙ୍କ ପ୍ରତି ସେ ପୋଷଣ କରୁଥିଲେ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ମନୋବୃତ୍ତି । ସେ ଯଦି 'ମୁଁ'ତ୍ୱ ପ୍ରଦର୍ଶନ କରିଥାନ୍ତେ, ତେବେ ବିଜ୍ଞାନ ପ୍ରଚାର ସମିତି କେଉଁକାଳୁ ବିଲୟ ଲଭି ସାରିଥାନ୍ତା ।

ସାର୍ ନିଜ ପିତାଙ୍କ ନାଆଁରେ ପ୍ରତିଷ୍ଠା କରିଛନ୍ତି 'ବିଜୟ ଗୋବିନ୍ଦ ସ୍ମାରକୀ ଦାତବ୍ୟ ଟ୍ରଷ୍ଟ୍' । କିନ୍ତୁ ଏହି ଟ୍ରଷ୍ଟ୍ ଆନୁକୂଲ୍ୟରେ ସେ କେବଳ ଜନପ୍ରିୟ ବିଜ୍ଞାନ କ୍ଷେତ୍ରରେ ପୁରସ୍କାର ଓ ସମ୍ମାନର ବ୍ୟବସ୍ଥା କରି ନାହାନ୍ତି, ଜନପ୍ରିୟ ବିଜ୍ଞାନ ସହ ଉଚ୍ଚକୋଟୀର ବୈଜ୍ଞାନିକ ଗବେଷଣା, ସାହିତ୍ୟ, ସମାଜସେବା ଏବଂ ଶିଶୁସାହିତ୍ୟ ଶାଖାରେ ମଧ ପୁରସ୍କାର ଓ ସମ୍ମାନର ବ୍ୟବସ୍ଥା କରିଛନ୍ତି । ପିତା, ମାତା, ଭ୍ରାତା ଓ ପତ୍ନୀଙ୍କ ନାମରେ ପୁରସ୍କାର ଏବଂ ସମ୍ମାନର ବ୍ୟବସ୍ଥା ରଖିବା ସଙ୍ଗେ ସଙ୍ଗେ କେତେକ ସମ୍ମାନକୁ ନାମିତ କରିଛନ୍ତି ପ୍ରଖ୍ୟାତ ବୈଜ୍ଞାନିକ ଡକ୍ଟର ବଳଭଦ୍ର ପ୍ରସାଦ, ଡକ୍ଟର ପ୍ରାଣକୃଷ୍ଣ ପରିଜା, ଡକ୍ଟର ମହେନ୍ଦ୍ର କୁମାର ରାଉତ ଏବଂ ଡାକ୍ତର ଜ୍ୟୋସ୍ନାଦେଈ ତଥା କବିଶେଖର ଚିନ୍ତାମଣିମହାନ୍ତିଙ୍କ ନାମରେ ମଧ । ସାର୍‌ଙ୍କ ନିଃସ୍ୱାର୍ଥପର ସ୍ୱଭାବର ଏହା କ'ଣ ଏକ ଦୃଷ୍ଟାନ୍ତ ନୁହେଁ ?

ଏହାଛଡ଼ା ଉତ୍କଳ ବିଶ୍ୱବିଦ୍ୟାଳୟ ଓ ରେଭେନ୍‌ସା ବିଶ୍ୱବିଦ୍ୟାଳୟର ରସାୟନ ବିଜ୍ଞାନ ବିଭାଗରେ ଗବେଷଣାଗାର ଏବଂ ଗବେଷଣାର ଉନ୍ନତିପାଇଁ ପ୍ରଦାନ କରିଛନ୍ତି ମୋଟାଅଙ୍କର ଅନୁଦାନ । ଦୋଳମୁଣ୍ଡାଇସ୍ଥିତ

ସାଗରବାବା ବିଦ୍ୟାପୀଠରେ ନିର୍ମାଣ କରିଯାଇଛନ୍ତି ଏକ ବିରାଟ ସଭାଗୃହ ।

ଭଦ୍ରକସ୍ଥ ଅବସରପ୍ରାପ୍ତ କର୍ମଚାରୀମାନଙ୍କ ବ୍ୟବହାର ନିମନ୍ତେ ସେଠାରେ ଗୃହଟିଏ ନିର୍ମାଣ କରିବାପାଇଁ ଜମିଦାନ କରିବା ସାର୍‌ଙ୍କର ଅନ୍ୟତମ ସମାଜସେବା କାର୍ଯ୍ୟ । କେବଳ ସେତିକି ନୁହେଁ, ସମାଜର ଭିନ୍ନକ୍ଷମ ଏବଂ ଅନାଥ ଶିଶୁମାନଙ୍କ ଥଇଥାନ ତଥା ବିକାଶ ନିମନ୍ତେ ଆର୍ଥିକ ସହାୟତା ଯୋଗାଇଦେବା ସାର୍‌ଙ୍କ ମହାନ୍ ମାନବୀୟ ଚରିତ୍ରର ଦୃଷ୍ଟାନ୍ତ ।

ଏବେ ମନେ ପକାନ୍ତୁ ତ, ନିଜର ଏକକ ପୃଷ୍ଠପୋଷକତାରେ ସମାଜକୁ ଏହି ପ୍ରକାରର ଅବଦାନ ଦେଇ ମଧ୍ୟ ନିଜକୁ ଅନ୍ତରାଳରେ ରଖିବା ନିମନ୍ତେ ପସନ୍ଦ କରୁଥିବା କେତେଜଣ ବ୍ୟକ୍ତିଙ୍କୁ ଆପଣ ଦେଖିଛନ୍ତି ?

ଆତ୍ମପ୍ରୌଢ଼ି ନାହିଁ, ଆତ୍ମପ୍ରଶଂସା ନାହିଁ, ମନରେ ଲେଶମାତ୍ର ଗର୍ବ-ଅହଂକାର ନାହିଁ, ଅଛି କେବଳ ବିନମ୍ରତା । 'ମୁଁ କରିଛି' ବୋଲି ବଡ଼େଇ କରିବାଠାରୁ ସାର୍ ଥିଲେ ବହୁଦୂରରେ । ହୁଏତ ଆତ୍ମଶ୍ଳାଘା ଥିଲା ସାର୍‌ଙ୍କ ପବିତ୍ର ଚରିତ୍ରର ପରିପନ୍ଥୀ ।

ସାର୍ ସତରେ ଥିଲେ 'ମୁଁ' କହୁ ନ ଥିବା ଜଣେ ମଣିଷ । ସେଥିପାଇଁ ସେ ରହିଆସିଥିଲେ ଅଜାତଶତ୍ରୁ, ନିର୍ବିବାଦୀୟ ତଥା ସମସ୍ତଙ୍କ ସମ୍ମାନର ପାତ୍ର ।

ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ, ଡକ୍ଟର ସଦାଶିବ ମିଶ୍ର, ଅଧ୍ୟାପକ କୃଷ୍ଣଚରଣ ଦାସ, ଡକ୍ଟର ଶ୍ୟାମାନନ୍ଦ ପଟ୍ଟନାୟକ, ଡାକ୍ତର ମହେନ୍ଦ୍ରଚନ୍ଦ୍ର ମିଶ୍ର ଏବଂ ଡାକ୍ତର ରାଇକୃଷ୍ଣ ମହାନ୍ତି ଥିଲେ ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା ସଭ୍ୟ । ଏମାନେ କେଉଁକାଳୁ ସ୍ୱର୍ଗପୁରୀରେ ଅପେକ୍ଷା କରିଛନ୍ତି । ସେମାନଙ୍କ ଗହଣରେ ଅଛନ୍ତି ସମିତିର କତିପୟ ପ୍ରାକ୍ତନ ସଦସ୍ୟ । ପରେ ପରେ ସେଠାରେ ପହଞ୍ଚିଲେଣି ଡକ୍ଟର ବିଶ୍ୱନାଥ ସାହୁ, ଡକ୍ଟର ହରିହର ପଟ୍ଟନାୟକ, ଡକ୍ଟର ଗଦାଧର ମିଶ୍ର ଏବଂ ଡକ୍ଟର କୁଳମଣି ସାମଲ ପ୍ରମୁଖ ବରିଷ୍ଠ ସଭ୍ୟମାନେ । ଏବେ ସାର୍ ସେମାନଙ୍କ ସହ ସାମିଲ୍ ହୋଇଗଲେ । ସୁତରାଂ ସ୍ୱର୍ଗପୁରୀରେ ବିଜ୍ଞାନ ପ୍ରଚାର ସମିତିର ଏକ ଶାଖା ପ୍ରତିଷ୍ଠା କରିବାରେ ଆଉ ସମସ୍ୟା ନାହିଁ ହୁଏତ !

ସାର୍‌ଙ୍କ ତିରୋଧାନ ଯୋଗୁଁ ଗଣାଭିମୁଖୀ ବିଜ୍ଞାନ ରଚନା କ୍ଷେତ୍ରରେ 'ଗୋକୁଳାନନ୍ଦ ଯୁଗ'ର ଅବସାନ ଘଟିଲା । ଯବନିକା ପଡ଼ିଗଲା 'ଗୋକୁଳାନନ୍ଦୀୟ ବିଜ୍ଞାନ ସାହିତ୍ୟ' ରଚନାରେ ।

ସାର୍ ଏବେ ଆମ ସ୍ମୃତିର ସମ୍ପତ୍ତି ।

ଅଭୀପ୍ସା
ସେକ୍ଟର-୬, ପ୍ଲଟ୍-ନଂ-୧୧୩୧
ଅଭିନବ ବିଡ଼ାନାସୀ-୧୪

# ମହାନ୍ ମାନବ ଗୋକୁଳାନନ୍ଦ

ପ୍ରଫେସର ଇଂ. ପ୍ରଭାକର ସ୍ୱାଇଁ

ପ୍ରଫେସର ଡଃ ଗୋକୁଳାନନ୍ଦ ମହାପାତ୍ର ଜଣେ ରସାୟନ ବିଜ୍ଞାନୀ ଭାବରେ ସମଗ୍ର ବିଶ୍ୱରେ ସୁପରିଚିତ । ସେହିଭଳି ଜଣେ ବିଜ୍ଞାନ ଲେଖକ ଭାବରେ ତାଙ୍କ ଖ୍ୟାତିର ବ୍ୟାପ୍ତି ଅପରିସୀମ । ସ୍କୁଲ ଛାତ୍ରାବସ୍ଥାରୁ ତାଙ୍କ ନାମ ଓ ଲେଖା ସହିତ ମୁଁ ପରିଚିତ । ସ୍କୁଲ ଓ କଲେଜ ପାଠ୍ୟକ୍ରମରେ ତାଙ୍କର ଉପାଦେୟ ରଚନା ମୁଁ ପଢ଼ିଛି । ଏହା ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କର ଅଜସ୍ର ପ୍ରବନ୍ଧ ଓ ଗ୍ରନ୍ଥରାଜି ପାଠ କରିବାର ସୁଯୋଗ ପାଇଛି । ତାଙ୍କ ରଚନାବଳୀ ପଢ଼ିଲେ ସେ କେତେ ଜ୍ଞାନୀ, ତାହା ଆକଳନ କରିବା କଷ୍ଟକର । ସେ ଯେଉଁଭଳି ବଡ଼ ବୈଜ୍ଞାନିକ, ସେଭଳି ଜଣେ ବଡ଼ ବିଜ୍ଞାନ ଲେଖକ । ସର୍ବୋପରି ତାଙ୍କୁ ବିଜ୍ଞାନ ଜଗତର ଧ୍ରୁବତାରା କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍ତର ପିଢ଼ିର ବିଜ୍ଞାନ ଲେଖକଙ୍କ ସେ ହେଉଛନ୍ତି ଦିଗ୍‌ଦର୍ଶକ । ବିଜ୍ଞାନ ପ୍ରଚାର ସମିତିର କର୍ମକର୍ତ୍ତା ଓ ଅଧ୍ୟକ୍ଷ ଭାବରେ ବିଜ୍ଞାନକୁ ଲୋକପ୍ରିୟ କରାଇବାରେ ତାଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । ତାଙ୍କୁ ଓଡ଼ିଆ ବିଜ୍ଞାନ ସାହିତ୍ୟର ଜନକରୂପେ ବିବେଚନା କରାଯାଇପାରେ । ସାହିତ୍ୟର ଅଭିବୃଦ୍ଧିପାଇଁ ସେ ନିଜ ପତ୍ନୀଙ୍କ ନାମରେ ଏକ ସାହିତ୍ୟ ପୁରସ୍କାର ପ୍ରବର୍ତ୍ତନ କରିଛନ୍ତି । ଏହା ପ୍ରତିବର୍ଷ ଜଣେ ଶ୍ରେଷ୍ଠ ଲେଖିକାଙ୍କୁ ଦିଆ ଯାଇଥାଏ । ଏହା ସାହିତ୍ୟ ଜଗତକୁ ତାଙ୍କର ମହାର୍ଘ ଅବଦାନ । ମୋର ପରମ ସୌଭାଗ୍ୟ ଯେ ମୁଁ ତାଙ୍କ ସହିତ ଭଲ ଭାବରେ ମିଶିବାର ସୁଯୋଗ ଲାଭ କରିଥିଲି । ସାରଳା ସାହିତ୍ୟ ସଂସଦର ସାରଳା ଭବନରେ ସେ ବହୁ ଉତ୍ସବରେ ଅତିଥି ଭାବରେ ଯୋଗ ଦେଇଛନ୍ତି । ତାଙ୍କ ସହିତ ମୋର ଶେଷ ସାକ୍ଷାତ୍ ହୋଇଥିଲା କିଛି ମାସ ତଳେ ସାରଳା ଭବନରେ ଡାକ୍ତର ନିମାଇଁଚରଣ ପଣ୍ଡାଙ୍କ ଆତ୍ମଜୀବନୀ ଗ୍ରନ୍ଥ ଉନ୍ମୋଚନ ଉତ୍ସବରେ । ସେ ସେହି ପୁସ୍ତକକୁ ଉନ୍ମୋଚନ କରିଥିଲେ । ମୁଁ ସେହିଦିନ ତାଙ୍କର ଅସୁସ୍ଥତା ଅନୁଭବ କରିଥିଲି । କିନ୍ତୁ ଏତେ ଚଞ୍ଚଳ ସେ ଆମମାନଙ୍କ ମଧ୍ୟରୁ ଚାଲିଯିବେ, ଏକଥା ଭାବିପାରି ନ ଥିଲି । ତାଙ୍କର ମୃତ୍ୟୁ ସମ୍ବାଦ ପାଇ ମୁଁ ବ୍ୟଥିତ ହୋଇ ପଡ଼ିଲି । ତାଙ୍କର ତିରୋଧାନରେ ବିଜ୍ଞାନ ଜଗତର ଅପୂରଣୀୟ କ୍ଷତି ଘଟିଲା । ସେ ଥିଲେ ଜଣେ ମହାନ୍ ବୈଜ୍ଞାନିକ ଓ ମହାମାନବ । ସେ ଥିଲେ ଅତ୍ୟନ୍ତ ସ୍ନେହୀ, ଦରଦୀ, ପରୋପକାରୀ ଓ ଛାତ୍ରବତ୍ସଳ । ତାଙ୍କ ସମ୍ପର୍କରେ ଏତିକି କୁହାଯାଇପାରେ –

ମଣିଷ ପରି ମଣିଷଟିଏ
　　　　ପଡ଼ିଲା ଦେଖୁ ଖସିରେ
କିଏ ଭାଳିବ ବିଜ୍ଞାନ କଥା
　　　　ନିଭୃତରେ ବସିରେ ।

ଶେଷରେ ମୁଁ ତାଙ୍କର ଆତ୍ମାର ସଦ୍‌ଗତି କାମନା କରିବା ସହିତ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ପ୍ରତିଷ୍ଠାତା, ସାରଳା ସାହିତ୍ୟ ସଂସଦ, ସାରଳା ଭବନ
ବିଜୁ ପଟ୍ଟନାୟକ ଛକ, ତୁଳସୀପୁର, କଟକ

# ଅଜାତଶତ୍ରୁ ଗୋକୁଳାନନ୍ଦବାବୁ

**ଡକ୍ଟର ପ୍ରମୋଦକୁମାର ମହାପାତ୍ର**

ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର, ବିଜ୍ଞାନ ସାହିତ୍ୟ ଜଗତର ଜଣେ କର୍ଣ୍ଣଧାର । ଓଡ଼ିଶାରେ ବିଜ୍ଞାନ ସାହିତ୍ୟର ସୃଷ୍ଟିକର୍ତ୍ତା, ବିକାଶକର୍ତ୍ତା ତଥା ପ୍ରଚାରକର୍ତ୍ତା ଭାବେ ଜଣାଶୁଣା । ଷାଠିଏ ଦଶକ ଯେତେବେଳେ ଗାଁ ଗହଳରେ ବିଜ୍ଞାନ କ'ଣ ଖୁବ କମ୍ ଲୋକେ ବୁଝୁଥିଲେ, ଗାଁରେ ହଇଜା ଲାଗିଲେ ଠାକୁରାଣୀ ପୂଜା ହେଉଥିଲା, ଭୂତପ୍ରେତ ଚିରଗୁଣୀଙ୍କ ଜ୍ୱାଳାରେ ସାରା ଜନଜୀବନ ଅସ୍ତବ୍ୟସ୍ତ ଥିଲା ସେତେବେଳେ ସେ ଲେଖିଥିଲେ 'ଉଡ଼ନ୍ତା ଥାଳିଆ' ଭଳି ସର୍ବକାଳୀନ ଲୋକାଦୃତ ପୁସ୍ତକ । ଏହା ସେତେବେଳେ ଚଳଚଳ ସୃଷ୍ଟି କରିଥିଲା ଓ ସାରା ରାଜ୍ୟରେ ବୈଜ୍ଞାନିକ ଚିନ୍ତନର ଏକ ସ୍ୱତନ୍ତ୍ର ତରଙ୍ଗ ସୃଷ୍ଟି କରିଥିଲା । ବିଜ୍ଞାନ ଉପନ୍ୟାସ ରଚନାର ସେ ଥିଲେ ପ୍ରଥମ ବ୍ୟକ୍ତି । ଆମ ରାଜ୍ୟର ବିଜ୍ଞାନ ସାହିତ୍ୟକୁ ଏହି ମହାନୁଭବଙ୍କ ଅବଦାନକୁ ଆମେ ସମସ୍ତେ ସବୁଦିନେ ମନେରଖିବା । ତାଙ୍କ ରଚନାରେ ଏଭଳି ଯାଦୁ ଥିଲା ଯାହାକି ଯିଏ ଥରେ ପଢୁଥିଲା ସେ ହିଁ ତାଙ୍କର ରଚନାବଳୀକୁ ବାରମ୍ବାର ଖୋଜୁଥିଲା ଓ ପଢୁଥିଲା । ବିଜ୍ଞାନର ପ୍ରଚାର ଓ ପ୍ରସାର ଗାଁ ଗହଳିରେ ନ ହେଲେ ସାମାଜିକ ବ୍ୟବସ୍ଥାରେ ଉନ୍ନତି ଘଟିବ ନାହିଁ ଏଥିପାଇଁ ସେ ଆରମ୍ଭ କରିଥିଲେ ବିଜ୍ଞାନ ପ୍ରଚାର ସମିତି । ଏଥିରେ ଅଧ୍ୟାପକ, ଶିକ୍ଷକ ତଥା ବୁଦ୍ଧିଜୀବୀମାନେ ଯୋଗଦେଇ ବୈଜ୍ଞାନିକ ବିକାଶ ସଂପର୍କରେ ଆଲୋଚନା କରିବା ସହିତ ଏହି ତଥ୍ୟ ଗାଁ-ଗହଳିରେ ପହଞ୍ଚାଇବାକୁ ଉଦ୍ୟମ କରୁଥିଲେ । ସାରାଜୀବନ ବିଜ୍ଞାନର ଶିକ୍ଷକଭାବେ ସେ ଅନେକ କୃତୀର ଅଧିକାରୀ ହୋଇଥିବାବେଳେ ବିଜ୍ଞାନକୁ ଭଲ ପାଉଥିବା ଜଣେ ଯୋଗଜନ୍ମା ସାଧକଭାବେ ସେ ଖ୍ୟାତି ଅର୍ଜନ କରିଥିଲେ । ସେ ସବୁବେଳେ କହୁଥିଲେ ବିଜ୍ଞାନର ପ୍ରଚାର ଓ ପ୍ରସାରପାଇଁ ଯେତେବେଶୀ ଅନୁଷ୍ଠାନ ହେବ ସେତେ ଭଲ । ଆମେ କେତେଜଣ ଯେତେବେଳେ 'ଜ୍ଞାନବିଜ୍ଞାନ ଫାଉଣ୍ଡେସନ' ଗଠନ କଲୁ ସେ ଏହାକୁ ଉଦ୍‌ଘାଟନ କରିବା ସହ ଏହାର ମୁଖପତ୍ର 'ବିଜ୍ଞାନ ବାର୍ତ୍ତା'କୁ ଅତ୍ୟନ୍ତ ଆଦରର ସହ ଉନ୍ମୋଚନ କରି ଆଶୀର୍ବାଦ ପ୍ରଦାନ କରିଥିଲେ । ମୁଁ ବିଜ୍ଞାନ ପ୍ରଚାର ସମିତିର ସଂପାଦକ ଥିବାବେଳେ ତାଙ୍କ ସହିତ ଅନ୍ତରଙ୍ଗ ଭାବେ ମିଶି ତାଙ୍କ ଦିଗ୍‌ଦର୍ଶନରେ କାମ କରିବାର ସୁଯୋଗ ପାଇଥିଲି । ସେତେବେଳେ ସମିତି ଆନୁକୂଲ୍ୟରେ 'ଓଡ଼ିଶାର ବିଜ୍ଞାନ ଲେଖକ' ପୁସ୍ତକ ପ୍ରକାଶ ପାଇଥିଲା । ପୁସ୍ତକପାଇଁ ତାଙ୍କର ଦିଗ୍‌ଦର୍ଶନ ଓ ପ୍ରେରଣା ଆମକୁ ଉତ୍ସାହିତ କରିଥିଲା ।

ବିଜ୍ଞାନ ପ୍ରଚାର ସମିତିର ପ୍ରତି ବୈଠକରେ ସେ ଉପସ୍ଥିତ ରହୁଥିଲେ ଓ ପଢ଼ାଯାଉଥିବା ପ୍ରବନ୍ଧଗୁଡ଼ିକ ଶୁଣି ଏଥିରେ ରହୁଥିବା ଭୁଲଭଟକା ସମ୍ପର୍କରେ ଲେଖକଙ୍କୁ ଉପଦେଶ ଦେଉଥିଲେ । ସମିତିକୁ ସେ ଦାନ କରିଥିବା ସେହି ଘର ଏବେ ଅଛି । ଆମେ ଅନେକ ସଭ୍ୟ ଅଛୁ କିନ୍ତୁ ସମ୍ମାନନୀୟ ଗୋକୁଳାନନ୍ଦବାବୁ ବସୁଥିବା ଚେୟାରଟି ଏବେ ଖାଲି । ମନେହେଉଛି ସେ ଅଛନ୍ତି, ହୁଏତ ବିଳମ୍ବରେ ଆସିବେ । ମାତ୍ର ସଂସାରର ନିୟମକୁ କିଏ ବା ଅମାନ୍ୟ କରିବ । ତାଙ୍କର ତିରୋଧାନ ଭଳି ନିଷ୍ଠୁର ସତ୍ୟକୁ ଆମକୁ ସ୍ୱୀକାର କରିବାକୁ ହେବ ।

ଆମେ ସମସ୍ତେ ବିଜ୍ଞାନ ପ୍ରଚାର ସମିତିର କର୍ମକର୍ତ୍ତା ଓ ସଭ୍ୟବୃନ୍ଦ ଗୋକୁଳାନନ୍ଦବାବୁଙ୍କ ସ୍ମୃତିକୁ ତାଙ୍କର ଦିଗ୍‌ଦର୍ଶନ, କାର୍ଯ୍ୟକଳାପକୁ ଜାରିରଖି ବଞ୍ଚାଇ ରଖିପାରିବୁ ବୋଲି ମୋର ବ୍ୟକ୍ତିଗତ ମତ । ତାଙ୍କର ସବୁଠାରୁ ବଡ଼ ଗୁଣ ଥିଲା, ସେ ଥିଲେ ଅଜାତଶତ୍ରୁ । ତାଙ୍କର କେହି ଶତ୍ରୁ ନ ଥିଲେ । ସମସ୍ତେ ତାଙ୍କୁ ସମ୍ମାନ ଦେଉଥିଲେ । ସେ ସମସ୍ତଙ୍କୁ ଆଦର ସ୍ନେହ କରୁଥିଲେ । ମୁଁ ତାଙ୍କର ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହିତ ତାଙ୍କର ସ୍ମୃତିରକ୍ଷାପାଇଁ ସବୁକ୍ଷେତ୍ରରୁ ଉଦ୍ୟମ ହେବାକୁ ଦାବି କରୁଛି । ତାଙ୍କ ନାମରେ ଗୋଟିଏ ରାସ୍ତାର ନାମକରଣ କରାଯିବାକୁ କଟକ ପୌର କର୍ତ୍ତୃପକ୍ଷଙ୍କ ନିକଟରେ ଦାବି କରୁଅଛି ।

କାର୍ଯ୍ୟନିର୍ବାହୀ ସଂପାଦକ , ସମାଜ
ଗୋପବନ୍ଧୁ ଭବନ, କଟକ - ୧

# ନିଃସ୍ତବ୍ଧ ଆମ୍ରପଲ୍ଲୀ

ପ୍ରଫେସର ଡାକ୍ତର ସୁଦର୍ଶନ ପଟ୍ଟନାୟକ

ଜୁଲାଇ, ୧୧ ତାରିଖ ସଂଧ୍ୟା । ଶୁଭେଚ୍ଛୁଙ୍କ ପ୍ରବଳ ଭିଡ଼ଯୋଗୁଁ କୋଳାହଳ, ଆତ୍ମୀୟମାନଙ୍କ ବୁକୁଫଟା ରୋଦନ ପରେ ଆମ୍ରପଲ୍ଲୀ ସତେ ଯେପରି ସ୍ତବ୍ଧ ହେଇଗଲା । ପ୍ରଚଣ୍ଡ ପ୍ରତିଭାଧର ବୈଜ୍ଞାନିକ ଗୋକୁଳାନନ୍ଦଙ୍କ ଆବର୍ତ୍ତମାନ ସମସ୍ତଙ୍କୁ ସ୍ତବ୍ଧ ଚକିତ କେରିଦେଲା । ଏକ ପ୍ରବଳ ପ୍ରଭଞ୍ଜନ ପରେ ସତେ ଯେପରି ଏକ ଅସହ୍ୟ ନୀରବତା ଖଣ୍ଡମଣ୍ଡଳକୁ ମୁହ୍ୟମାନ କରିଦେଲା ।

ଖାନ୍‌ନଗରର ଶ୍ମଶାନ-କୁଇରେ ତାଙ୍କର ପଞ୍ଚମହାଭୂତର ପାର୍ଥିବ ଶରୀର ଅଗ୍ନିର ଲେଲିହାନ ଶିଖାରେ ଦଗ୍ଧିଭୂତ ହେଇଗଲା । ସେ ସମୟରେ ଧରାନ୍ମୁଖ ଝରାବାଦଲ ସତେ ଯେପରି ପ୍ରଚଣ୍ଡ ପ୍ରତିଭାଧରଙ୍କ ପ୍ରତି କୃତଜ୍ଞତା ପୂର୍ବକ ପ୍ରକୃତି ଲୋତକ ଧାରା ଝରାଇଲା । ଯେଉଁ କେତେଜଣ ଆମେ ଶ୍ମଶାନରେ ତାଙ୍କର ଆତ୍ମୀୟମାନଙ୍କ ସହ ଥିଲୁ, କୋହ ସମ୍ବରଣ କରିପାରୁ ନ ଥିଲୁ । ଓଡ଼ିଶା ମାଟିର, ଓଡ଼ିଆ ବିଜ୍ଞାନ ଜଗତର, ଜନପ୍ରିୟ ବିଜ୍ଞାନ ସାହିତ୍ୟ ସୃଷ୍ଟିର ଏକ ସ୍ୱର୍ଣ୍ଣିମ ଶତାବ୍ଦୀ ତାଙ୍କ ସହ ଅନ୍ତ ହେଇଗଲା । ଆମ ବିଜ୍ଞାନ ପ୍ରଚାର ସମିତିର ଶିର ଉପରୁ ଆଶା, ଆସ୍ଥା ଓ ଭରସାର ହାତ ଚିରଦିନପାଇଁ ଅନ୍ତର୍ହିତ ହେଇଗଲା । ମୁକ୍ତ କରି ଦେଲା ସମସ୍ତ ଶକୁନର ସାବଲୀଳ ପ୍ରବେଶକୁ ।

ବୈଜ୍ଞାନିକ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଓଡ଼ିଶାର ବିଜ୍ଞାନ ଜଗତରେ ଏକ ସ୍ବର୍ଦ୍ଧିତ ନାମ । ସ୍ୱର୍ଗତ ମହାପାତ୍ର, ପିତା, ବିଜୟଗୋବିନ୍ଦ ଓ ମାତା, ଫୁଲଦେବୀଙ୍କ କୁଳମଣ୍ଡନ କରି ତଦାନୀନ୍ତନ ଅବିଭକ୍ତ ବାଲେଶ୍ୱର ଜିଲ୍ଲାରେ ଭଦ୍ରଖଠାରେ ୧୯୨୭ ମସିହାରେ ଜନ୍ମଗ୍ରହଣ କରିଥିଲେ । କୁଆଁସ ଅପର ପ୍ରାଇମେରୀବିଦ୍ୟାଳୟରୁ ତାଙ୍କର ଶିକ୍ଷା ଜୀବନ ଆରମ୍ଭ କରି ଉଚ୍ଚଶିକ୍ଷାପାଇଁ ସେ କଟକ ଆସିଥିଲେ । ପରବର୍ତ୍ତୀ ସମୟରେ କଲିକତା ବିଶ୍ୱବିଦ୍ୟାଳୟରୁ ରସାୟନ ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରି ସେ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପକ ଜୀବନ ଆରମ୍ଭ କରିଥିଲେ । ପରେ ବିଭାଗୀୟ ମୁଖ୍ୟ ଭାବେ ସେବା ନିବୃତ୍ତ ହେଇଥିଲେ ।

ସେ, ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା ସମ୍ପାଦକ ଥିଲେ । କେବଳ ସମ୍ପାଦକ ନ ଥିଲେ ସେ ଥିଲେ ସମିତିର ମୂଳ ସୂତ୍ରଧର । ଜୀବନର ସାୟାହ୍ନରେ ସେ ତା'ର ସ୍ଥାୟୀ ସଭାପତି ଭାବେ ସମିତିକୁ ଅନାଥ କରି ଇହଧାମ ତ୍ୟାଗ କଲେ । ଏକ ବିରାଟ ଉତ୍ତରଦାନର ଦାୟିତ୍ୱ ପରପୀଢ଼ି ଉପରେ ନ୍ୟସ୍ତ କରି ଦେଇଗଲେ ।

କଲିକତାରେ ଅଧ୍ୟୟନ କଲାବେଳେ, ସେ ବଙ୍ଗୀୟ ଭାଷାରେ ବିଜ୍ଞାନ ଲେଖା ଓ ପ୍ରାନ୍ତୀୟ ଭାଷାରେ ବିଜ୍ଞାନକୁ ସରଳୀକରଣ ଓ ପ୍ରଚାରଦ୍ୱାରା ଲୋକାଭିମୁଖୀ କରିବା ତାଙ୍କୁ ଯଥେଷ୍ଟ ପ୍ରଭାବିତ କରିଥିଲା । ସେତେବେଳେ ବିଜ୍ଞାନ ଓ ବୈଜ୍ଞାନିକ ତତ୍ତ୍ୱ ଅତ୍ୟନ୍ତ କ୍ଲିଷ୍ଟ ଥିଲା । ଏଣୁ ଜନସାଧାରଣଙ୍କଦ୍ୱାରା ସମ୍ପୂର୍ଣ୍ଣରୂପେ ଆଦୃତ ହେଇପାରୁ ନ ଥିଲା । କେବଳ ଅଲୌକିକ ଆବିଷ୍କାର ଓ ଉଦ୍ଭାବନ ଜନମାନସକୁ ବିଜ୍ଞାନ ପ୍ରତି ଏକ ପ୍ରକାର ଅହେତୁକ ବିସ୍ମୟତା ମନରେ ଆଣୁଥିଲା ସିନା ଦୈନନ୍ଦିନ ଜୀବନରେ ତାହାର ଉପକାରିତା ଓ ବ୍ୟବହାରରେ ଉପଯୋଗିତା ଆଦି ବିଷୟ ଏକ କୁହେଳିକା ଭଳି ରହିଯାଉଥିଲା । ଓଡ଼ିଶାର ଏହି

ବାତାବରଣ, ବିଜ୍ଞାନୀ ଗୋକୁଳାନନ୍ଦଙ୍କୁ ବ୍ୟଥିତ କରିଥିଲା, କିନ୍ତୁ ସେ ଦିଗରେ ଏକ ସକ୍ରିୟ ଦୃଷ୍ଟିଭଙ୍ଗୀ ନେବାକୁ ତାଙ୍କୁ ପ୍ରେରଣା ଦେଇଥିଲା । ସେ ଏ ଦିଗରେ ଗଭୀର ଭାବେ ଚିନ୍ତନ କଲେ ଓ ସେହି ଚିନ୍ତନର ଫଳପ୍ରସୂ ପରିପ୍ରକାଶ ହିଁ 'ବିଜ୍ଞାନ ପ୍ରଚାର ସମିତି' ପ୍ରତିଷ୍ଠାରେ ରୂପ ନେଲା ।

ସେ ନିଜ ଭାଷାରେ କହୁଥିଲେ, କାଳଜୟୀ ଜଗନ୍ନାଥ ଦାସଙ୍କ ଭାଗବତର ଓଡ଼ିଆ ଭାଷାରେ ସରଳୀକରଣ ପରେ, ତାହା ଯେପରି ଓଡ଼ିଶାର ପୁରପଲ୍ଲୀରେ ପ୍ରସାରିତ ଓ ସମାଦୃତ ହେଇପାରିଲା, ଠିକ୍ ସେହିପରି ବିଜ୍ଞାନର କ୍ଲିଷ୍ଟତତ୍ତ୍ୱ ସରଳ ମାତୃଭାଷାରେ ଲେଖାଯାଇ ପ୍ରକାଶ ଓ ପ୍ରଚାର କରାଯାଇପାରିଲେ ବିଜ୍ଞାନର ପ୍ରକୃତ ରସ ଜନସମାଜ ଆସ୍ୱାଦନ କରିବା ସହ ଏହାର ସାମୂହିକ ଉଦ୍ଦେଶ୍ୟ ସହ ପରିଚିତ ହେଇପାରନ୍ତା । ତାକୁ ହିଁ ଦୃଷ୍ଟିରେ ରଖି ୧୯୪୯ ମସିହାରେ ମାତ୍ର ଆଠ ଜଣ ସମର୍ପିତ ବ୍ୟକ୍ତିଙ୍କୁ ସ୍ଥାୟୀ ସଭ୍ୟରୂପେ ନେଇ ଆତ୍ମପ୍ରକାଶ କଲା, 'ବିଜ୍ଞାନ ପ୍ରଚାର ସମିତି', ଯେଉଁଥିରେ ସେ ଥିଲେ ପ୍ରତିଷ୍ଠାତା ସମ୍ପାଦିତ ।

ମୁଁ ତାଙ୍କର ଶିଷ୍ୟ ନ ଥିଲି । ରେଭେନ୍ସାରେ ମୁଁ ପଢ଼ିଲାବେଳକୁ ସେ ଉଚ୍ଚତର ଗବେଷଣାପାଇଁ ବିଦେଶଯିବାକୁ ରେଭେନ୍ସା ଛାଡ଼ି ସାରିଥିଲେ । ତେଣୁ ତାଙ୍କୁ ରେଭେନ୍ସାରେ ଦେଖିବାର ସୁଯୋଗ ମୁଁ ପାଇ ନ ଥିଲି । ମାତ୍ର ତାଙ୍କର ନାମ ସମ୍ମାନର ସହ ନିଆଯିବାର ମୁଁ ଶୁଣୁଥିଲି । କାରଣ ସେତେବେଳକୁ ତାଙ୍କର ନାମ ବିଜ୍ଞାନ ଜଗତରେ ବେଶ୍ ପ୍ରତିଷ୍ଠିତ ହେଇ ସାରିଥିଲା । ଏଣୁ ତାଙ୍କ ସହ ସାକ୍ଷାତ୍ କରିବାର ଦୁର୍ବାର ଲାଳସା ମୋ'ର ବଳବତ୍ତର ହେଇ ଉଠିଥିଲା ।

ଦେଖାହେଲା, ଏକ ଦୁଃଖଦ ଅବସ୍ଥାରେ । ସେତେବେଳେ ମୁଁ ଶ୍ରୀରାମଚନ୍ଦ୍ରଭଞ୍ଜ ଚିକିତ୍ସା ମହାବିଦ୍ୟାଳୟରେ ଜଣେ ସହକାରୀ ଅଧ୍ୟାପକଭାବେ କାର୍ଯ୍ୟରତ ଥାଏ । ସେ, ସେଇ ସମୟରେ ତାଙ୍କର ହାତର ହାଡ଼ ଭାଙ୍ଗି ଡାକ୍ତରଖାନାରେ ଭର୍ତ୍ତି ହେଇଥାଆନ୍ତି । ପ୍ରଫେସର ତେଜେଶ୍ୱର ରାଓ ଅସ୍ତ୍ରୋପଚାର କରିବାର ଥାଏ । ମୁଁ ସେଠାରେ ଭାରପ୍ରାପ୍ତ ନିଶ୍ଚେତକ ଥିବାରୁ ନିଶ୍ଚେତନା ପ୍ରୟୋଗ ମୋର କରିବାର ଥାଏ । ତାଙ୍କ ଟିକେଟ୍‌ରୁ ନାଁ ଜାଣି ମୁଁ ତାଙ୍କ ପାଖକୁ ଯାଇ ଅସ୍ତ୍ରୋପଚାର ପୂର୍ବ ପରୀକ୍ଷା କରିସାରିଲା ପରେ, କିଛି ସମୟ କଥା ହେଇ ଫେରିଲି । ବହୁଦିନରୁ ତାଙ୍କୁ ସାକ୍ଷାତ୍ କରିବାର ଇଚ୍ଛା ଚରିତାର୍ଥ ହେଇଥିବାରୁ ମୁଁ ମୋର ସନ୍ତୁଷ୍ଟି ପ୍ରକାଶ କଲି । ସେ ମୋତେ ବିଜ୍ଞାନ ପ୍ରଚାର ସମିତି ବିଷୟରେ କହିବା ସହ ପ୍ରତ୍ୟେକ ଅଧିବେଶନରେ ଯୋଗ ଦେବାକୁ ଓ କିଛି ବୈଜ୍ଞାନିକ ପ୍ରବନ୍ଧ, ଲେଖାଲେଖି କରିବାକୁ କହିଲେ । ମୁଁ ଜଣେ ଆଜୀବନ ସଭ୍ୟ ଓ ଅଧିବେଶନଗୁଡ଼ିକରେ ଯୋଗ ଦେବାକୁ ମୋ' ସମ୍ମତି ଜଣାଇଲି । ସେତେବେଳେ ଅଧିବେଶନ ଭିନ୍ନ ଭିନ୍ନ ସ୍ଥାନରେ ହେଉଥିଲା । ବିଶେଷକରି ରେଭେନ୍ସା କଲେଜ ଓ ମେଡିକାଲ କଲେଜରେ ପ୍ରାୟ ହୁଏ । ଏତଦ୍‌ବ୍ୟତୀତ କେତେଜଣ ବ୍ୟକ୍ତିବିଶେଷଙ୍କ ଘରେ ମଧ୍ୟ ଅନୁଷ୍ଠିତ ହେଉଥିଲା ।

ବୁର୍ଲାରେ ଥିଲାବେଳେ କିଛି କିଛି ଲେଖୁଥିଲେ ମଧ୍ୟ ଲେଖା ମୋର ବିଜ୍ଞାନ ଦୃଷ୍ଟିରୁ ମାର୍ଜିତ ନ ଥିଲା । ପରବର୍ତ୍ତୀ ଅବସ୍ଥାରେ ଅଧିବେଶନରେ ଯୋଗ ଦେଲାବେଳେ, ସେ ପଚାରନ୍ତି, ଲେଖା କାହିଁ ବୋଲି ପ୍ରଶ୍ନ କରନ୍ତି । ପରେ ପରେ ଅବଶ୍ୟ କିଛି ଲେଖୁଚି, ତାହା କେବଳ ତାଙ୍କ ପ୍ରୋତ୍ସାହନଯୋଗୁଁ ।

ଥରେ ଆମ ଗାଁ ଉଚ୍ଚବିଦ୍ୟାଳୟରେ ଗୋଟିଏ ବୈଜ୍ଞାନିକ ସମ୍ମାନ ବିଜ୍ଞାନ ପ୍ରଚାର ସମିତି ଆନୁକୁଲ୍ୟରେ କରାଯାଇଥିଲା । ସେ ଯାଇଥିଲେ ଓ

କ୍ରମବର୍ଦ୍ଧମାନ ଜନସଂଖ୍ୟାକୁ ଜନବିସ୍ଫୋରଣଭାବେ ଚିତ୍ରିତ କରି ଖାଦ୍ୟ ସମସ୍ୟା ବିଷୟ ଉତ୍ଥାପନ କରିଥିଲେ । ତା' ଉପରେ ତାତ୍ତ୍ୱିକ ଆଲୋଚନା କରି ବୈଜ୍ଞାନିକ ପଦ୍ଧତିରେ ତା'ର ସମାଧାନ ବିଷୟରେ ଏକ ସୁନ୍ଦର ଯୁକ୍ତି ଉପସ୍ଥାପନା କରିଥିଲେ । ସେଥିରେ ସେ ଅନାମଧେୟ ଅନାବନା ଅମରି ଗଛର ବ୍ୟବହାର ମଧ୍ୟରେ କିଭଳି କୃତ୍ରିମ ଉପାୟରେ ଖାଦ୍ୟ ସମସ୍ୟାର ସମାଧାନ ହେବ ସେ ବିଷୟରେ ଏକ ଉପାଦେୟ ଭାଷଣ ଦେଇଥିଲେ । ତାଙ୍କୁ ଦେଖିବାପାଇଁ ବହୁ ଜନ ସମାଗମ ହୋଇଥିଲା ।

ସଦା ହସ ହସ ସେ ଜଣେ ପ୍ରଚଣ୍ଡ ପ୍ରତିଭାଧାରୀ ଅମାୟିକ ବ୍ୟକ୍ତିତ୍ୱ ଥିଲେ । ସମିତିର ବାର୍ଷିକ ଉତ୍ସବ ଓ ପ୍ରତିଷ୍ଠା ଉତ୍ସବରେ ପ୍ରାୟ ଭୋଜି ହେଇଥାଏ । ସେ ସବୁବେଳେ 'ଖାସି ମାଂସ' ହେଉ ବୋଲି ପରିଣତ ବୟସରେ ପିଲାଙ୍କ ଭଳି ଜିଦି କରୁଥିଲେ । 'ଜିଦି' ତ ନ ଥିଲା, ବରଂ ଅଳିପୂର୍ବକ ନିର୍ଦ୍ଦେଶ ରହୁଥିଲା । ତାଙ୍କର ସେ ନିର୍ଦ୍ଦେଶ ଭୋଜିଠାରୁ ମଧ୍ୟ ଅଧିକ ପ୍ରମୋଦଦାୟକ ହେଉଥିଲା । ସମିତିର ସମସ୍ତ ସଭ୍ୟ ତାଙ୍କର ପ୍ରତ୍ୟେକ ନିର୍ଦ୍ଦେଶକୁ ଗୁରୁତ୍ୱ ଦେଉଥିଲେ ।

ଅତ୍ୟନ୍ତ ସ୍ନେହୀ, ଦରଦୀ, ନମ୍ର ଅଥଚ ଦୃଢ଼, ଜଣେ ମୁରବୀ ଭଳି ସେ ସମସ୍ତଙ୍କୁ ଭଲ ପାଉଥିଲେ । ଉପଦେଶ ଛଳରେ ସେ ସବୁବେଳେ ତିନୋଟି 'ଟି' ଅକ୍ଷର ଉପରେ ଗୁରୁତ୍ୱ ଦେଉଥିଲେ । ପ୍ରଥମ 'ଟି'ରେ ସେ କହୁଥିଲେ, ଯେ କୌଣସି କାର୍ଯ୍ୟ ଟ୍ରୁଥ୍‌ଫୁଲ ବା ସତ୍ୟ ସିଦ୍ଧଭାବେ ସମ୍ପାଦନ କରିବା ଉଚିତ । ଦ୍ୱିତୀୟ 'ଟି' ପାଇଁ ସେ କହୁଥିଲେ, 'ଟ୍ରାଏ ଟୁ ଗ୍ରୋ ଫର ଟୁମରୋ' ଅର୍ଥାତ୍ କାର୍ଯ୍ୟସମ୍ପାଦନରେ ଆଜିର ସ୍ଥିତିଠାରୁ ଆସନ୍ତା କାଲିର ସ୍ଥିତି ଅଧିକ ସମୃଦ୍ଧିଶାଳୀ କରିବାକୁ ପ୍ରଚେଷ୍ଟା ଜାରି ରଖିବା ଉଚିତ ଏବଂ ତୃତୀୟ 'ଟି'କୁ ନେଇ ସେ କହୁଥିଲେ 'ଟ୍ରଷ୍ଟଇନ୍ ଗଡ' ଅର୍ଥାତ୍ ସର୍ବନିୟନ୍ତା, ସର୍ବଶକ୍ତିମାନଙ୍କ ଶକ୍ତି ଉପରେ ଆସ୍ଥା ଓ ବିଶ୍ୱାସ ରଖି କାର୍ଯ୍ୟ କର । କହିବାର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ ସେ କହୁଥିଲେ ଯେ କୌଣସି ଉତ୍ତମ କାର୍ଯ୍ୟପାଇଁ ପ୍ରତିଶ୍ରୁତିବଦ୍ଧ ହେଲେ ଏ ତିନୋଟି ଦିଗ ନିଶ୍ଚିତ ଅପରିହାର୍ଯ୍ୟ ।

ଲେଖାଲେଖି ଓ ପୁସ୍ତକ ରଚନାରେ ସେ ଯେପରି ଧୂରୀଣ ଥିଲେ, ସେଇଭଳି ଅନ୍ୟମାନଙ୍କ ସୃଷ୍ଟିକୁ ମଧ୍ୟ ପ୍ରୋତ୍ସାହନ ଦେଉଥିଲେ । ବହିଟିଏ ପ୍ରକାଶ କଲେ ସେ ବହୁତ ଖୁସୀ ହେଉଥିଲେ । ବିଜ୍ଞାନ-ପୁସ୍ତକପାଇଁ ତ ତାଙ୍କର ଅହେତୁକ ଦୁର୍ବଳତା ଥିଲା । ଅନ୍ୟାନ୍ୟ ପୁସ୍ତକଗୁଡ଼ିକରେ ପ୍ରକାଶନ ଓ ଉନ୍ମୋଚନପାଇଁ ମଧ୍ୟ ସେ ବେଶ୍ ଆନନ୍ଦିତ ହେଉଥିଲେ । ସେ ସ୍ରଷ୍ଟା ଓ ସୃଷ୍ଟି ଉଭୟକୁ ଭଲ ପାଉଥିଲେ । ଏକ ବାକ୍ୟରେ କହିଲେ, ସୃଜନଶୀଳତାପାଇଁ ତାଙ୍କର ଆନ୍ତରିକତା ଅନୁକରଣୀୟ ।

ତାଙ୍କର ସହଧର୍ମିଣୀ ପ୍ରକୃତରେ ଜଣେ ସହକର୍ମିଣୀ ଥିଲେ । ଅତ୍ୟନ୍ତ ସ୍ନେହୀ, ଦରଦୀ, ପରୋପକାରୀ ଓ ଗୃହନିପୁଣା ବିଦୂଷୀ ମହିଳା ଥିଲେ । ତାଙ୍କର ମଧ୍ୟ ସୃଜନଶୀଳ ଦୃଷ୍ଟିଭଙ୍ଗୀ ଥିଲା । ସେ ତାଙ୍କର ଥିଲେ ଜଣେ ଯଥାର୍ଥ ପ୍ରୋତ୍ସାହିକା । 'ପ୍ରତ୍ୟେକ ସଫଳ ବ୍ୟକ୍ତିତ୍ୱ ପଛରେ ଜଣେ ସଫଳ ନାରୀର ହାତ ଥାଏ', ଏହି ଆପ୍ତ ବାକ୍ୟର ସେ ଥିଲେ ସତତ ପୂଜାରିଣୀ ଓ ତାହା ତାଙ୍କ ଜୀବନକାଳ ଭିତରେ ଦେଖାଇ ଯାଇଛନ୍ତି ।

ପ୍ରଫେସର ମହାପାତ୍ର ବହୁ ପଦ, ପଦବୀ ଓ ସମ୍ମାନରେ ବିଭୂଷିତ ଥିଲେ । ତା' ଭିତରେ ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ବିଜ୍ଞାନ ଏକାଡେମୀ, କଳିଙ୍ଗ ସମ୍ମାନ, ଡଃ ପ୍ରାଣକୃଷ୍ଣ ପରିଜା ସମ୍ମାନ, ସହ ଅନ୍ୟାନ୍ୟ ବହୁ ସମ୍ମାନର ଅଧିକାରୀ ସେ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ, ତାଙ୍କୁ ସମ୍ମାନସୂଚକ

ଡକ୍ଟରେଟ୍ ଡିଗ୍ରୀ ପ୍ରଦାନ କରିବା ସହ ତାଙ୍କ ନାମରେ ନାମିତ 'ଗୋକୁଳାନନ୍ଦ ଚେୟାର' ମଧ୍ୟ ସୃଷ୍ଟି କରିଛି ।

ସେ ସତୁରୀରୁ ଅଧିକ ବୈଜ୍ଞାନିକ ପୁସ୍ତକ ଓ ରହସ୍ୟ ଉପନ୍ୟାସ ରଚନା କରିଯାଇଛନ୍ତି । ତାଙ୍କର 'ପୃଥିବୀ ବାହାରେ ମଣିଷ' ଓ 'ଉଡ଼ନ୍ତା ଥାଳିଆ' ତତ୍କାଳୀନ ବିଜ୍ଞାନ ପ୍ରକାଶନ କ୍ଷେତ୍ରରେ ଚହଳ ସୃଷ୍ଟି କରିଥିଲା । ତାଙ୍କର ଖ୍ୟାତି, କୀର୍ତ୍ତି ଓ କୃତୀ ତାଙ୍କୁ ଜନମାନସରେ ଚିରଦିନ ଅମର କରି ରଖିବ । ତାଙ୍କର ଲିଖିତ ପୁସ୍ତକ ଉତ୍କଳ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ ଓ ଅମୂଲ୍ୟ ସମ୍ପଦଭାବେ ଉତ୍କଳୀୟ ପ୍ରାଣକୁ ଉଦ୍‌ବୁଦ୍ଧ କରିବ !

ମୃତ୍ୟୁ ଅନିର୍ବାର୍ଯ୍ୟ ସତ୍ୟ । ଭାଗବତ ବାଣୀ ହେଲା,

*"ମର୍ତ୍ତ୍ୟମଣ୍ଡଳେ ଦେହ ବହି,*
*ଦେବତା ହେଲେ ବି ମରଇ ।"*

କବିବର ରାଧାନାଥ ରାୟ ଲେଖିଛନ୍ତି,

*"କେହି ରହିନାହିଁ, ରହିବ ନାହିଁଟି*
*ଭବରଙ୍ଗ ଭୂମିତଳେ*
*ସର୍ବେ ନିଜ ନିଜ ଅଭିନୟ ସାରି*
*ବାହୁଡ଼ିବେ କାଳବଳେ ।"*

ଜନ୍ମ ହେଲେ ହିଁ ମୃତ୍ୟୁ ଧ୍ରୁବ ସତ୍ୟ । କେବଳ ନିଜର ଅଭିନୟପାଇଁ ଏ ଭବ, ରଙ୍ଗ ଭୂମିରେ କିଛି ଦିନ ରହିବାକୁ ହୁଏ । ମାତ୍ର ଏଭଳି କେତେକ ବ୍ୟକ୍ତି ଧରାପୃଷ୍ଠରେ ଜନ୍ମ ନିଅନ୍ତି, ଯାହାଙ୍କର କୃତି ସେମାନଙ୍କ ନିଷ୍କାମ କର୍ମ ମାଧ୍ୟମରେ ଜନମାନସକୁ ଉଦ୍‌ବୁଦ୍ଧ କରିଥାଏ ଓ ସେମାନଙ୍କ ଅବର୍ତ୍ତମାନରେ, କାଳର କରାଳ ବାଲୁକାଶଯ୍ୟାରେ ତାଙ୍କର ଗଭୀର ଓ ଅଲିଭା ପାଦ ଚିହ୍ନ ରହିଯାଇଥାଏ । ସେମାନେ ସମସ୍ତଙ୍କୁ ହସାଇ ନିଜେ କାନ୍ଦି କାନ୍ଦି ଭୂମିଷ୍ଠ ହେଇଥାନ୍ତି କିନ୍ତୁ ଗଲାବେଳେ ନିଜେ ହସି ହସି ଯାଆନ୍ତି ଓ ସମସ୍ତଙ୍କୁ କନ୍ଦାଇ ବିଦାୟ ନିଅନ୍ତି । ସେହିଭଳି ଜଣେ ବ୍ୟକ୍ତିତ୍ୱ ଥିଲେ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ।

ବିଜ୍ଞାନ ଜଗତର ସେ ଥିଲେ ଭୀଷ୍ମ ପିତାମହ ଓ ବିଜ୍ଞାନ ଆକାଶରେ ଏକ ଉଜ୍ଜ୍ୱଳତମ ଅଲିଭା ଜ୍ୟୋତିଷ୍କ । ଉତ୍କଳର-ଭବ-ରଙ୍ଗଭୂମିରେ ସେ ଅତି ନିଖୁଣ ଅଭିନୟ କରି ଏକ ପୂର୍ଣ୍ଣ ଜୀବନ ଅତିବାହିତ କରିଯାଇଛନ୍ତି । ତାଙ୍କର ଆବର୍ତ୍ତମାନରେ ଉତ୍କଳ ଭାରତୀଙ୍କ କୋଳରେ ଯେଉଁ ଶୂନ୍ୟ ସ୍ଥାନ ସୃଷ୍ଟି ହେଲା, ତାହା ଶୀଘ୍ର ପୂରଣ ହେଉ ଓ ଓଡ଼ିଆ ବିଜ୍ଞାନୀମାନେ ପୁଣି ତାଙ୍କର ମହନୀୟ ଦୂରଦୃଷ୍ଟିର ସୁଯୋଗ ନିଅନ୍ତୁ, ଏହାହିଁ ଭଗବାନ୍‌ଙ୍କଠାରେ ପ୍ରାର୍ଥନା ।

ଏହି ଅବସରରେ ତାଙ୍କର ଶୋକ ସନ୍ତପ୍ତ ପରିବାରକୁ ତାଙ୍କର ଆବର୍ତ୍ତମାନ ଜନିତ ଦାରୁଣ ଦୁଃଖ ସହ୍ୟ କରିବାକୁ ଭଗବାନ୍ ଶକ୍ତି ଦିଅନ୍ତୁ, ଶେଷରେ ଏତିକି ଜଣାଣ କରି ସେହି ମହାନ୍ ଆତ୍ମାଙ୍କ ଚରଣ କମଳରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହ ପ୍ରଣତି ଜଣାଉଛି ।

ସ୍ନିତାସ୍ମୃତି
ପ୍ଲଟ୍ ନଂ - ୧୫୭୧
ମହାନଦୀବିହାର, କଟକ

# ପୂଜ୍ୟ ଗୁରୁଦେବ ସ୍ମରଣେ

ଡଃ ବିଜୟକୁମାର ପଟ୍ଟନାୟକ

୨୦୧୩ ମସିହା ଜୁଲାଇ ମାସ ୧୧ ତାରିଖ । ସମୟ ପାଖାପାଖି ସକାଳ ୫ଟା । ମୋର ନିଦ ହଠାତ୍ ଭାଙ୍ଗିଗଲା । ମୋବାଇଲ ଫୋନ୍‌ଟା କ୍ରମାଗତ ବାଜି ଚାଲିଥାଏ, ଫୋନ୍‌ଟି ଧରିବାମାତ୍ରେ ସେପଟୁ ବନ୍ଧୁ ହରିପ୍ରସାଦର ସ୍ୱର ଭାସି ଆସିଲା । 'ବିଜୟ ! ସାର୍ ଗତିକାଲି ରାତିରେ ଚାଲିଗଲେ ।'' ମୁଁ ହଠାତ୍ ସ୍ତବ୍ଧ ଓ ବାକ୍‌ଶୂନ୍ୟ ହୋଇଗଲି । ଗତ କିଛିଦିନ ଧରି ନିୟମିତ ଭାବରେ ସାର୍‌ଙ୍କର ବଡ଼ପୁଅ ଓ ସାନପୁଅ ଉଭୟଙ୍କ ପାଖରୁ ଅହମ୍ମଦାବାଦ ଷ୍ଟର୍ଲିଙ୍ଗ୍ ହସ୍‌ପିଟାଲ୍‌ରେ ସାର୍‌ଙ୍କର ସ୍ୱାସ୍ଥ୍ୟାବସ୍ଥା ବୁଝୁଥିଲି । ତେବେ ନିୟତି ହଠାତ୍ ଏପରି ଦାରୁଣ ସମ୍ବାଦ ଆଣିଦେବ ତାହା ମୋର କଳ୍ପନାର ବାହାରେ ଥିଲା ।

ଉଭୟ ଚାକିରିକାଳ ଓ ଅବସର ସମୟ ମୋର ଯେହେତୁ କଟକରେ କଟିଥିଲା ତେଣୁ ବିଗତ ପ୍ରାୟ ଚାରି ଦଶନ୍ଧି ଧରି ମୁଁ ସାର୍‌ଙ୍କ ପାଖକୁ ଯିବାର ସୌଭାଗ୍ୟ ପାଇଥିଲି । 'ଚାରି ବର୍ଷ ତଳେ ସାର୍ ହଠାତ୍ ମୋତେ ପଚାରିଲେ ଯେ ମୁଁ ବିଜ୍ଞାନ ପ୍ରଚାର ସମିତି ମିଟିଙ୍ଗ୍‌କୁ କାହିଁକି ଆସିପାରୁ ନାହିଁ ଏବଂ ତାହା ସହିତ ନିର୍ଦ୍ଦେଶ ଥିଲା ମିଟିଙ୍ଗ୍‌କୁ ଆସି କିଛି ଦାୟିତ୍ୱ ସଂପାଦନା କରିବାପାଇଁ । ପରବର୍ତ୍ତୀ ସମୟରେ ମୋତେ ସଂପାଦକ ନିର୍ବାଚିତ କରାଯିବାପରେ ତାଙ୍କର ପ୍ରଥମ ଇଚ୍ଛା ଥିଲା ଦୀର୍ଘଦିନ ଧରି ବନ୍ଦ ହୋଇଯାଇଥିବା ବିଜ୍ଞାନାଲୋକର ପୁନଃ ପ୍ରକାଶନ । ଆନନ୍ଦର କଥା ବର୍ତ୍ତମାନ ଏହା ବାର୍ଷିକ ଅଧିବେଶନ ସଂଖ୍ୟା ଭାବରେ ପ୍ରକାଶିତ ହେଉଅଛି । ଆଗକୁ କମ୍ ଅବଧିରେ ଏହାକୁ ପ୍ରକାଶ କରାଗଲେ ତାଙ୍କର ସ୍ମୃତି ପ୍ରତି ଏହା ବିଶେଷ ଶ୍ରଦ୍ଧାଞ୍ଜଳି ହେବ ବୋଲି ମୁଁ ଆଶା କରୁଅଛି ।

ସାର୍‌ଙ୍କ କଟକ ବାସଭବନକୁ ମୁଁ ନିୟମିତ ଭାବରେ ଯାଇ ସାକ୍ଷାତ୍ କରିବା ସମୟରେ ତାଙ୍କୁ ଏକାନବେ ବର୍ଷ ହୋଇଥିଲେ ମଧ୍ୟ ଏକ ସ୍ୱଚ୍ଛନ୍ଦ, ଆନନ୍ଦଦାୟକ ଓ କର୍ମଠ ଜୀବନ ସହ ପ୍ରତିଦିନ ସନ୍ଧ୍ୟାରେ ଇ ଟି.ଭି.ର ଓଡ଼ିଆ ଧାରାବାହିକ ଦେଖି ଅତି ଖୁସିର ମୁହୂର୍ତ୍ତମାନ କଟାଉଥିବାର ମୁଁ ଦେଖୁଥିଲି । ବିଜ୍ଞାନ ପ୍ରଚାର ସମିତିର ନିଜସ୍ୱ କାର୍ଯ୍ୟାଳୟ ନ ଥିବାରୁ ସାର୍‌ଙ୍କର ନିଜ ଘର 'କୁମୁଦିନୀ ସ୍ମୃତି ଭବନ' ପ୍ରତି ମାସରେ ଦୁଇ ଥର ଏଠାରେ ମିଟିଙ୍ଗମାନ ଦୀର୍ଘଦିନ ଧରି ଆୟୋଜନ କରିବାର ବନ୍ଦୋବସ୍ତ ସାର୍ କରିଥିବାରୁ ସଭ୍ୟ/ସଭ୍ୟାମାନେ ସାର୍‌ଙ୍କର ସାନିଧ୍ୟ ପାଉଥିଲେ । ବାପା ପରିଣତ ବୟସରେ ପହଞ୍ଚିଥିବାରୁ ସାର୍‌ଙ୍କର ବଡ଼ ପୁଅ ଡାକ୍ତର ଗିରିଜାନନ୍ଦନ ମହାପାତ୍ର ତାଙ୍କର ସ୍ୱାସ୍ଥ୍ୟାବସ୍ଥାପାଇଁ ଉଦ୍‌ବିଗ୍ନ ଥିଲେ ଏବଂ ତାଙ୍କର ମୁମ୍ବାଇ ବାସଭବନକୁ ନେଇଯିବା ଉଚିତ ହେବ ବୋଲି ଚିନ୍ତା କରୁଥିଲେ । ଜାନୁଆରୀ ମାସରେ ସାର୍‌ଙ୍କର ସ୍ୱାସ୍ଥ୍ୟାବସ୍ଥାରେ ହଠାତ୍ ଅବନତି ଘଟି ସାର୍ ଭୁବନେଶ୍ୱର ଆପୋଲୋ ଡାକ୍ତରଖାନାରେ ଭର୍ତ୍ତି ହେଲେ । ବଡ଼ପୁଅ ଡାକ୍ତର ଗିରିଜାନନ୍ଦନ ମହାପାତ୍ର (ବଙ୍କୁ) ତାଙ୍କର ଡାକ୍ତରୀ ପେସାର ସମସ୍ତ ଗୁରୁଦାୟିତ୍ୱ ପଛରେ ପକାଇ ବାପାଙ୍କ ପାଖରେ ଡାକ୍ତରଖାନାରେ ରହିବା ସହ ସାର୍‌ଙ୍କର ତିନି ଝିଅ, କ୍ୱାଇଁ ଅକ୍ଳାନ୍ତ ଉଦ୍ୟମ, ଶୁଭେଚ୍ଛୁମାନଙ୍କର ପ୍ରାର୍ଥନା ଓ ବିଭୁକୃପା ଯୋଗୁଁ ସାର୍ ଆସ୍ତେ ଆସ୍ତେ ସୁସ୍ଥ ହେବାରେ ଲାଗିଲେ । ଆଗକୁ ବଡ଼ଝିଅ ଡାଃ ଜ୍ୟୋତ୍ସ୍ନା ମହାପାତ୍ରଙ୍କ ପୁଅର ବିବାହ ଥିବାରୁ ସାର୍ କଟକ ବାସଭବନକୁ ଫେରିଲେ । ଜାନୁଆରୀ ମାସ ୨୬ ତାରିଖରେ ସାର୍ ବଡ଼ପୁଅ ମୁମ୍ବାଇ ବାସଭବନରେ ସମୟ କଟାଇବାକୁ ଗଲେ । ଡାକ୍ତର ମହାପାତ୍ର ନ୍ୟୁକ୍ଲିୟର ମେଡିସିନ୍‌ର ଜଣେ ଖ୍ୟାତନାମା ପ୍ରଫେସର ଭାବରେ ମୁମ୍ବାଇରେ କାମ କରୁଥିବାରୁ ସାର୍‌ଙ୍କର ଚିକିତ୍ସା ହିନ୍ଦୁଜା, ଲୀଳାବତୀ ପରି ବଡ଼ ବଡ଼ ହସ୍‌ପିଟାଲର୍ ଚିକିତ୍ସକମାନଙ୍କ ତତ୍ତ୍ୱାବଧାନରେ ଚାଲୁଥିଲା ଏବଂ ସେ ଓ ତାଙ୍କ ସ୍ତ୍ରୀଙ୍କର ସେବା, ଶୁଶ୍ରୂଷାଯୋଗୁଁ ସାର୍ ସେଠାରେ ରହି ତିନି ମାସ ମଧ୍ୟରେ ଆସ୍ତେ ଆସ୍ତେ ସୁସ୍ଥ ହେବାରେ ଲାଗିଲେ । ଡାଃ ମହାପାତ୍ରଙ୍କର ବଡ଼ଝିଅ ଆସନ୍ନପ୍ରସବା ଥିବାରୁ ତାଙ୍କ ସହଧର୍ମିଣୀ ଆମେରିକା ଯିବାରୁ ସାର୍ ସାନପୁଅ ଡଃ ନନ୍ଦନନ୍ଦନ ମହାପତ୍ର (ବାବୁଲି) ଅହମ୍ମଦାବାଦ ବସାଭବନକୁ ଗଲେ । ଏଠାରେ ମଧ୍ୟ ସାନପୁଅ, ବୋହୂ (ସିମାନୀ) ଓ ନାତୁଣୀଙ୍କ ପରଚର୍ଯ୍ୟା ତାଙ୍କୁ କାର୍ଯ୍ୟକ୍ଷମ

କରାଇ ଆଣିଲା । ଏହି ସମୟରେ କେବଳ ସମୟ, ସ୍ଥାନ ଓ କିଛି କିଛି ଘଟଣାବଳୀ ଭୁଲିଯିବା ଛଡ଼ା ବିଶେଷ ଅସୁବିଧା ଦେଖାଯାଉ ନ ଥିଲା । ୨୦୧୨ ମସିହା ମାର୍ଚ୍ଚ ମାସ ୩ ତାରିଖରୁ ଆରମ୍ଭ ହେଲା ସାର୍‌ଙ୍କ ପ୍ରଣୀତ ୧୫୦୦ ପୃଷ୍ଠା ସମ୍ବଳିତ ବୈଜ୍ଞାନିକ ଜ୍ଞାନକୋଷର ପରିବର୍ଦ୍ଧିତ ସଂସ୍କରଣର ପ୍ରୁଫ୍ ସଂଶୋଧନ କାର୍ଯ୍ୟ । ବିଦ୍ୟାପୁରୀର ବରିଷ୍ଠ କର୍ମକର୍ତ୍ତା ଶ୍ରୀ କୈଳାସ ଚନ୍ଦ୍ର ବାରିକ ନିୟମିତ ଭାବରେ ସାର୍‌ଙ୍କ ଘରେ ଏହି କାର୍ଯ୍ୟ କଲେ । ଏହା ପାଖାପାଖି ତିନି ସପ୍ତାହ କାଳ ଚାଲିଲା । ଆଶ୍ଚର୍ଯ୍ୟର କଥା ଏହି ସମୟରେ ଯଦି ପଢ଼ି ଶୁଣାଇଲାବେଳେ ପଦେ ଅଧେ କେଉଁଠାରେ ଭୁଲ୍‌ବଶତଃ ସେ ଛାଡ଼ି ଦିଅନ୍ତି ତତ୍‌କ୍ଷଣାତ୍ ସାର୍ ତାଙ୍କୁ ସେ ବିଷୟ ସୂଚାଇ ଦେଉଥିଲେ, ସତେ ଯେପରି ତାଙ୍କର ଧୀ-ଶକ୍ତି କମ୍ପ୍ୟୁଟର ପରି କାମ କରୁଥିଲା । ବାବା ସାଗରଦାସ ବିଦ୍ୟାଳୟ ପରିସରରେ ସାର୍‌ଙ୍କର ଆର୍ଥିକ ଅନୁଦାନରେ ଗଢ଼ିଉଠିଥିବା ଅଡିଟୋରିୟମ୍‌ରେ ବହୁ ସାରସ୍ୱତ ସଭା ଆଦି ହେବା ସହ ସମିତିର ବରିଷ୍ଠ ସଭ୍ୟା ଡଃ ସୁବାସିନୀ ଲେଙ୍କାଙ୍କ ଲିଖିତ ପୁସ୍ତକର ଲୋକାର୍ପଣ ଉତ୍ସବ ହେବା ଶୁଣି ସେ ବହୁତ ଖୁସି ହୋଇଥିଲେ ଏବଂ ମୋର ସ୍ତ୍ରୀ ଯେକି ଦୀର୍ଘଦିନ ଧରି ଅସୁସ୍ଥଥିବା ସେ ଜାଣିଥିଲେ, ତାଙ୍କର ସ୍ୱାସ୍ଥ୍ୟାବସ୍ଥା କିପରି ଅଛି ସେ ବିଷୟ ପଚାରି ମୋତେ ଧୈର୍ଯ୍ୟ ଦେଇଥିଲେ ।

ବିଧିର ବିଧାନ ଆଗରେ ମନୁଷ୍ୟ ନିରୁପାୟ । ମଇ ମାସ ୩୦ ତାରିଖ ରାତିରେ ସାର୍ ହଠାତ୍ ଘରେ ପଡ଼ିଗଲେ । ମସ୍ତିଷ୍କରେ ରକ୍ତକ୍ଷରଣ ଯୋଗୁଁ ସେ ସଂଜ୍ଞାହୀନ ହୋଇପଡ଼ିବାରୁ ଅହମ୍ମଦାବାଦର ଖ୍ୟାତନାମା ଷ୍ଟର୍ଲିଙ୍ଗ ଡାକ୍ତରଖାନାରେ ସାର୍‌ଙ୍କୁ ଭର୍ତ୍ତି କରାଗଲା । ଏହି ଖବର ଏଠାରେ ଆମେମାନେ ପାଇ ଉଦ୍‌ବିଗ୍ନ ହୋଇପଡ଼ିଲୁ । ନାମଜାଦା ସ୍ନାୟୁ ଶଲ୍ୟ ଚିକିତ୍ସକ ଡାଃ ପରିମଳ ତ୍ରିପାଠୀ ମସ୍ତିଷ୍କର ଶଲ୍ୟ ଚିକିତ୍ସା କରି ଜମାଟ ରକ୍ତକୁ ବି କାଢ଼ିଦେଲେ । ତେବେ ସାର୍‌ଙ୍କୁ ଭେଣ୍ଟିଲେଟର୍‌ରେ ରଖିବାକୁ ହେଲା । ଏହି ସମୟରେ ଭୁବନେଶ୍ୱରର ମଝିଆ ଝିଅ ରଶ୍ମିତା ଯାଇ ପହଞ୍ଚିଲେ । ଅଳ୍ପଦିନ ଆଗରୁ ସାନଝିଅ ସ୍ନିଗ୍ଧା ମଧ ସାର୍‌ଙ୍କୁ ଦେଖି ଆସିଥିଲେ । ମଝିରେ ମଝିରେ ଭେଣ୍ଟିଲେଟର୍ କଢ଼ାଯାଉଥିବା ଖବର ଓ ସାର୍‌ଙ୍କର ସ୍ୱାସ୍ଥ୍ୟାବସ୍ଥା ଉଭୟ ବଡ଼ ଓ ସାନପୁଅଙ୍କଠାରୁ ଜାଣି ମୁଁ ଭାବୁଥିଲି ସାର୍ ପୁଣି କାର୍ଯ୍ୟକ୍ଷମ ହୋଇଯିବେ । ଏହି ସମୟରେ ମସ୍ତିଷ୍କରେ ଆଉଥରେ ରକ୍ତକ୍ଷରଣ ହେବାରୁ ପରିସ୍ଥିତି ଜଟିଳ ହେବାରେ ଲାଗିଲା । ସାର୍‌ଙ୍କୁ ପୁନର୍ବାର ଡାକ୍ତରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନପାଇଁ ସାମବେଦ ଡାକ୍ତରଖାନାକୁ ସ୍ଥାନାନ୍ତର କରାଗଲା । ଡାକ୍ତରଙ୍କ ଶତଚେଷ୍ଟା ସତ୍ତ୍ୱେ ଓ ଦୀର୍ଘ ୩୮ ଦିନ କାଳ ବଡ଼ ବଡ଼ ଡାକ୍ତରଖାନାରେ ସାର୍‌ଙ୍କର ଚିକିତ୍ସାସତ୍ତ୍ୱେ ଜୁଲାଇ ୧୦ ତାରିଖ ରାତି ୯.୨୦ ମିନିଟ୍ ସମୟରେ ସାର୍‌ଙ୍କର ହୃଦ୍‌କ୍ରିୟା ବନ୍ଦ ହେବା ଡାକ୍ତର ଜଣାଇବାମାତ୍ରେ ତାଙ୍କର ପରିବାରବର୍ଗ ଭାଙ୍ଗିପଡ଼ିଲେ ଏବଂ ଏହି ଖବର ଆମେ ସମସ୍ତେ ଏଠାରେ ପାଇ ଧୈର୍ଯ୍ୟହରା ହୋଇପଡ଼ିଲୁ ।

ସାର୍ ଥିଲେ ଜଣେ ଦରଦୀ ସ୍ନେହଶୀଳ ଓ ପରୋପକାରୀ ମଣିଷ । ଏକାଧାରରେ ସେ ଥିଲେ ଜଣେ ସୁବକ୍ତା, ଲେଖକ, ସମାଜସେବୀ ଓ ପ୍ରତିଭାବାନ୍ ବୈଜ୍ଞାନିକ, ବିଜ୍ଞାନ ପ୍ରଚାର ସମିତିର ପ୍ରାଣପ୍ରତିଷ୍ଠାତା ଭାବରେ ତାଙ୍କର ଦିଗ୍‌ଦର୍ଶନ ଆଜି ବହୁ ବିଜ୍ଞାନଲେଖକ ସୃଷ୍ଟିକରି ବିଜ୍ଞାନକୁ ଲୋକପ୍ରିୟ କରାଇପାରିଅଛି । ସବୁଠାରୁ ବଡ଼ କଥା ହେଲା ଯେ ଗର୍ବ କିମ୍ବା ଅହଂକାର ତାଙ୍କୁ ଜମା ସ୍ପର୍ଶ କରି ନ ଥିଲା । ତାଙ୍କର ଲୋକହିତୈଷୀ କାମଯୋଗୁଁ ସେ ସଦାସର୍ବଦା ଚିରସ୍ମରଣୀୟ ହୋଇ ରହିଥିବେ । ଶ୍ରୀଗୁଣ୍ଡିଚାଦିନ ମହାପ୍ରଭୁ ଜଗନ୍ନାଥ ରଥାରୂଢ଼ ପରି ଏକ ପବିତ୍ରଦିନରେ ସାର୍‌ଙ୍କର ମହାପ୍ରୟାଣ ହେଲା । ତାଙ୍କର ଅମ୍ଳାନ ଆତ୍ମା ଆମ ସମସ୍ତଙ୍କୁ ଆଶୀର୍ବାଦ ଦେଉଥାଉ ଏହା ବିଭୁଙ୍କ ପାଖରେ ପ୍ରାର୍ଥନା ।

ଫିରିଙ୍ଗିବଜାର, କଟକ

# ଗୋକୁଳାନନ୍ଦଙ୍କ ଅବର୍ତ୍ତମାନରେ ଆମେ ସବୁ ବାପଛେଉଣ୍ଡ ହୋଇଗଲୁ !

ଡଃ ଚିତ୍ତରଂଜନ ମିଶ୍ର

ପବିତ୍ର ରଥଯାତ୍ରାର ଶୁଭ ରାତ୍ରିରେ ଗୋକୁଳାନନ୍ଦ ବାହୁଡ଼ିଗଲେ ଆରପାରିକୁ । ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ, ତ୍ରିଲୋକବିହାରୀ, ଦାରୁବ୍ରହ୍ମ, ଜଗନ୍ନାଥସ୍ୱାମୀ ଯେପରି ଅବତାରୀ ପୁରୁଷ ଠିକ୍ ସେହିପରି ଜନପ୍ରିୟ ବିଜ୍ଞାନ ରଚନାର ଅବତାରୀ ପୁରୁଷ ଥିଲେ ଡଃ ଗୋକୁଳାନନ୍ଦ ମହାପାତ୍ର । ଏହି ପୁଣ୍ୟଶ୍ଳୋକ ଆର୍ଯ୍ୟାବର୍ତ୍ତର ଧରାଧାମରେ ସେ ବିଜ୍ଞାନର ପ୍ରବହମାନ ଗଙ୍ଗା ସୃଷ୍ଟି କରିଥିଲେ । ନିଜେ ଭଗୀରଥ ସାଜି ବିଜ୍ଞାନର ମହାମନ୍ତ୍ରରେ ସମସ୍ତଙ୍କୁ ଗଙ୍ଗା ସ୍ନାନ କରାଇଥିଲେ, ପବିତ୍ର କରାଇଥିଲେ, ସମସ୍ତଙ୍କ ଶୋକ ଦୁଃଖ ନିବାରଣ କରିଥିଲେ । ଜ୍ଞାନ, ବିଜ୍ଞାନର ମହାବାରିଧିରେ ସମସ୍ତଙ୍କୁ ଅବଗାହନ କରାଇଥିଲେ । ଶ୍ରୀକୃଷ୍ଣଙ୍କ ଆଗମନରେ ଗୋକୁଳ ଧାମ ଯେପରି ପଲ୍ଲବିତ ଓ ଉଲ୍ଲସିତ ହୋଇ ଉଠିଥିଲା, ଯଶୋଦାଙ୍କ କୋଳ ଯେପରି ଖୁସିରେ ଭରିଉଠିଥିଲା, ନନ୍ଦ ରାଜାଙ୍କର ଆନନ୍ଦର ସୀମା ଯେପରି କୂଳ କିନାରା ଉଲ୍ଲଙ୍ଘନ କରିଥିଲା ଠିକ୍ ସେହିପରି ଉତ୍କଳୀୟ ବିଜ୍ଞାନ ସମାଜ ଗୋକୁଳାନନ୍ଦଙ୍କ ଆବିର୍ଭାବରେ ଦିନେ ଖୁସିରେ ପାରାବାର ଲଂଘନ କରିଥିଲା । ହେଲେ ସେ ଖୁସିରେ ଆଜି ଭଙ୍ଗା ପଡ଼ିଗଲା । ସବୁକିଛି ସ୍ତବ୍ଧ, ସ୍ଥିର ଓ ଜଡ଼ ପାଲଟିଗଲା । ଚଳଚଞ୍ଚଳ ବିଜ୍ଞାନ ଆକାଶରେ ଘମାଘୋଟ କଳାବାଦଲ ଛାଇ ହୋଇଗଲା । ବୈଜ୍ଞାନିକ ଗବେଷଣା ଓ ଜନପ୍ରିୟ ବିଜ୍ଞାନ ରଚନା ତା'ର ଆଦି ପୁରୁଷକୁ ହରାଇ ବସିଲା ।

କିଛି ମାସ ପୂର୍ବରୁ ଆମ ଗହଣରୁ ବାହୁଡ଼ି ଯାଇଥିଲେ ପ୍ରଖ୍ୟାତ ବୈଜ୍ଞାନିକ ଓ ଜନପ୍ରିୟ ବିଜ୍ଞାନ ରଚନାକାର କୀର୍ତ୍ତିମାନ୍ ମହାସ୍ତମ୍ଭ ଯଶସ୍ୱୀ ପଦାର୍ଥବିଜ୍ଞାନୀ ପ୍ରଫେସର ଡଃ କୁଳମଣି ସାମଲ । ସେ ଝଡ଼ର ସମାପନ ପୂର୍ବରୁ ଆଉ ଏକ ଝଡ଼ର ସାମ୍ନା କରିବାକୁ ପଡ଼ିଲା ଆମକୁ । ଏଭଳି ଏକ ଘଡ଼ିସନ୍ଧି ବେଳାରେ ଦୁଃଖର ହିମାଳୟ ଭାଙ୍ଗିପଡ଼ିଲା ଓଡ଼ିଶାର ବିଜ୍ଞାନ ରାଇଜ ଉପରେ । ହେଲେ ସମୟର ବେଳାଭୂମିରେ ଆମକୁ ଶକ୍ତ ହୋଇ ଠିଆ ହେବାକୁ ପଡ଼ିବ, ଦମ୍ଭ ଓ ସାହସର ସହ ସମୟର ଆଶୀର୍ବାଦ ଓ ଅଭିଶାପକୁ ମଥାପାତି ଗ୍ରହଣ କରିବାକୁ ପଡ଼ିବ । ଆମେ ତ ମଣିଷ, ବିଧାତା ନୋହୁଁ । ଆମ ଜୀବନର ସୀମାରେଖା ଅଛି, ପରିଧି ଅଛି, ବ୍ୟାସ ଅଛି ଓ ବ୍ୟାସାର୍ଦ୍ଧ ଅଛି । ଆମେ ସବୁ ସେହି ଜ୍ୟାମିତିକ ନୀତିନିୟମ ଓ ସୂତ୍ରରେ ଚିରକାଳ ବନ୍ଧା; ବନ୍ଧା ହୋଇ ରହିଥିବା ।

ଜନ୍ମ ଥିଲେ ମୃତ୍ୟୁ ଅଛି । ମୃତ୍ୟୁ ଥିଲେ ପୁଣି ଜୀବନ ମଧ୍ୟ ଅଛି । ଗୋଟିକ ପଛରେ ଆରକ ଦଉଡ଼ୁଛି । ଜୀବନ ମୃତ୍ୟୁର ଏ ମହାଦୌଡ଼ ଅନନ୍ତ କାଳରୁ ଚାଲିଛି ଓ ଚାଲିଥିବ ମଧ୍ୟ । ଯେପରି ଜୀବନରୁ ଜୀବନର ସୃଷ୍ଟି, ଠିକ୍ ସେହିପରି ମୃତ୍ୟୁରୁ ଜୀବନର ମଧ୍ୟ ସୃଷ୍ଟି । ଜୀବନ ଯାହା, ମୃତ୍ୟୁ ମଧ୍ୟ ସେଇଆ । ମୃତ୍ୟୁ ଯାହା, ଜୀବନ ମଧ୍ୟ ସେଇଆ । ଗୋଟିଏ ଅନ୍ୟର ପରିପୂରକ । ଦୁଇଟି ଭିନ୍ନ ଭିନ୍ନ ଶବ୍ଦ ବ୍ରହ୍ମ ହେଲେ ଉଭୟଙ୍କ ଅର୍ଥ ଗୋଟିଏ । ଶୂନ୍ୟରୁ ଶୂନ୍ୟର ସୃଷ୍ଟି ହେଲା ପରି ଶୂନ୍ୟରୁ ଜଗତର ମଧ୍ୟ ସୃଷ୍ଟି, ଶୂନ୍ୟରେ ଜଗତର ମଧ୍ୟ ବିଲୟ । ଜନ୍ମ ମୃତ୍ୟୁର ଏହି ଲୁଚକାଳି ଖେଳ ସୃଷ୍ଟିର ଆଦିପର୍ବରୁ, ଅୟଂ ଆରମ୍ଭରୁ । ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କ ଗୀତାବାଣୀ ଏଠାରେ ପ୍ରଣିଧାନଯୋଗ୍ୟ । ହେ ଅର୍ଜୁନ ! ତୁମେ ସୁଖ ଦୁଃଖ, ହାନି ଲାଭ, ଜୟ ପରାଜୟକୁ ଏକାଭଳି ଭାବ ଓ ଏ ଜୀବନ ଯୁଦ୍ଧ ଲଢ଼ି ଚାଲ । ସୁଖରେ ଅତି

ମାତ୍ରାରେ ଆନନ୍ଦିତ ହୁଅ ନାହିଁ, କିମ୍ବା ଦୁଃଖରେ ଅଧିକ ମ୍ରିୟମାଣ ହୁଅ ନାହିଁ । ଲାଭ କ୍ଷତିକୁ ସମପରିମାଣରେ ଗ୍ରହଣ କର । ଜୟ ଓ ପରାଜୟ ଉଭୟକୁ ଆଲିଙ୍ଗନ କର । ତେବେ ଯାଇ ତୁମେ ସ୍ଥିତପ୍ରଜ୍ଞ ହୋଇପାରିବ ଓ ସ୍ଥିତପ୍ରଜ୍ଞ ହେଲେ ହିଁ ତୁମେ ମୋର ଶରଣରେ ଆସିପାରିବ, ଅନ୍ୟଥା ଅସମ୍ଭବ ।

ବର୍ଷା ଖରାରେ ମୁଣ୍ଡ ଉପରେ ଛତାଟିଏ ଥିଲା ପରି ଗୋକୁଳାନନ୍ଦ ଥିଲେ ଆମ ମୁଣ୍ଡ ଉପରର ଛତାଟିଏ ପରି । ସେ ଥିଲେ ଆମ ସାହା ଭରସା, ଆମ ଘରର ମୁରବୀ । ଘରେ ମୁରବୀ ଥିଲେ ଘର ଲୋକଙ୍କର ଯେପରି ସିଂହର ବଳ ଥାଏ ଠିକ୍ ସେହିପରି ତାଙ୍କର ବଳରେ ଆମେ ବଳୀୟାନ୍ ହୋଇଥିଲୁ । 'କୀଚକ ବାହୁ ବଳେ ବିରାଟ ରାଜା' ହେଲାପରି ତାଙ୍କୁ ନେଇ ଆମର ସବୁ ଦମ୍ଭ, ବଳ ଓ ସାହସ । ପଞ୍ଚୁପାଣ୍ଡବ ଶ୍ରୀକୃଷ୍ଣଙ୍କ ଆଶୀର୍ବାଦରେ ଧନ୍ୟ ହେଲା ପରି ତାଙ୍କ ଆଶୀର୍ବାଦରେ ଆମେ ଆମର ଜୀବନ ତରିଟିକୁ ବାହି ନେଉଥିଲୁ । ତାଙ୍କର ସ୍ନେହ ମମତାକୁ ପାଥେୟ କରି ଆମେ ଆମର ଜୀବନ ରଥଟିକୁ ଟାଣି ନେଉଥିଲୁ ସମୟର ବଡ଼ ଦାଣ୍ଡରେ । ହେଲେ ସେ ଛତା ଆଜି ଉଡ଼ିଗଲା । ସମୟର ମହାଝଡ଼ ତାକୁ ଉଡ଼େଇ ନେଲା କାହିଁ କେତେ ଦୂରକୁ । ଦୌଡ଼ି ଦୌଡ଼ି ଛତାଟିକୁ ଆଉ ଧରି ହେଉନି । ଛତା ଆଗରେ ଆଗରେ ତ ଆମେ ପଛରେ ପଛରେ । ଆମେ ନୟାନ୍ତ ହୋଇ ଥକା ମାରି ବସିପଡ଼ିଛୁ । ଶ୍ରମ ଝାଳ ମୁଣ୍ଡରେ ମାରି ଭାଗ୍ୟକୁ ନିନ୍ଦୁଛୁ । ଆମେ ଅନାଥ ହୋଇଯାଇଛୁ, ବାପଛେଉଣ୍ଡ ହୋଇଯାଇଛୁ, ପର ହୋଇଯାଇଛୁ । ସ୍ମୃତି ସବୁ ଆଜି ଆମକୁ ଉଦ୍‌ବେଳିତ କରୁଛି, ପ୍ରକମ୍ପିତ କରୁଛି, କାଲୁରୁ ବାଲୁରୁ କରିପକାଉଛି, ଗୁଡ଼େଇ ତୁଡ଼େଇ ଦଂଶନ କରୁଛି । ସ୍ମୃତିର ମହାଜାଲ ଆମକୁ ଗୋଟାପଣ ଛନ୍ଦି ପକାଇଛି, ଆମ ହାତଗୋଡ଼ ବାନ୍ଧି ପକାଇଛି, କାବୁ କରିଦେଇଛି । ଆମ ଶରୀର, ଆତ୍ମା ଓ ପ୍ରାଣ ଆଜି ଗୋଟାପଣ ନିଷ୍ପ୍ରଭ ହୋଇଯାଇଛି । ଆମେ ଜୀଇଁ ଥାଇ ବି ନିର୍ଜୀବ ହୋଇଯାଇଛୁ, ଜଡ଼ ହୋଇଯାଇଛୁ, ଶୀତଳ ହୋଇଯାଇଛୁ । ମୃତ୍ୟୁର ଶୀତଳତା ଓ ଶିଥିଳତା ଆମକୁ ଗ୍ରାସ କରିଛି । ଆମେ ସ୍ଥାଣୁ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଇଛୁ । ଏଇମିତି ଗୋଟାଏ ସ୍ଥିତି, ଏଇମିତି ବି ଗୋଟାଏ ସମୟ ଆସିବ ଆମେ ଜାଣି ମଧ୍ୟ ଅଜଣା ହୋଇଯାଇଛୁ । ଓଡ଼ିଶାର ବିଜ୍ଞାନ ଆକାଶ ଆଜି ଅନ୍ଧକାରାଚ୍ଛନ୍ନ ହୋଇଯାଇଛି । ଅମାବାସ୍ୟାର ଜହ୍ନଠୁଁ ବି ଅଧିକ ଅନ୍ଧାର ହୋଇଯାଇଛି ଆମ ଜୀବନର ଚଲାପଥ । ସବୁକିଛି ନିସ୍ତେଜ ଓ ଜୀବନରହିତ ହୋଇଯାଇଛି ।

ହେଲେ ଦାଣ୍ଡ ଦୁଆରେ ସମୟ ବସିରହିଛି ଗୋଡ଼ ଲମ୍ବେଇ । କାଲି, ଆଜି ଓ କାଲିର ହିସାବ ନିକାଶ କରିବାକୁ ସେ ଦମ୍ଭ ଧରି ଘର କାନ୍ଥକୁ ଆଉଜିକି ବସିରହିଛି । ହାତଠାରି ଡାକୁଛି 'ବାପରେ ! ତୁ ଆଖିର ଲୁହ ପୋଛ, ପାଦ ଶକ୍ତ କର, ମନକୁ ବୋଧ ଦେ । ମୁଁ ପରା ଅଛି, ମୁଁ ପରା ତୋ' ସାହାଭରସା । ଗୋକୁଳାନନ୍ଦର ସାହାଭରସା ମୁଁ ଥିଲି, ତୋର ମୁଁ ସାହାଭରସା, ଆଉ ତୁ ବାଟ କାଟିଲା ପରେ ତୋ' ପର ପିଢ଼ିର ବି ମୁଁ ସାହାଭରସା ହୋଇ ରହିଥିବି । ମୁଁ ଅଜର, ଅମର ଓ ଅକ୍ଷୟ । ମୁଁ ସବୁ ଦିନେ ଅଛି, ଥିବି ଓ ରହିଥିବି । ଗୋକୁଳାନନ୍ଦ ମୋ' ଆଶୀର୍ବାଦରେ ଧନ୍ୟ ହୋଇଥିଲା । ମୋ' ପିଠିରେ ଘୋଡ଼ାଚଢ଼ି ସେ ନାଆଁ କମେଇଥିଲା । ସେ ମୋର ଅତିପ୍ରିୟ ସାଥୀ ଥିଲା । ସେ ଯାହାକିଛି ବି ପାଇଥିଲା ମୋ' ବଡ଼ଦାଣ୍ଡରେ, ଯାହାକିଛି ବି ହରେଇଥିଲା ମୋ' ବଡ଼ଦାଣ୍ଡରେ । ମୋ' ପାଖରେ ସେ ସବୁଦିନ ଋଣୀ ହୋଇ ରହିଗଲା । ଧନରେ ! ମୋ' ପାଖରେ ସମସ୍ତେ ଋଣୀ ହୋଇ ରହିଯାନ୍ତି । ତୁ ବି, ଆଉ ସମସ୍ତେ ବି । ମୁଁ ସମସ୍ତଙ୍କୁ ଋଣ ଦେଇଥାଏ, ମୁଁ କାହାଠୁ କେବେବି

ରଣ କରିନି । ତେଣୁ ମୋ' କଥା ଟିକେ ଶୁଣ । ସ୍ଥିର ଧର, ବାୟା ମନକୁ ଟାଣ କର, ଚଞ୍ଚଳ ଚିତ୍ତକୁ ଲଗାମ ଦେ । ମୁଁ ପୁଣି କଡ଼ ଲେଉଟେଇବି । ପୁଣି ଆକାଶରେ ତୋଫା ଜହ୍ନ ହସିଉଠିବ । ଚାହୁଁ ଚାହୁଁ କଳାବାଦଲ ବି ହଟିଯିବ । ସୂରୁଯ ଉଇଁବ ପୂରୁବ ଦିଗରେ । ଧରା ପୁଣି ହସିଉଠିବ । ମନ ଚହଲିବ । ନୂଆ ଗୀତ ନୂଆ ରାଗିଣୀରେ ନୂଆ ମଣିଷ ଗାଇ ଗାଇ ମୋ' ବଡ଼ଦାଣ୍ଡରେ ମନ ଖୁସିରେ ଦଉଡ଼ିବେ । ବହୁ ଉତ୍ଥାନ ପତନ ମୁଁ ଦେଖିଛି । ବହୁ ଜନ୍ମ ମୃତ୍ୟୁ ମୁଁ ଦେଖିଛି । ବହୁ ଝଡ଼ଝଞ୍ଜା ମୁଁ ସହିଛି । ହେଲେ ମୁଁ ବଞ୍ଚିଛି, ମରିନି । ସବୁ ଦେଖି ସବୁ ସହି ମୁଁ ପଥର ପାଲଟି ଯାଇଛି । ସେହି ମୋର ଭାଗ୍ୟ, ସେହି ମୋର ଦୁର୍ଭାଗ୍ୟ । ସେହି ମୋର ସୁଖ, ସେହି ମୋର ଦୁଃଖ । ମନେରଖ, ସମୟ କେବେ କାନ୍ଦେନା, ସମୟ କେବେ ହସେନା । ସମୟ ସବୁବେଳେ ସମୟ । ସେହି ତା'ର ପରିଚୟ, ସେହି ତା'ର ସଂଜ୍ଞା, ସେହି ତା'ର ସମ୍ବୋଧନ ।'

ବାଟ ଚାଲୁ ଚାଲୁ ପଡ଼ିବା ଉଠିବା ଜୀବନର ଏକ ଧରାବନ୍ଧା ନିୟମ । ବାଟ ଚାଲୁ ଚାଲୁ ସମସ୍ତେ ପଡ଼ିଥାନ୍ତି, ହେଲେ ସମସ୍ତେ ଉଠି ପୁଣି ଚାଲିପାରନ୍ତିନି । ଯିଏ ଉଠି ପୁଣି ଚାଲିପାରେ ସଫଳତା ତା' ଘରେ ବସାବାନ୍ଧି ରହିଥାଏ । ଏଇଟା ତ ଜୀବନ, କାହାର ଜାଗିରିଦାରୀ ନୁହେଁ । ପୃଥିବୀରେ ଏମିତି ଗୋଟାଏ ଲୋକ ନାହିଁ ଯିଏ ଛାତିରେ ହାତ ଦେଇ କହିପାରିବ ମୁଁ ଦୁଃଖ ଦେଖିନି, ମୁଁ ଲୁହ ପିଇନି, ମୋ' ଘରକୁ ଯମରାଜା ଆଦୌ ଆସିନି, ମୃତ୍ୟୁ ମୋ' ଆଖିରେ ଆଖି ମିଳାଇନି । ଏ ଜୀବନର ମାୟାଜାଲରେ ଆମେ ସମସ୍ତେ ଛନ୍ଦାଛନ୍ଦି ହୋଇ ପଡ଼ିରହିଛୁ । ଜୀବନ ଜୀଉଛେ, ଜୀବନ ଭୋଗୁଛେ । ଜୀବନର ପୂର୍ଣ୍ଣଚ୍ଛେଦ ପରେ ମୃତ୍ୟୁକୁ ଆଲିଙ୍ଗନ କରୁଛେ । ମୃତ୍ୟୁ ଏବଂ ଜୀବନ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଜୀବନ ସକାଳର ସୂର୍ଯ୍ୟ ହେଲେ ମୃତ୍ୟୁ ସନ୍ଧ୍ୟାର ଅନ୍ଧକାର । ଆଲୋକ ଅନ୍ଧାରର ଫେଣ୍ଟାଫେଣ୍ଟି ଜୀବନଟିଏ ଆମେ ଜୀଇଁ ଚାଲିଛେ । ହସୁଛେ, କାନ୍ଦୁଛେ, ପଡୁଛେ, ଉଠୁଛେ ହେଲେ ପୁଣି ଚାଲୁଛେ । ଚାଲିବା ଜୀବନର ଧାରା, ଚାଲିବା ଜୀବନର ବ୍ରତ ।

ଆମର ଏ ବୈଜ୍ଞାନିକ ଜୀବନ ଯାତ୍ରା ଶୁଭଙ୍କର ହେଉ । ଆଶାର ଆଲୋକ ଚତୁର୍ଦ୍ଦିଗରେ ବିଚ୍ଛୁରିତ ହେଉ । ବିଜ୍ଞାନର ଗଡ଼ ଜିଣିବାକୁ ନୂତନ ପିଢ଼ି ଆଗଭର ହେଉ । ବିଜ୍ଞାନ ମନ୍ଦିରରେ ନୂଆ ଦୀପଟିଏ ପୁଣି ଜଳିଉଠୁ । ନୂଆ ଆଶା ଓ ନୂଆ ସକାଳର ଆଗମନ ହେଉ । ଜନପ୍ରିୟ ବିଜ୍ଞାନ ରଚନା ଦୀର୍ଘଜୀବୀ ହେଉ । ସମୟ ପୁଣି କଡ଼ ଲେଉଟେଉ । ନୂତନ ସମ୍ଭାବନା ଓ ନୂତନ ଜାଗରଣ ସମାଜରେ ସୃଷ୍ଟି ହେଉ । ନୂତନ ସ୍ପୃହା ଓ ନୂତନ ଉଦ୍ଦୀପନା ସହ ନୂଆ ସମୟ ନୂଆ ମଣିଷ ସୃଷ୍ଟି କରୁ । ବିଜ୍ଞାନ କାଳଜୟୀ ହେଉ । ମଣିଷର ସୁଖ ଦୁଃଖକୁ ବିଜ୍ଞାନ ଆପଣେଇ ନେଉ ।

ବି/୩, ଏଚଆଇଜି କଲୋନୀ,
ବରମୁଣ୍ଡା ହାଉସିଂ ବୋର୍ଡ଼,
ଭୁବନେଶ୍ୱର- ୭୫୧ ୦୦୩

# ମୋ ଦିଗ୍‌ଦର୍ଶକ ସାର୍

**ପ୍ରଫେସର ବୈଷ୍ଣବ ଚରଣ ସିଂହ**

ଥରେ ମୁମ୍ବାଇରୁ ଓ ଥରେ ଅହମଦାବାଦରୁ ଦିବଂଗତ ପ୍ରଫେସର (ଡଃ) ଗୋକୁଳାନନ୍ଦ ମହାପାତ୍ରଙ୍କଠାରୁ ଟେଲିଫୋନ୍ ପାଇଥିଲି । ପ୍ରତିଥର କହନ୍ତି, "କେମିତି ଅଛ ଏବଂ ବିଜ୍ଞାନ ପ୍ରଚାର ସମିତି କିପରି ଚାଲିଛି ?" ମୁଁ ସବୁଥର କହେ 'ଆପଣଙ୍କର ପ୍ରେରଣା ଓ ଆଶୀର୍ବାଦରୁ ବିଜ୍ଞାନ ପ୍ରଚାର ସମିତି ଠିକ୍ ବାଟରେ କାମ କରୁଛି । ସମାଜ ଅଫିସ୍‌ରେ ଓ ଯୋଡ୍ରା ଇଞ୍ଜିନିୟର୍ କ୍ଲବ୍ ଘରେ ଅଧିବେଶନ ହୋଇ ବହୁସଂଖ୍ୟକ ସଭ୍ୟ ପ୍ରବନ୍ଧ ପାଠ କରିଛନ୍ତି ।' ସେ ବୋଧହୁଏ ମୋ କଥା ଶୁଣିପାରୁ ନ ଥିଲେ । ତେଣୁ ମୁମ୍ବାଇରେ ରହୁଥିବା ବଡ଼ପୁଅ ଡାଃ ଗିରିଜାନନ୍ଦନ ମହାପାତ୍ର ଓ ଅହମଦାବାଦରେ ରହୁଥିବା ସାନପୁଅ ଡଃ ନନ୍ଦନନ୍ଦନ ମହାପାତ୍ରଙ୍କୁ କହେ, ମୁଁ ଯାହା କହୁଛି ତାଙ୍କୁ ଭଲଭାବରେ ଜଣାଇଦେବାକୁ । ହଠାତ୍ ଖବର ପାଇଲି ସେ ପଡ଼ିଯାଇ ମସ୍ତିଷ୍କରେ ଆଘାତ ପାଇଛନ୍ତି । ଅପରେସନ କରାଯାଇ ଜମାଟ ବାନ୍ଧିଥିବା ରକ୍ତକୁ ବାହାର କରାଯାଇଥିଲା । ଏହା ଏକ ସଫଳ ଅସ୍ତ୍ରୋପଚାର ଥିଲା । ମାତ୍ର ୯୨ ବର୍ଷ ବୟସରେ ପଦାର୍ପଣ କଲାପରେ ସେ ବୋଧହୁଏ ଏତେବଡ଼ ଅପରେସନଟିକୁ ସମ୍ଭାଳି ପାରି ନ ଥିଲେ । ରଥଯାତ୍ରା ପରଦିନ ୧୧।୭।୨୦୧୩ ସକାଳ ୬ଟାବେଳେ ପ୍ରଫେସର (ଡାଃ) ନିମାଇଁଚରଣ ପଣ୍ଡାଙ୍କଠାରୁ ଟେଲିଫୋନ୍ ପାଇଲି ଯେ କିମ୍ବଦନ୍ତୀ ପୁରୁଷ ଆଉ ନାହାନ୍ତି । ବିଜ୍ଞାନ ପ୍ରଚାର ସମିତିର ସମ୍ପାଦକ ହିସାବରେ ପ୍ରାୟ ସବୁ ସଭ୍ୟମାନଙ୍କୁ ଟେଲିଫୋନ୍‌ରେ ଜଣାଇଦେଲି । ଖବର ପାଇଲି ଅହମଦାବାଦରୁ ତାଙ୍କ ଶବ ଭୁବନେଶ୍ୱରରେ ଆସି ପହଞ୍ଚିବ ଦିନ ୧୨.୩୦ରେ । ପହଞ୍ଚୁ ପହଞ୍ଚୁ ୨ଟା ହୋଇଯାଇପାରେ । ଇତିମଧ୍ୟରେ କୁମୁଦିନୀ ସ୍ମୃତିଭବନର ଚାବି ତାଙ୍କ ସମ୍ପର୍କୀୟଙ୍କୁ ଦେଇଦେଲି । ଦିନ ୨ଟାରେ ତାଙ୍କ ଆମ୍ରପଲ୍ଲୀ ବାସଭବନ କୋଳାହଳମୟ ହୋଇଗଲା । ଶୁଣିଲି ଉଡ଼ାଜାହାଜ ବିଳମ୍ବରେ ଆସିଲା ଏବଂ ଶବ ହସ୍ତାନ୍ତର ଡେରି ହେଲା । ତାଙ୍କର ଦୁଇଟି ଅନୁଷ୍ଠାନ, ଯଥା – ଉତ୍କଳ ବିଶ୍ୱବିଦ୍ୟାଳୟ ରସାୟନ ବିଭାଗ ଓ ରେଭେନ୍‌ସା ବିଶ୍ୱବିଦ୍ୟାଳୟ ରସାୟନ ବିଭାଗପାଇଁ ଅବଦାନ ଅବିସ୍ମରଣୀୟ । ତେଣୁ ତାଙ୍କ ଶବାଧାର ଯାନ ଏହି ଦୁଇଟି ବିଶ୍ୱବିଦ୍ୟାଳୟ ଦେଇ ଆମ୍ରପଲ୍ଲୀରେ ପହଞ୍ଚିଲା ଦିନ ୪ଟା ବେଳେ । ୬ଟାବେଳେ ତାଙ୍କର ଅନ୍ତିମ ଇଚ୍ଛା ଅନୁଯାୟୀ ଖାନନଗର ଶ୍ମଶାନରେ ଶେଷକୃତ୍ୟ ସମ୍ପନ୍ନ ହେଲା । ସବୁଦିନପାଇଁ ତାଙ୍କ ଶରୀର ଭସ୍ମ ହୋଇଗଲା କିନ୍ତୁ ରହିଗଲା ତାଙ୍କର ଅଶେଷ କୃତି ଓ ଦିଗ୍‌ଦର୍ଶନ ।

ହାଇସ୍କୁଲରେ ପଢ଼ିଲାବେଳେ ତାଙ୍କ ବିଜ୍ଞାନ ବହି ପଢ଼ିବାର ସୁଯୋଗ ପାଇଥିଲି । ୧୯୬୪ ମସିହାରେ ରେଭେନ୍‌ସାରେ ନାମ ଲେଖାଇବାପରେ ତାଙ୍କୁ ସ୍ୱଚକ୍ଷୁରେ ଦେଖିବାର ସୁଯୋଗ ପାଇଲି । ସେତେବେଳେ ତାଙ୍କର 'ପୃଥିବୀ ବାହାରେ ମଣିଷ' ଓ 'ଉଡ଼ନ୍ତା ଥାଳିଆ' ଉପନ୍ୟାସ ଦୁଇଟି ଚହଳ ପକାଇ ଦେଇଥାଏ । ସାର୍ ଆମକୁ ପଢ଼ାଇଲାବେଳେ ବୈଜ୍ଞାନିକମାନଙ୍କ ଜୀବନୀ ବିଷୟରେ ଏତେ ସୁନ୍ଦର ଗପ କହନ୍ତି ଆମେ ତାକୁ ମନ ଦେଇ ଶୁଣୁ । ବୈଜ୍ଞାନିକ ହଫ୍‌ମାନ୍ କିପରି ଜର୍ମାନୀ ରାଜକୁମାରୀଙ୍କ ସହିତ ଯୌତୁକ ହୋଇ ଇଂଲଣ୍ଡ ଯାଇଥିଲେ ।

ଇଣ୍ଟର୍‌ମେଡିଏଟ୍‌ରେ ୧୦ମ ସ୍ଥାନ ଅଧିକାର କରିଥିବାରୁ ମୋର ପଦାର୍ଥ ବିଜ୍ଞାନ ଅନର୍ସ ହୋଇଥାଏ ।

ହଠାତ୍ ପ୍ରଫେସର ମହାପାତ୍ର ଦେଖାହୋଇ କହିଲେ ପଦାର୍ଥ ବିଜ୍ଞାନ ନ ନେଇ ରସାୟନ ବିଜ୍ଞାନ ଅନର୍ସ ନିଅ, ଭଲ କରିବ । ଯଦିଓ ରସାୟନ ବିଜ୍ଞାନ କଷ୍ଟ ଲାଗୁଥାଏ, ତାଙ୍କ ପରାମର୍ଶରେ ଅନର୍ସ ବଦଳାଇଲି । ତାଙ୍କର ଭବିଷ୍ୟଦ୍ ବାଣୀ ଠିକ୍ ହୋଇଥିଲା । ସ୍ନାତକୋତ୍ତର ପରୀକ୍ଷାରେ ସ୍ୱର୍ଣ୍ଣପଦକ ଜିଣି ରେଭେନ୍ସା କଲେଜରେ ଅଧ୍ୟାପକ ହେଲି । ପରବର୍ତ୍ତୀ ସମୟରେ କାନାଡ଼ା ଯାତ୍ରା କରି ବ୍ରିଟିଶ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଲାଭ କଲି । ବିଦେଶରୁ ଫେରି ଦେଖେତ ପ୍ରଫେସର ମହାପାତ୍ର ବିଭାଗୀୟ ମୁଖ୍ୟ ହୋଇ ସ୍ନାତକୋତ୍ତର ପ୍ରାକ୍ଟିକାଲ କ୍ଲାସ୍‌ରେ ଅଛନ୍ତି । ଦେଖା କଲି । କହିଲେ – ତମର ଭବିଷ୍ୟତ ଉଜ୍ଜ୍ୱଳ ଏବଂ ଶୀଘ୍ର ବିଜ୍ଞାନ ପ୍ରଚାର ସମିତିରେ ଯୋଗ ଦିଅ । ଓଡ଼ିଆରେ ବିଜ୍ଞାନ ଲେଖ । ୧୯୮୦ ମସିହାରୁ ଆରମ୍ଭ ହେଲା । ତାଙ୍କ ପ୍ରେରଣାରେ କେତେ ଖଣ୍ଡ ଲୋକପ୍ରିୟ ବିଜ୍ଞାନ ପୁସ୍ତକ ରଚନା କରିଛି । ଖାଲି ସେତିକି ନୁହେଁ, ସଦ୍ୟ ବିଦେଶରୁ ଫେରିଥିବାରୁ ବହୁ କଲେଜର ବିଜ୍ଞାନ ସଂସଦରେ ଭାଷଣ ଦେବାପାଇଁ ତାଙ୍କ ସହିତ ଡକରା ଆସୁଥାଏ । ଭାଷଣ ଦେବା ଅଭ୍ୟାସ ତାଙ୍କ ପାଇଁ ସମ୍ଭବ ହେଲା । ଏକା ଗାଡ଼ିରେ ଗଲାବେଳେ ଅତୀତର ବହୁକଥା ଗପି ଗପି ଯାନ୍ତି । ଭଦ୍ରକ ଘର କୁଆଁସ ମୋତେ ଥରେ ନେଇ ଯାଇ ଜମିବାଡ଼ି ଦେଖାଇଲେ । ରେଭେନ୍ସାରେ ପ୍ରଫେସର ଭାବରେ ଯୋଗ ଦେଲାପରେ ବିଜ୍ଞାନ ପ୍ରଚାର ସମିତିର ସମ୍ପାଦକ ହେଲି ଏବଂ ସୁବର୍ଣ୍ଣ ଜୟନ୍ତୀ ଜାକଜମକରେ କରାଗଲା । ଭୋଜି ହେଲେ କହିବେ, ବୈଷ୍ଣବ, ମାଂସ ଆଣିବା ଦାୟିତ୍ୱ ନେଉ । କୋଷାଧ୍ୟକ୍ଷ ଥିଲାବେଳେ ହୀରକ ଜୟନ୍ତୀ ପାଳନ କରାଗଲା । ଅନେକ ସମୟରେ ଦୁଃଖ କରି କହନ୍ତି 'ମୋ ପିଲାମାନେ ତ ଦୂରରେ ରହିଲେ । ମୋ ସ୍ତ୍ରୀ ଥିଲେ ମୋର ଚିନ୍ତା ନ ଥିଲା । ସେ ଚାଲିଗଲା ପରେ ଭାରୀ ଅସହାୟ ଲାଗୁଛି । ସମୟ ପାଇଲେ ଆସୁଥିବ । ନିର୍ବାଚନ ଅଧିବେଶନରେ ସେ ଜିଦ୍ କଲେ 'ବୈଷ୍ଣବ ସମ୍ପାଦକ ହେବ । ସେତେବେଳେକୁ ଡଃ ବିଜୟ ପଟ୍ଟନାୟକଙ୍କ ପାରିବାରିକ ଅସୁବିଧା ହୋଇଯାଇଥାଏ ।

ଆଉ ବିଶେଷ କିଛି ଲେଖିବାର ନାହିଁ । ସେ ମେଧାବୀ ପିଲାଙ୍କୁ ଭଲ ପାଉଥିଲେ । ବିଶେଷ କରି ବିଜ୍ଞାନକୁ ଲୋକପ୍ରିୟ କରିବାରେ ତାଙ୍କର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ । ୧୪।୭।୨୦୧୩ ଶୋକସଭାରେ ତାଙ୍କ ଜ୍ୟେଷ୍ଠପୁତ୍ର ଡାକ୍ତର ଗିରିଜାନନ୍ଦନ ମହାପାତ୍ର କହିଲେ ତାଙ୍କ ବାପାଙ୍କ ଅମରତ୍ୱପାଇଁ 'କୁମୁଦିନୀ ସ୍ମୃତି ଭବନ' ବିଜ୍ଞାନ ପ୍ରଚାର ସମିତିପାଇଁ ସବୁଦିନ ଖୋଲା ରହିବ । ଏହା ଆମ ସମସ୍ତଙ୍କୁ ଉତ୍ସାହିତ କରିଛି, ଏଥିରେ ସନ୍ଦେହ ନାହିଁ ।

# ପୃଥିବୀ ବାହାରେ ବୈଜ୍ଞାନିକ ଗୋକୁଳାନନ୍ଦ

**ଡାକ୍ତର ନିମାଇଁ ଚରଣ ପରିଡ଼ା**

ପ୍ରବୀଣ ବିଜ୍ଞାନ ଲେଖକ ଡାକ୍ତର ଗୋକୁଳାନନ୍ଦ ମହାପାତ୍ର ଆଉ ନାହାନ୍ତି । ଜଣେ ଉଚ୍ଚକୋଟୀର ବୈଜ୍ଞାନିକ, ପ୍ରତିଷ୍ଠିତ ଛାତ୍ରବତ୍ସଳ, ବିଜ୍ଞାନ ଅଧ୍ୟାପକ, ଓଡ଼ିଆ ଭାଷାରେ ସାବଲୀଳ ବିଜ୍ଞାନ ଲେଖକ ଓ ଲୋକପ୍ରିୟ ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା ସଦସ୍ୟ ଓ ସଭାପତି ଗୋକୁଳାନନ୍ଦବାବୁ ତାଙ୍କର ନିତ୍ୟ ନିବାସ 'ଆମ୍ରପଲ୍ଲୀ' ପରିତ୍ୟାଗ କରି ପୃଥିବୀ ବାହାରକୁ ଚାଲିଯାଇଛନ୍ତି । ପ୍ରତି ୧୫ ଦିନ ଅନ୍ତରରେ ଏକ ରବିବାରରେ ତାଙ୍କର ଆମ୍ରପଲ୍ଲୀ ବାସଭବନରେ ବିଜ୍ଞାନ ପ୍ରଚାର ସମିତିର ସଭା ବସୁଥିଲା ଓ ଏହା ଚଳଚଞ୍ଚଳ ହେଉଥିଲା । ସେହି ସଭାରେ ବହୁ ବିଜ୍ଞାନଭିତ୍ତିକ ପ୍ରବନ୍ଧମାନ ଆଲୋଚନା ହେଉଥିଲା । ଓଡ଼ିଆ ଭାଷାରେ ବିଜ୍ଞାନର ସରଳୀକରଣ ଓ ଲୋକପ୍ରିୟତା ହାସଲ କରିବାରେ ଏହି ଅନୁଷ୍ଠାନ ନିରବଚ୍ଛିନ୍ନ ଭାବରେ ଦୀର୍ଘ ୬୦ ବର୍ଷ ଧରି କାର୍ଯ୍ୟ କରିଆସିଥିଲା ଓ ଜନମତକୁ ପ୍ରଭାବିତ କରିଆସିଥିଲା । ବୋଧହୁଏ ବିଜ୍ଞାନକୁ ସରଳକରି ଓଡ଼ିଆ ଭାଷାରେ ପ୍ରକାଶ କରିବାରେ ସେ ଥିଲେ ପ୍ରଥମ ପ୍ରୟାସୀ ଓ ଏକ ସମର୍ଥ ସାରଥି । ଆଜି ସେଇ ଆମ୍ରପଲ୍ଲୀ ହେବ ନୀରବ ଓ ନିଶ୍ଚଳ । ବିଜ୍ଞାନଭିତ୍ତିକ ବହୁ ପୁସ୍ତକ ସେ ରଚନା କରିଥିଲେ । ମୁଁ ହାଇସ୍କୁଲରେ ପଢ଼ିଲାବେଳେ ତାଙ୍କ ରଚିତ 'ପୃଥିବୀ ବାହାରେ ମଣିଷ' ପୁସ୍ତକ ପଢ଼ିବାର ସୁଯୋଗ ପାଇଥିଲି ଓ ଏହା ମୋତେ ବେଶ୍ ପ୍ରଭାବିତ ଓ ଆମୋଦିତ କରିଥିଲା । ଅଧ୍ୟାପକ ଓ ଲରା ପୃଥିବୀ କକ୍ଷ ଛାଡ଼ି ମଙ୍ଗଳ ଗ୍ରହରେ ପ୍ରବେଶ କରିଥିବା ଅବସରରେ ପୃଥିବୀ ଓ ମହାଶୂନ୍ୟର ବହୁ ତଥ୍ୟ ସେ ଏହି ଉପନ୍ୟାସ ଜରିଆରେ ପ୍ରକାଶ କରିଥିଲେ । ଆଜି ମଧ୍ୟ ବୈଜ୍ଞାନିକମାନେ ମଙ୍ଗଳ ଗ୍ରହକୁ ଅଭିଯାନ କରିବା ଓ ସେଠି ଜୀବସତ୍ତାର ସନ୍ଧାନପାଇଁ ଆଗେଇ ଆସିଲେଣି । ଆଉ କେତେଦିନ ପରେ ବିଜ୍ଞାନୀମାନେ ମଙ୍ଗଳଗ୍ରହରେ ପାଦ ଦେବେ । ତାଙ୍କର ଉପନ୍ୟାସ 'ଚନ୍ଦ୍ରର ମୃତ୍ୟୁ' ଏକ ଯୁଗାନ୍ତକାରୀ ବିଜ୍ଞାନଭିତ୍ତିକ ଉପନ୍ୟାସ । ପ୍ରାୟ ୬୦ ବର୍ଷ ତଳେ ସେ ଏହା ରଚନା କରିଥିଲେ । ଆଜି କିନ୍ତୁ ବିଜ୍ଞାନୀମାନେ ଚନ୍ଦ୍ରରେ ପାଦରଖି ତା'ର ପରିବେଶ ଅନୁଧ୍ୟାନ କରି ସେଠାରେ ବସତି ସ୍ଥାପନପାଇଁ ଉଦ୍ୟମ ଆରମ୍ଭ କଲେଣି । ତାଙ୍କ ରଚନାର ଦୂରଦୃଷ୍ଟି ସୁଦୂରପ୍ରସାରୀ । ସେହିପରି ତାଙ୍କର ଲେଖା 'ଏ ଯୁଗର ଶ୍ରେଷ୍ଠ ଆବିଷ୍କାର', 'ଉଡ଼ନ୍ତା ଥାଳିଆ' 'କୃତ୍ରିମ ଉପଗ୍ରହ' ଓ 'ନିସ୍ତବ୍ଧ ଗୋଧୂଳି' ପୁସ୍ତକ ବେଶ୍ ଲୋକପ୍ରିୟତା ହାସଲ କରିଛି । ବିଜ୍ଞାନଭିତ୍ତିକ ବହୁ ଲୁକ୍କାୟିତ ସତ୍ୟ ଓ କଷ୍ଟକର ତଥ୍ୟକୁ ସରଳ ଓଡ଼ିଆ ଭାଷାରେ ରଚନା କରି ସେ ବେଶ୍ ଲୋକପ୍ରିୟତା ହାସଲ କରିଛନ୍ତି । ତା' ବ୍ୟତୀତ ବିଜ୍ଞାନ ପ୍ରଚାର ସମିତିର ମଙ୍ଗ ଧରି ଏହାକୁ ଆଗକୁ ବଢ଼ାଇ ଏକ ଆନ୍ଦୋଳନରେ ପରିଣତ କରିପାରିଛନ୍ତି । ଏହା ତାଙ୍କର ନିଷ୍ଠା ଓ ଐକାନ୍ତିକ ପ୍ରଚେଷ୍ଟାର ଫଳ । ବହୁ ସମ୍ମାନ ଓ ପୁରସ୍କାର ସେ ପାଇଥିଲେ ସତ, ହେଲେ ବିଜ୍ଞାନ ପ୍ରତି ତାଙ୍କର ଯେଉଁ ଅବାରିତ ଆନ୍ତରିକତା ଓ ନୂତନ ତଥ୍ୟ ଆବିଷ୍କାର କରିବାରେ ଯେଉଁ ଆଗ୍ରହ ତାହା ତାଙ୍କୁ ଚିରଦିନ ଅମ୍ଳାନ କରିରଖିବ । ଓଡ଼ିଶାର ବିଜ୍ଞାନ ସାହିତ୍ୟକୁ ତାଙ୍କର ଅବଦାନ ଅନବଦ୍ୟ । ଏହା ଏକ ମୌଳିକ ପ୍ରଚେଷ୍ଟା ଓ ବିଜ୍ଞାନ ସାହିତ୍ୟର ମହିମାମୟ କୀର୍ତ୍ତି ବୋଲି ଅଭିହିତ ହେବ । ତାଙ୍କ ମୃତ୍ୟୁରେ ଆମେ ମ୍ରିୟମାଣ । ତାଙ୍କ ମୃତ୍ୟୁ, ଆମପାଇଁ ଦୁଃଖଦ ଅନୁଭୂତି ହୋଇପାରେ, କିନ୍ତୁ ସେ ଆଜି ତାଙ୍କ କଳ୍ପନା ନାୟିକା ଲରା ସହିତ 'ପୃଥିବୀ ବାହାରେ' ଅବସ୍ଥାନ କରୁଛନ୍ତି – ଆହୁରି କିଛି ଅନେକ ବୈଜ୍ଞାନିକ ଗବେଷଣାର ଅନ୍ବେଷଣରେ –

D. Benhoeffer. Activist Pastorଙ୍କ ଭାଷାରେ – *"Death is Supreme fesitival on the road to freedom".*

ମୃତ୍ୟୁ ତାଙ୍କ ମୁକ୍ତିର ମହୋତ୍ସବ ବୋଲି କହିବାକୁ ହେବ । ଆସନ୍ତୁ, ସମସ୍ତେ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇବା ।

# ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ ଅବର୍ତ୍ତମାନରେ ଶ୍ରଦ୍ଧା ସୁମନ

**ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ**

ଆମ୍ରପଲ୍ଲୀ ଆଜି ହୋଇଛି ନିସ୍ତବ୍‌ଧ ଶୁଭୁନି ଆଉ ସେ ନାଦ ।
ସବୁଦିନପାଇଁ ଆଖି ବୁଜି ଦେଲେ ବିଜ୍ଞାନୀ ଗୋକୁଳାନନ୍ଦ ।୧।

ଅସଂଖ୍ୟ ଆଖିରୁ ଝରୁଛି ଲୋତକ କୋହରେ ଭରୁଛି ମନ
ପରତେ ହେଉନି ଏତେ ବେଗାବେଗି ଆସିବ ପୁଣି ଏ ଦିନ ।୨।

ଦୂର ରାଇଜକୁ ଯାଇଥିଲେ ପରା ଆରୋଗ୍ୟ ଲଭିବାପାଇଁ
ହେଲେ ଆଉ ଫେରି ଦେଖି ପାରିଲେନି ନିଜର ଓଡ଼ିଶା ଭୂଇଁ ।୩।

ଝୁରେ ପରିବାର ବଂଧୁ ସହୋଦର ଝୁରନ୍ତି ଓଡ଼ିଶାବାସୀ
ଝୁରୁଛି ବିଜ୍ଞାନ ପ୍ରଚାର ସମିତି ଶୋକ ସାଗରରେ ଭାସି ।୪।

ଆଉ ଦିଶିବନି ଉଡ଼ନ୍ତା ଥାଳିଆ ବାଦଲରେ ଗଲା ଢାଙ୍କି
ଥରେ ତାକୁ ଆଉ ଦେଖିବାପାଇଁକି କେତେ ଆଖି ଯାଏ ଲାଖି ।୫।

ପୃଥିବୀ ବାହାର ମଣିଷ ଆଜି ସେ ଆଉ ଦିଶିବନି ମୁହଁ
ବିଜ୍ଞାନ ଚନ୍ଦ୍ରର ମୃତ୍ୟୁ ହୋଇଗଲା ଗ୍ରାସେ ଅଂଧାରର ସୁଅ ।୬।

ଅଧ୍ୟାପନା ଠାରୁ ଗବେଷଣାଯାଏ ସବୁରେ ଧୂରୀଣ ଯାହା,
ଓଡ଼ିଆ ଭାଷାରେ ବିଜ୍ଞାନ ଲେଖାରେ ପକାଇଲେ ମୂଳଦୁଆ ।୭।

ସେହି ମୂଳଦୁଆ ହୋଇଗଲା ଯେବେ ବହୁତଳ ଅଟ୍ଟାଳିକା
ମୁଣ୍ଡି ମାରିବାକୁ ରହିଲେ ନାହିଁ ସେ ଛାଡ଼ି ଚାଲିଗଲେ ଏକା ।୮।

ପରିଜା ସମ୍ମାନ କଳିଙ୍ଗ ସମ୍ମାନ ଏକାଡେମୀ ପୁରସ୍କାର
ତୁଚ୍ଛ କରିଗଲେ ଯେତେ ଯାହାସବୁ ହୋଇଲା ତାହା ଅସାର ।୯।

ଯାହାପାଇଁ ନିତି ଝୁରି ହେଉଥିଲେ ଅନାଥ ହେଲା ସେ ଆଜି
ସବୁ ନୀତିବାଣୀ ସବୁ ଉପଦେଶ ନିମିଷକେ ଗଲା ହଜି ।୧୦।

ଶୁଭିବନି ଡାକ ନିମାଇଁ, ବୈଷ୍ଣବ, ବାସୁ, ନିତ୍ୟାନନ୍ଦ, ପେଚି,
ଧୀର, ସୁବାସିନୀ, ଦୀପ୍ତି, ଅଜିତାଭ, ବିଜୟ, ଶରତ, ସଚ୍ଚି ।୧୧।

ବିଷ୍ଣୁ, ନିରଞ୍ଜନ, ମହେନ୍ଦ୍ର, କଲ୍ୟାଣ, ପଦ୍ମନାଭ, ସୁଦର୍ଶନ,
ଭାରତୀ, ବରଦା, ଇକ୍‌ବାଲ, ପୁଣି ନାରଣ, ପଦ୍ମଲୋଚନ ।୧୨।

କହିବେନି ଆଉ ପୀତାମ୍ବରବାବୁ ଛାପିବେ ବିଜ୍ଞାନାଲୋକ
ପଢ଼ିବେ ପିଲାଏ ଜାଣିବେ ବିଜ୍ଞାନ ଓଡ଼ିଶା ମୁଲକଯାକ ।୧୩।

ସଭିଏଁ ଝୁରନ୍ତି ସେ ସ୍ୱରକୁ ଆଜି ଯେତେକ ତାଗିଦାବାଣୀ
କେମିତି ହୋଇବ ବାର୍ଷିକ ଉତ୍ସବ ପ୍ରତିଷ୍ଠା ଦିବସ ପୁଣି ।୧୪।

ସବୁ ହେଲା ଆଜି ସ୍ଥିର ଓ ନିଶ୍ଚଳ ଚଉକି ପଡ଼ିଲା ଖାଲି
ନିଜେ ଗଢ଼ିଥିବା ଦରବକୁ ସତେ କେମିତି ଗଲେ ସେ ଭୁଲି ।୧୫।

ଥିର ହୋଇଗଲା ହାତର ଲେଖନୀ ଆଉ ନ ଫୁଟିବ ଲେଖା
ବିଜ୍ଞାନ ପ୍ରଚାର ବିଜ୍ଞାନ ପ୍ରସାର ହୋଇଯିବ ଅଣଦେଖା ।୧୬।

ଶିଖାଇଥିଲେ ସେ ଯାହାକୁ ଧରାଇ ବିଜ୍ଞାନର ବର୍ଣ୍ଣବୋଧ
ଭାଳନ୍ତି ସେମାନେ କେ ଆଉ କରିବ ପ୍ରମାଦର ପ୍ରତିବାଦ ।୧୭।

ଅଧାବାଟେ ଛାଡ଼ି ଯାଇଥିଲେ ପତ୍ନୀ କରିଦେଇ ତାଙ୍କୁ ଏକା
ନିଃସଙ୍ଗ ଜୀବନ ବିତାଇଲେ ଯାହା ମନେ ଭରି କେତେ ଶଙ୍କା ।୧୮।
ଆଜି ଚାଲିଗଲେ ସିଏ ସେଇବାଟେ ମହାମିଳନର ପାଇଁ
ନିଜ ହାତେ ଗଢ଼ା ଘର ପରିବାର ଏକୁଟିଆ ଛାଡ଼ିଦେଇ ।୧୯।

ନିଚ୍ଛକ ସତକୁ କିଏ ବା ଭୁଲିବ ଜନ୍ମ ଥିଲେ ମୃତ୍ୟୁ ଥାଏ
ଅବୁଝା ମନ ଏ ତଥାପି ବୁଝୁନି ତୁଚ୍ଛାରେ ସନ୍ତାପି ହୁଏ ।୨୦।

ଯେଉଁଠି ଥିଲେ ବି ସେ ଚିର ଅମର କାଳଜୟୀ ମୃତ୍ୟୁଞ୍ଜୟ
ସେଇ ଧାମେ ତାଙ୍କ ଆତ୍ମା ଶାନ୍ତିପାଉ ବିଭୁ ପଦେ ରଖି ଲୟ ।୨୧।

ସାହସ ପାଆନ୍ତୁ ପରିବାର ଜନେ ସହିବାକୁ ଏହି କଷ୍ଟ
ଅଭାବକୁ ତାଙ୍କ କରି ଅଂଗୀକାର ଚାଲନ୍ତୁ ସଂସାର ବାଟ ।୨୨।

'ନିମନ୍ତ୍ରଣ
୮୯, ଶକ୍ତିନଗ
ଲିଙ୍କ୍‌ରୋଡ, କଟକ-

# ଜଣେ ଅନୁଗାମୀର ପ୍ରଳାପ

**ଡକ୍ଟର ରମେଶଚନ୍ଦ୍ର ପରିଡ଼ା**

ଏକ ମହାନ୍ ଜୀବନର ଅନ୍ତ ଘଟିଲେ ଆମେ ବ୍ୟଥିତ ହୋଇ ଏହା ଘଟାଏ ବୋଲି ବିଶ୍ୱାସ କରୁଥିବା ମୃତ୍ୟୁକୁ ଆହ୍ୱାନ ଦେଇ କହିଥାଉ, ଏ କାର୍ଯ୍ୟ ନିମିତ୍ତ ଗର୍ବିତ ନ ହେବାପାଇଁ । କାରଣ, ତାଙ୍କ ମାଟି ଦେହକୁ ସିନା ଶ୍ମଶାନ ଗ୍ରାସ କରିନିଏ ହେଲେ, ତାଙ୍କର ଯଶଦେହ ତାଙ୍କୁ ଚିର ଆୟୁଷ୍ମାନ୍ କରି ରଖିବ ବୋଲି ଆମେ ମନେ କରୁ । ଓଡ଼ିଆ ବିଜ୍ଞାନ ସାହିତ୍ୟର ପ୍ରାଣପ୍ରତିଷ୍ଠାତା କର୍ମବୀର ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କ ବିୟୋଗରେ ଉଭୟେ ପିତାମହ ଭୀଷ୍ମ ଏବଂ ଗୁରୁ ଦ୍ରୋଣଙ୍କ ଭୂମିକା ନେଇ ସେ ଲାଳନପାଳନ ଓ ପ୍ରଶିକ୍ଷଣ ଦେଇ ଆସିଥିବା ସମଗ୍ର ରାଜ୍ୟର ଅସଂଖ୍ୟ ଛାତ୍ରଛାତ୍ରୀ, ବୈଜ୍ଞାନିକ ଏବଂ ବିଜ୍ଞାନଲେଖକ ଏହାହିଁ କହିବେ । ପୁନଶ୍ଚ ତହିଁରୁ ଯେଉଁମାନେ ଯୁଗପୁରୁଷ ଶ୍ରୀଅରବିନ୍ଦଙ୍କ ସହିତ ଏକମତ, ସେମାନେ କହିବେ "Birth, death are a ceaseless iteration's points, the old question-mark margins each finished page, each volume of her (Divine mother's) effort's history." ଏପରିସ୍ଥଳେ ଏଥିରେ ମୃତ୍ୟୁର ଗର୍ବ କରିବାର ଅବକାଶ ରହିଲା କେଉଁଠି ?

କର୍ମଯୋଗୀ ପ୍ରଫେସର ମହାପାତ୍ରଙ୍କ କର୍ମମୟ ଜୀବନ ଥିଲା ଏକ ବିଶାଳ ମୁକ୍ତ ଗ୍ରନ୍ଥ । ସେଥିରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କୀର୍ତ୍ତିରାଜିର ସର୍ବଶେଷ ସୂଚନା ପ୍ରଦାନ ଅନାବଶ୍ୟକ । ତାହା ହେବ ସୂର୍ଯ୍ୟଙ୍କୁ ମହମବତି ଦେଖାଇଲାଭଳି । ତେବେ, ସେ ଏବଂ ତାଙ୍କର ମାତ୍ର କିଛି ମାସ ପୂର୍ବରୁ ପ୍ରଫେସର କୁଳମଣି ସାମଲଙ୍କ ଦେହାନ୍ତ ଓଡ଼ିଆ ବିଜ୍ଞାନ ସାହିତ୍ୟ ଏବଂ ଲେଖକମାନଙ୍କପାଇଁ ଗୋଟିଏ ଗୋଟିଏ ଦାରୁଣ ଧକ୍କା । ଏଣୁ ମନରେ ଭୟ ଆସୁଛି, ଏ ଉଭୟେ ହଠାତ୍ ଦିଗହରା ହୋଇ ପଡ଼ିବେ ନାହିଁ ତ ?

ଏଣିକି ବିଜ୍ଞାନ ଲେଖକଟିଏ ଲେଖିବସିଲାବେଳେ କାହାକୁ ସ୍ମରଣ କରିବ ? ବିଜ୍ଞାନ ପ୍ରଚାର ସମିତି କିମ୍ବା ଅନ୍ୟ କୌଣସି ବିଜ୍ଞାନ ସଭାରେ କାହା ପଛରେ ବସି ସେ ନିଜକୁ ଗୌରବାନ୍ୱିତ ମନେ କରିବ ? ନିଜେ ଶୁକ୍ଳକେଶଧାରୀ ହୋଇଥିଲେ ମଧ୍ୟ କାହାର ଉପସ୍ଥିତି ତାଙ୍କଠାରେ ଯୁବସୁଲଭ ଉତ୍ସାହର ପ୍ରବାହ ଘଟାଇବ ? ଏ ପ୍ରଶ୍ନଗୁଡ଼ିକର ଉତ୍ତର ମୁଁ ଖୋଜିପାଉନି । ଏହା ମୋ ପାଇଁ ଯନ୍ତ୍ରଣାଦାୟକ ହେଉଛି ।

ଆମ ସମାଜ ପୁନର୍ଜନ୍ମରେ ବିଶ୍ୱାସ କରେ । ପ୍ରଫେସର ମହାପାତ୍ରଙ୍କର ସମ୍ଭବତଃ ଏହା ନ ଥିଲା । ତେଣୁ ସେ ତାଙ୍କର ରଚନାବଳୀରେ ବିଜ୍ଞାନର ଭବିଷ୍ୟତ୍‌କୁ ନେଇ ସ୍ୱପ୍ନ ଦେଖିବା ସଙ୍ଗେ ସଙ୍ଗେ ସମାଜକୁ 'ଭୂତ-ଡାହାଣୀ' ଭଳି ଅନ୍ଧବିଶ୍ୱାସ ଓ କୁସଂସ୍କାର ପ୍ରଭାବରୁ ମୁକ୍ତ କରିବାପାଇଁ ଯତ୍‌ପରୋନାସ୍ତି ଉଦ୍ୟମ କରୁଥିଲେ । ତାଙ୍କର ଜଣେ ଛାତ୍ର ହିସାବରେ ଏବଂ ଅନୁଗାମୀ ହିସାବରେ ମୋର ମଧ୍ୟ ଏ ବିଶ୍ୱାସ କମ୍ । ତେବେ, ସେଥିପାଇଁ ମୁଁ ଆଜି ପ୍ରଥମଥର ଲାଗି ଦୁଃଖ ଅନୁଭବ କରୁଛି । ମୋର ଇଚ୍ଛା ହେଉଛି ତାଙ୍କ ପଦାଙ୍କ ଅନୁସରଣ ନ କରିବାକୁ । ଶ୍ରୀଅରବିନ୍ଦଙ୍କ ବିଚାରରେ "Death helps us not, vain is the hope to cease, a secret will comples us to endure. Our life's response is in the infinite; it cannot end, its end is life supreme. Death is a passage, not the goal of our walk ....." ଏଣୁ ମୁଁ ଯାଉଛି ବିଶ୍ୱାସ କରିବି ଯେ ଏକ ଶରୀର ରୂପେ ନ ହେଲେ ବି ଏକ ସତ୍ତା ରୂପେ ତାଙ୍କର ପୁନଃ- ଆବିର୍ଭାବ ଘଟିବ । ବିଜ୍ଞାନ ହୁଏତ ମୃତ୍ୟୁପରେ ପ୍ରାଣୀର ସଶରୀର ପୁନରାଗମକୁ ସ୍ୱୀକାର କରି ନ ପାରେ, କିନ୍ତୁ ତା'ର ସତ୍ତାର ଅମରତ୍ୱକୁ ଅସ୍ୱୀକାର କରିପାରିବ ନାହିଁ । ପ୍ରଫେସର ମହାପାତ୍ରଙ୍କର ଏହି ସତ୍ତା ବରଂ ଯୁଗ ଯୁଗ ଧରି ଓଡ଼ିଆ ବିଜ୍ଞାନ ସାହିତ୍ୟକୁ ବଞ୍ଚାଇ ରଖିବ ଏବଂ ବିଜ୍ଞାନକୁ ଲୋକାଭିମୁଖୀ କରିବ ।

ଅତଏବ, ଚାଲନ୍ତୁ ଆପଣମାନେ ମଧ୍ୟ ମୋ ସହିତ ମିଶି ତାଙ୍କ ମୃତ୍ୟୁକୁ ଅସ୍ୱୀକାର କରିବା, ତାକୁ କର୍ମଶେଷରେ ଏକ ବିଶ୍ରାମ ବୋଲି ଗ୍ରହଣ କରିବା । ଏଣୁ ତାଙ୍କ ପାଇଁ ଦୁଃଖ ନ କରି, ଆକୁଳ କ୍ରନ୍ଦନ ନ କରି ଚାଲନ୍ତୁ ସେ ମହାରଥୀଙ୍କୁ ଶୋଇବାକୁ ଦେବା ଏବଂ ବିଶ୍ୱାସ କରିବା ଯେ' ନିଦ୍ରାଶେଷରେ ସେଇ ଆର୍ଯ୍ୟବର ତାଙ୍କ ମଧୁସ୍ୱର ଉତ୍ତୋଳନ କରିବେ ଏବଂ ସେଥିରେ ଗଗନ ପବନକୁ ପ୍ରକମ୍ପିତ କରିବେ । ଏହି ଦାରୁଣ ଦୁଃଖ ସମୟରେ ସତ୍ୟକୁ ଗ୍ରହଣ କରିବା ଅପେକ୍ଷା, ଏପରି ବିଶ୍ୱାସ ହିଁ କେବଳ ଆମକୁ ସାନ୍ତ୍ୱନା ଦେଇପାରିବ ।

'ଉଷା ନିବାସ'
୧୨୪ / ୨୪୪୫, ଖଣ୍ଡଗିରି ବିହାର, ଭୁବନେଶ୍ୱର – ୩୦

# ବିନମ୍ର ଶ୍ରଦ୍ଧାଞ୍ଜଳି

**ବିଷ୍ଣୁଚରଣ ଜେନା**

ମୋ ସାର୍, ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ଯାହାଙ୍କ ପାଖରେ ବିଜ୍ଞାନ ପଢ଼ିଥିଲି, ଯାହାଙ୍କର ବିଜ୍ଞାନ ବହି ଓ ଲୋକପ୍ରିୟ ବିଜ୍ଞାନ ଲେଖା ମୋତେ ଜଣେ ବିଜ୍ଞାନ ଶିକ୍ଷକ ହେବାକୁ ପ୍ରେରଣା ଦେଇଥିଲା ସେହି ଗୁରୁଙ୍କର ଅମର ଆତ୍ମା ନିକଟରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି । ଶିକ୍ଷକ ଜୀବନକୁ ପ୍ରବେଶ କରିବା ପୂର୍ବରୁ ସାର୍‌ଙ୍କ 'ପୃଥିବୀ ବାହାରେ ମଣିଷ', 'ଚନ୍ଦ୍ରର ମୃତ୍ୟୁ', 'ନିଶ୍ଚଳ ପୃଥିବୀ' ଓ 'ଉଡ଼ନ୍ତା ଥାଳିଆ' ପ୍ରଭୃତି ପଢ଼ି ଶିକ୍ଷକ ହେବାପାଇଁ ପ୍ରେରଣା ପାଇଥିଲି । ଉତ୍ତମ ଶିକ୍ଷକଟିଏ ହୋଇ ଏହି ପୁସ୍ତକଗୁଡ଼ିକର କାହାଣୀ ଛାତ୍ରଛାତ୍ରୀଙ୍କ ନିକଟରେ ଉପସ୍ଥାପନା କରିବାର ଇଚ୍ଛା ସାକାର ହୋଇଛି ।

ସାର୍ ଥିଲେ ଅଜାତଶତ୍ରୁ । ଅସରନ୍ତି ପାଠ ପଢୁଥିଲେ, ଗବେଷଣା କରିଥିଲେ, ବିଦେଶରେ ସୁନାମ ଅର୍ଜନ କରିଥିଲେ, ଦେଶ ଓ ଦେଶ ବାହାରୁ ବହୁ ପୁରସ୍କାର ସମ୍ମାନ ଓ ମାନପତ୍ର ଲାଭ କରିଥିଲେ । ବିଜ୍ଞାନକୁ ଲୋକପ୍ରିୟ କରିବାପାଇଁ ବିଜ୍ଞାନ ପ୍ରଚାର ସମିତି ଗଠନର ପୁରୋଧା ଥିଲେ । ଶତାଧିକ ବିଜ୍ଞାନ ପୁସ୍ତକ ଲେଖି ବିଜ୍ଞାନ ଜଗତର ମଉଡ଼ମଣି ପାଲଟି ଯାଇଥିଲେ । ଓଡ଼ିଆ ପତ୍ରପତ୍ରିକାରେ ବହୁ ବିଜ୍ଞାନ ପ୍ରବନ୍ଧ, ଗଳ୍ପ, ଉପନ୍ୟାସ ଓ ନାଟକ ପ୍ରଭୃତି ଲେଖି ବିଜ୍ଞାନର ଜଟିଳ ତଥ୍ୟକୁ ସରଳ ମନଛୁଆଁ ଭାଷାରେ ଲୋକପ୍ରିୟ କରାଇଥିଲେ । ଦେଶ ବିଦେଶରେ ଗବେଷଣାମୂଳକ ବିଜ୍ଞାନ ସାହିତ୍ୟ ପ୍ରକାଶ କରିବା ସଙ୍ଗେ ସ୍କୁଲଠାରୁ କଲେଜ ପର୍ଯ୍ୟନ୍ତ ଛାତ୍ରଛାତ୍ରୀଙ୍କ ପାଠପଢ଼ା ବହି ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଲେଖି ବିଦ୍ୟାଳୟ ଓ ମହାବିଦ୍ୟାଳୟପାଇଁ ପାଠ୍ୟପୁସ୍ତକଗୁଡ଼ିକୁ ଛାତ୍ରପ୍ରିୟ କରାଇଥିଲେ । ଏତେ ସତ୍ତ୍ୱେ ସାର୍‌ଙ୍କ ନ ଥିଲା ଅହମିକା ନ ଥିଲା ଗର୍ବ । ସେ ଥିଲେ ବିନୟର ଏକ ଜ୍ୱଳନ୍ତ ପ୍ରତିମା ।

ସାଲେପୁର ହାଇସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ସେ ସମୟର ରାଧାନାଥ ଟ୍ରେନିଂ କଲେଜରେ ଅନୁଷ୍ଠିତ ଏକ ବିଜ୍ଞାନ କର୍ମଶାଳାରେ ସାର୍‌ଙ୍କ ଶିକ୍ଷକ ତାଲିମ ମୋ ଶିକ୍ଷକ ଜୀବନକୁ ବହୁପରିମାଣରେ ପ୍ରଭାବିତ କରିଥିଲା । ସେକେଣ୍ଡାରୀ ବୋର୍ଡ ହାଇସ୍କୁଲରେ ବିଜ୍ଞାନ ଶିକ୍ଷକରୂପେ ଯେଉଁ ଦିନ ଯୋଗଦେଲି ସେହିଦିନ ସାର୍‌ଙ୍କ ଆଶୀର୍ବାଦ ନେବାପାଇଁ ଦୋଳମୁଣ୍ଡାଇ ବାସଗୃହକୁ ଯାଇଥିଲି । ପ୍ରଭାବଶାଳୀ ଶିକ୍ଷକଟିଏ ହେବାପାଇଁ ପ୍ରେରଣା ଦେଇଥିଲେ ।

ସାର୍‌ଙ୍କ ପିଲାମାନେ ବିଶେଷତଃ ଗିରିଜା, ନନ୍ଦନନ୍ଦନ, ରଶ୍ମି, ସ୍ନିଗ୍ଧା ପ୍ରଭୃତିଙ୍କୁ ପାଠ ପଢ଼େଇବା ସମୟରେ ପରମ ପୂଜନୀୟା ମା'କୁମୁଦିନୀ ମହାପାତ୍ରଙ୍କ ସ୍ନେହ, ଶ୍ରଦ୍ଧା ଓ ଆନ୍ତରିକତା ଲାଭ କରି ନିଜକୁ ଧନ୍ୟ ଅନୁଭବ କରିଥିଲି । ବିଜ୍ଞାନ ପ୍ରଚାର ସମିତିର ଅଧିବେଶନ ସାର୍‌ଙ୍କ ଘରେ ଅନୁଷ୍ଠିତ ହୁଏ । କଟକ ତଥା ଓଡ଼ିଶାର ବହୁ ପ୍ରଖ୍ୟାତ ବୈଜ୍ଞାନିକମାନଙ୍କ ମେଳରେ, ସାର୍‌ଙ୍କ ସଭାପତିତ୍ୱରେ ଅନୁଷ୍ଠିତ ବିଜ୍ଞାନ ଆଲୋଚନା ପର୍ବରେ ଭାଗନେବା ସଙ୍ଗେ ସଙ୍ଗେ ପୂଜ୍ୟ ଗୁରୁଙ୍କ ସାନ୍ନିଧ ଓ ଆଶୀର୍ବାଦ ଲାଭ କରିବାର ସୁଯୋଗକୁ ହାତଛଡ଼ା କରି ନ ଥିଲି । ସାର୍ ମୋତେ ବହୁତ ଭଲପାଆନ୍ତି । ବିଜ୍ଞାନ ପ୍ରଚାର ସମିତିର ସ୍କୁଲ କାର୍ଯ୍ୟକ୍ରମକୁ ମୋ ଉପରେ ନ୍ୟସ୍ତ କରି ସନ୍ତୋଷ ଲାଭ କରନ୍ତି । ଥରେ ଦୁଇ ଥର ସାର୍ ମୋତେ ପାଖକୁ ଡକାଇ ବିଜ୍ଞାନ ପ୍ରଚାର ସମିତିର ସହ-ସମ୍ପାଦକ ହେବାକୁ ପ୍ରସ୍ତାବ ଦେଇଥିଲେ, କିନ୍ତୁ ମୁଁ ଗୁରୁ ଦାୟିତ୍ୱକୁ ଗ୍ରହଣ

କରିବାକୁ ଅସାମର୍ଥ୍ୟ ପ୍ରକାଶ କରିଥିଲି । ବଙ୍ଗାଳୀସାହିସ୍ଥ ମଣିଷଗଢ଼ା କାରଖାନା ରାମକୃଷ୍ଣ କୁଟୀରର ତତ୍ତ୍ୱାବଧାରକ ହୋଇଥିବାରୁ ସାର୍ ବହୁତ ଖୁସି ପ୍ରକାଶ କରନ୍ତି । ସମୟ ସମୟରେ ଏଠାରେ ରହୁଥିବା ବିଜ୍ଞାନ ଛାତ୍ରମାନଙ୍କ ବିଷୟରେ ଜାଣିବାପାଇଁ ମୋତେ ତାଙ୍କ ପାଖକୁ ଡକାନ୍ତି । ସାର୍ଙ୍କ ଆନ୍ତରିକ ସ୍ନେହ ମୋତେ ବହୁତ ଗଠନମୂଳକ କାର୍ଯ୍ୟ କରିବାପାଇଁ ଉଦ୍ଦୀପନା ଓ ପ୍ରେରଣା ପ୍ରଦାନ କରୁଥିଲା ।

ଶିକ୍ଷକ ଜୀବନକାଳରେ ସାର୍ଙ୍କ ଅଣୁପରମାଣୁର ଭିତର କଥା, ପଦାର୍ଥ ବିଜ୍ଞାନର ଆଧୁନିକ ଧାରଣା, ବିଜ୍ଞାନର ଶ୍ରେଷ୍ଠ ଆବିଷ୍କାର, ଚନ୍ଦ୍ରପୃଷ୍ଠରେ ମଣିଷ, ପରମାଣୁ ବୋମାର ଇତିହାସ, ଭିଟାମିନ୍ ଓ ହରମୋନ୍, ଆଇନ୍‌ଷ୍ଟାଇନ୍ ଓ ଆପେକ୍ଷିକ ତଥ୍ୟ, ବିଜ୍ଞାନ ଜଗତର ନୂଆ ନୂଆ ଉଦ୍ଭାବନ ପ୍ରଭୃତି ବହୁ ପୁସ୍ତକ ପଢ଼ିବାର ସୁଯୋଗ ଲାଭ କରିଥିଲି । ମୋ ଭଳି ଶହ ଶହ ବିଜ୍ଞାନ ଶିକ୍ଷକ ଓ ଶିକ୍ଷିକାଙ୍କପାଇଁ ସାର୍ଙ୍କ ବିଜ୍ଞାନ ପୁସ୍ତକଗୁଡ଼ିକ ଗୋଟିଏ ଗୋଟିଏ ଅମୂଲ୍ୟ ରତ୍ନ ।

ବିଜ୍ଞାନ ଭାଷା-ସାହିତ୍ୟ ଗୋଟିଏ ଜାତିକୁ ନିଗୂଢ଼ ବନ୍ଧନରେ ବାନ୍ଧିଦିଏ । ଜାତିର ଐକ୍ୟର ଭିତ୍ତି ରଚନା କରେ । ଲୋକପ୍ରିୟ ବିଜ୍ଞାନ ମାନବଜାତିକୁ ପରସ୍ପର ନିକଟବର୍ତ୍ତୀ କରାଏ । ଏହା ସବୁ ପୂଜ୍ୟ ସାର୍ଙ୍କ ବାଣୀ । ଓଡ଼ିଆ ଜାତିର ଜୀବନକୁ ବିଶ୍ୱମାନବର ଜୀବନ ସହିତ ଐକ୍ୟବଦ୍ଧ କରିବାରେ ସାର୍ ଯେଉଁ ପଥ ଦେଖାଇ ଦେଇ ଚାଲିଗଲେ ତା'ରି ଭିତରେ ମୋ ସାର୍ଙ୍କ ସ୍ମୃତି ପ୍ରଜ୍ୱଳିତ ହୋଇରହିବ । ଖାନ୍‌ନଗରଠାରେ ଜଳୁଥିବା ଚିତା ନିକଟରେ ଆମେ କେତେଜଣ ଠିଆ ହୋଇ ତାହା ଅନୁଭବ କରୁଥିଲୁ ।

ସେହି ପ୍ରଜ୍ଞାପୁରୁଷ ମହନୀୟ ପରମ ଆତ୍ମା ନିକଟରେ ମୁଁ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଓ ଭକ୍ତିପୂତ ପ୍ରଣାମ ଜଣାଉଛି ।

ରାମକୃଷ୍ଣ କୁଟୀର,
ବଙ୍ଗାଳୀ ସାହି, କଟକ

# ଜନପ୍ରିୟ ବିଜ୍ଞାନ ସାହିତ୍ୟର ପ୍ରବାଦପୁରୁଷ ଗୁରୁ ଗୋକୁଳାନନ୍ଦ

**ଡାକ୍ତର ସର୍ବେଶ୍ୱର ସ୍ୱାଇଁ**

ଛାତ୍ରବତ୍ସଳ ପ୍ରଫେସର ଗୁରୁ ଗୋକୁଳାନନ୍ଦ ମହାପାତ୍ରଙ୍କ ସହିତ ମୋର ପ୍ରଥମ ପରିଚୟ ହୁଏ ରେଭେନ୍ସା କଲେଜରେ, ମୁଁ ୧୯୪୮ ମସିହାରେ ବିଜ୍ଞାନର ସ୍ନାତକ ଛାତ୍ର ହିସାବରେ । ତା'ପରେ ଅର୍ଦ୍ଧଶତାବ୍ଦୀ ତାଙ୍କର ଓ ମୋର କର୍ମମୟ ଜୀବନ ଯାତ୍ରା ଅତିକ୍ରାନ୍ତ ହୋଇଯାଇଛି ।

ବିଜ୍ଞାନର ସ୍ନାତକ ହେଲାପରେ ମୁଁ ମାନ୍ଦ୍ରାଜ (ଏବର ଚେନ୍ନାଇ) ବିଶ୍ୱବିଦ୍ୟାଳୟରେ ପଶୁପାଳନ ଓ ପଶୁଚିକିତ୍ସା ବିଜ୍ଞାନରେ ସ୍ନାତକ ହୋଇ ରାଜ୍ୟ ପଶୁପାଳନ ଓ ପଶୁଚିକିତ୍ସା ବିଭାଗରେ ଯୋଗ ଦିଏ । ତା'ପରେ ବିଭିନ୍ନ ଅନୁଷ୍ଠାନରୁ ସ୍ନାତକୋତ୍ତର ଶିକ୍ଷା ଲାଭ କରି ପଶୁପାଳନ ଓ ପଶୁ ଚିକିତ୍ସା ବିଭାଗରେ କର୍ମମୟ ଜୀବନଯାତ୍ରାରେ ଆଗୁସାର ହୋଇ ୧୯୮୬ ମସିହାରେ ସରକାରୀ କାର୍ଯ୍ୟରୁ ଅବସର ନିଏ ।

ଅବସରାନ୍ତେ ସମାଜ, ପ୍ରଜାତନ୍ତ୍ର ଓ ଆଉ କେତେକ ପତ୍ର ପତ୍ରିକାରେ ମୋର ବିଜ୍ଞାନଭିତ୍ତିକ ଲେଖା ବିଶେଷତଃ ଗୋ-ପାଳନ, ଛାଗପାଳନ ଓ କୁକୁଡ଼ା ପାଳନ ଲେଖାମାନ ପ୍ରକାଶିତ ହୁଏ । ଜଣେ ସମାଜ ପାଠକ ହିସାବରେ ରେଭେନ୍ସା କଲେଜରେ ବିଜ୍ଞାନ ପ୍ରଚାର ସମିତିର ବୈଠକ ଚାଲୁଥିବାର ସୂଚନା ପାଇଲି । ଉକ୍ତ ବୈଠକରେ ରାଜ୍ୟ ପଶୁପାଳନ ଓ ପଶୁଚିକିତ୍ସା ବିଭାଗର ନିର୍ଦ୍ଦେଶକ ଓ କୃଷି ବିଶେଷଜ୍ଞ ଡଃ ବିଶ୍ୱନାଥ ସାହୁଙ୍କ ସହିତ ଗୁରୁ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଯୋଗ ଦେଇ ବିଜ୍ଞାନ ପ୍ରବନ୍ଧ ପାଠ କରୁଥିବାର ଖବର ପାଇଲି । ଜଣେ ମାମୁଲି ବିଜ୍ଞାନ ପ୍ରବନ୍ଧ ଲେଖକ ହିସାବରେ ଉକ୍ତ ବୈଠକରେ ଯୋଗ ଦେଇ ପ୍ରାକ୍ତନ ଛାତ୍ର ହିସାବରେ ଗୁରୁଙ୍କୁ ସାକ୍ଷାତ୍ କରିବା ଇଚ୍ଛା ବଳବତ୍ତର ହେଲା । ଯାହାହେଉ ତା'ର ସୁବର୍ଣ୍ଣ ସୁଯୋଗ ମିଳିଗଲା ୨୦୦୨ ମସିହାରେ ।

ନୂଆଦିଲ୍ଲୀସ୍ଥିତ ରାଷ୍ଟ୍ରୀୟ ବିଜ୍ଞାନ ଓ ପ୍ରୌଦ୍ୟୋଗିକୀ ସଂଚାର ପରିଷଦ ଆନୁକୂଲ୍ୟରେ ଓ ବିଜ୍ଞାନ ପ୍ରଚାର ସମିତିର ସହଯୋଗିତାରେ ରେଭେନ୍ସା ମହାବିଦ୍ୟାଳୟରେ ଗୋଟିଏ ଚାରିଦିନିଆ କର୍ମଶାଳା ଆୟୋଜନ କରାଯାଇଥାଏ । ଉକ୍ତ କର୍ମଶାଳାରେ ଯୋଗଦାନ କରିବାର ସୁଯୋଗ ମୋତେ ମିଳିଗଲା ସେହି କର୍ମଶାଳାରେ ପ୍ରବାଦ ପୁରୁଷ ପ୍ରଫେସର ଗୁରୁ ଗୋକୁଳାନନ୍ଦଙ୍କ ସହିତ, ଅର୍ଦ୍ଧଶତାବ୍ଦୀ ପରେ ସାକ୍ଷାତ୍ ଗୁରୁ ଶିଷ୍ୟଙ୍କର ଅନ୍ତରଙ୍ଗ ଆଳାପରେ । ସେ ମୋତେ ବିଜ୍ଞାନ ପ୍ରଚାର ସମିତି ସଭ୍ୟ ଭାବରେ ଗ୍ରହଣ କରିନେଲେ ।

ତା'ପରେ ପ୍ରଫେସର ମହାପାତ୍ରଙ୍କ ଆମ୍ରପଲ୍ଲୀ ବାସଭବନରେ ମାସରେ ଦୁଇ ଥର ବୈଠକରେ ମୁଁ ରୀତିମତ ଯୋଗ ଦିଏ । ବିଜ୍ଞାନୀବନ୍ଧୁଙ୍କ ସହିତ ବିଜ୍ଞାନ ପ୍ରବନ୍ଧପାଠ କରେ । ତା'ର ଆଲୋଚନା, ପର୍ଯ୍ୟାଲୋଚନା ପରେ, ପ୍ରଫେସର ମହାପାତ୍ର ତା'ର ତର୍ଜମା କରନ୍ତି । ମନୋନୀତ ପ୍ରବନ୍ଧ ସମିତିର ମୁଖପତ୍ର ବିଜ୍ଞାନାଲୋକରେ ପ୍ରକାଶ ପାଏ ।

ବିଜ୍ଞାନ ପ୍ରଚାର ସମିତିର ତୃଣମୂଳ ସ୍ରଷ୍ଟା ଓ ବିଜ୍ଞାନାଲୋକ ହେଉଛି ପ୍ରଫେସର ଗୋକୁଳାନନ୍ଦବାବୁଙ୍କ ମାନସ ସନ୍ତାନ । ପ୍ରଫେସରଙ୍କର ସମସାମୟିକ ଅଧ୍ୟାପକମାନଙ୍କର ଭ୍ରୂକୁଞ୍ଚନକୁ ଏଡ଼ାଇ ଦେଇ ଉକ୍ତ ମୁଖପତ୍ର ଦୀର୍ଘ ୩୦ ବର୍ଷ ବିଜ୍ଞାନପ୍ରେମୀମାନଙ୍କୁ ଆଲୋକ ପ୍ରଦାନ କରି ଉଭେଇ ଯାଇଅଛି ।

ପ୍ରଫେସର ମହାପାତ୍ର ଜନପ୍ରିୟ ବିଜ୍ଞାନ ସାହିତ୍ୟରେ ମୋର ମୂଳ ଭିତ୍ତି ସ୍ଥାପନ କରିଛନ୍ତି । ତାଙ୍କର ପ୍ରେରଣା ଓ ଆଶୀର୍ବାଦର ଫଳଶ୍ରୁତି ହେଉଛି, ମୋର ପ୍ରଥମ ବିଜ୍ଞାନ ପୁସ୍ତକ, ଜ୍ଞାନ ବିଜ୍ଞାନର ନୂତନ ଦିଗନ୍ତ ।

ସେହି ପ୍ରବାଦପୁରୁଷ, ବିଜ୍ଞାନ ସାହିତ୍ୟ ମହାକାଶର ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କର ନିର୍ବାଣ ଆଜି ସମଗ୍ର ବିଜ୍ଞାନ ସାହିତ୍ୟପ୍ରେମୀଙ୍କୁ ଶୋକସାଗରରେ ଭସାଇ ଦେଇଅଛି । ଅବଶ୍ୟ ତାଙ୍କର ସ୍ୱନକ୍ଷତ୍ର ଦିବସରେ ଡଃ ଚିତ୍ତରଞ୍ଜନ ମିଶ୍ରଙ୍କ ସହିତ ତାଙ୍କ ଅନ୍ତରଙ୍ଗ ଆଳାପ ଥିଲା, ତାଙ୍କର ଭବିଷ୍ୟଦ୍‌ବାଣୀ । ''ସେ ଜୀବନଯାତ୍ରାର ଅପରାହ୍ଣରେ ପହଞ୍ଚିଛନ୍ତି । ସୁତରାଂ ସନ୍ଧ୍ୟା ନିଶ୍ଚୟ ଆସିବ ।'' ସତକୁ ସତ ସେ ସାୟଂକାଳ ଆସି ପହଞ୍ଚିଯାଇଥିଲା ଓ ଇହଜଗତରୁ ବିଦାୟ ନେଇଗଲେ । ଏ ପରିପ୍ରେକ୍ଷୀରେ ଗୋଟିଏ ଗୀତାବାଣୀ ମନେ ପଡ଼େ,

'ଜାତସ୍ୟ ହି ଧ୍ରୁବୋ ମୃତ୍ୟୁଃ ଧ୍ରୁବଂ ଜନ୍ମ ମୃତସ୍ୟ ଚ,
ତସ୍ମାଦ୍‌ପରିହାର୍ଯ୍ୟେଽର୍ଥେ, ନ ତ୍ୱଂ ଶୋଚିତୁମର୍ହସି ।''

(ଗୀ: ୨।୨୭)

ଶ୍ରୀବିହାର କଲୋନୀ
କଟକ – ୭୫୩୦୦୮

# ପୃଥିବୀ ବାହାରେ...

**ଦୀପ୍ତି ପଟ୍ଟନାୟକ**

'ପୃଥିବୀ ବାହାରେ ମଣିଷ'ର ସ୍ରଷ୍ଟା ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଯେ ସତକୁସତ ତାଙ୍କର ପ୍ରିୟ କଟକ ସହରକୁ, ପ୍ରିୟ ବାସସ୍ଥାନ ଆମ୍ରପଲ୍ଲୀକୁ, ପ୍ରିୟ ଛାତ୍ରଛାତ୍ରୀ ଓ ସହକର୍ମୀମାନଙ୍କୁ ଏବଂ ସର୍ବୋପରି ତାଙ୍କ ଅତି ଆଦରର ସନ୍ତାନସନ୍ତତିମାନଙ୍କୁ ଛାଡ଼ି ପୃଥିବୀ ବାହାରକୁ ଚାଲିଯାଇଛନ୍ତି – କଥାଟା ଭାବିବା କେମିତି କଷ୍ଟଦାୟକ, ସେ କଥା ମୋ ପରି ତାଙ୍କର ସ୍ନେହଧନ୍ୟ ଲୋକମାନେହିଁ କେବଳ ବୁଝିପାରିବେ । ସାର୍ ଚାଲିଯାଇଛନ୍ତି ଆମମାନଙ୍କୁ ଛାଡ଼ି ପୃଥିବୀ ବାହାରକୁ ଭାବିଲେ, ମହାଶୂନ୍ୟ, ମୃତ୍ୟୁ ପରେ ଜୀବନ ଇତ୍ୟାଦି ବିଜ୍ଞାନଭିତ୍ତିକ ଭାବନା ଚେଷ୍ଟା କଲେ ମଧ୍ୟ ମନକୁ ଆସୁ ନାହିଁ । ଭାବିବାକୁ ଭଲ ଲାଗୁଛି ଯେ, ସାର୍ ସ୍ୱର୍ଗକୁ ଯାଇଛନ୍ତି ଓ ସେଠାରେ ତାଙ୍କୁ ତାଙ୍କର ପ୍ରେମମୟୀ ପତ୍ନୀ ଅତି ଆଗ୍ରହରେ ପାଛୋଟି ନେଇଛନ୍ତି । ଧାର୍ମିକ ମତବାଦ ଅନୁସାରେ ସାର୍‌ଙ୍କ ପରି ଜଣେ ସର୍ବଦା କର୍ମଚଞ୍ଚଳ, ଉଦାର ଓ ସ୍ନେହଶୀଳ ବ୍ୟକ୍ତିଙ୍କର ତ ଅକ୍ଷୟ ସ୍ୱର୍ଗବାସ ହେବା କଥା ।

ସାର୍ ଗଲା କେତେବର୍ଷ ଧରି ଅସୁସ୍ଥ ରହୁଥିଲେ ମଧ୍ୟ ନିରଳସ ଭାବରେ କାମ କରି ଚାଲିଥିଲେ । ଗତ ଦୁଇ ତିନି ବର୍ଷ ତଳେ ମଧ୍ୟ ସେ ଲେଖାଲେଖି କରୁଥିଲେ । ପ୍ରୁଫ୍ ସଂଶୋଧନ କରୁଥିଲେ ଏବଂ ସଭାସମିତି ଓ ଅନ୍ୟାନ୍ୟ ଉତ୍ସବ ଇତ୍ୟାଦିରେ ନିୟମିତ ଭାବରେ ଯୋଗ ଦେଉଥିଲେ । ତାଙ୍କୁ ବୟସ ହୋଇଥିଲା, ଅନେକ ସମୟରେ ଅସୁସ୍ଥତା ହେତୁ କଷ୍ଟ ପାଉଥିଲେ । ତେଣୁ ସେ ନିକଟରେ ଚାଲିଯିବେ, ସେକଥା ମନେହେବା ସ୍ୱାଭାବିକ । କିନ୍ତୁ ଏମିତି କେତେଜଣ ଅଛନ୍ତି, ଯେଉଁମାନଙ୍କର ଉତ୍ସାହ କାମ କରିବାପାଇଁ ଆଗ୍ରହ, ସବୁ ଅନୁଷ୍ଠାନରେ ଭାଗ ନେବାପାଇଁ ଇଚ୍ଛା ଓ ଜୀବନକୁ ଭଲପାଇବା, ବାର୍ଦ୍ଧକ୍ୟ ଓ ରୋଗକୁ ପରାସ୍ତ କରିଦିଏ । ସେହିପରି ଜଣେ ଚିର-ଯୁବକ ଥିଲେ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର । ତେଣୁ ସେ ଯେ ବାର୍ଦ୍ଧକ୍ୟଗ୍ରସ୍ତ ଓ ହୁଏତ ଖୁବ୍ ଶୀଘ୍ର ଆମମାନଙ୍କୁ ଛାଡ଼ି ଚାଲିଯିବେ, ସେକଥା ମନକୁ ଆସୁ ନ ଥିଲା । ତାଙ୍କର ନିକଟ ସମ୍ପର୍କରେ ଆସିଥିବା ଅନେକେ ମୋ ସହିତ ଏହି କଥାରେ ଏକମତ ହେବେ । ତାଙ୍କ ନାତିର ନିର୍ବନ୍ଧ ଉତ୍ସବରେ ତାଙ୍କର ଆନନ୍ଦୋଚ୍ଛଳ ମୁହଁ, ଉଦ୍ଦୀପନା କଥା ମନେପଡ଼ିଲେ ଲାଗୁଛି, ଯେମିତି ଆମେ ତାଙ୍କୁ ଅକାଳରେ ହରାଇଲୁ । ତାଙ୍କର ସ୍ନେହ, ସଙ୍ଗ, ସାହଚର୍ଯ୍ୟ ଆମର ଆହୁରି ଆବଶ୍ୟକ ଥିଲା । ଏପର୍ଯ୍ୟନ୍ତ ଆମର ତୃପ୍ତି ଆସି ନ ଥିଲା ।

ପ୍ରଫେସର ମହାପାତ୍ର ଯେ ଜଣେ ବିଶିଷ୍ଟ ଶିକ୍ଷାବିତ୍, ବୈଜ୍ଞାନିକ, ଲବ୍ଧପ୍ରତିଷ୍ଠ ଲେଖକ, ସମାଜସେବକ, ଓଡ଼ିଆ ବିଜ୍ଞାନ ସାହିତ୍ୟର ସ୍ରଷ୍ଟା ତଥା ବିଜ୍ଞାନକୁ ଓଡ଼ିଶାର ପୁରପଲ୍ଲୀରେ ମଧ୍ୟ ଲୋକପ୍ରିୟ କରିବାପାଇଁ ସଂକଳ୍ପବଦ୍ଧ ଜଣେ ନିରଳସ କର୍ମୀ ଥିଲେ, ସେକଥା ପ୍ରତିଟି ଓଡ଼ିଶାବାସୀ ଜାଣେ; କିନ୍ତୁ ମୋ ପାଇଁ ସେ ଥିଲେ ଏସବୁର ଊର୍ଦ୍ଧ୍ୱରେ । ମୋପାଇଁ ସେ ଥିଲେ ଜଣେ ପିତୃପ୍ରତିମ, ସ୍ନେହଶୀଳ ଓ ହୃଦୟବାନ୍ ମଣିଷ । ମୁଁ ଯେଉଁ ବୟସରେ ଆସି ପହଞ୍ଚିଛି, ସେତେବେଳେ ମୋର ବାପାଙ୍କ ବୟସର ଲୋକ ପ୍ରାୟ ନାହାନ୍ତି ବୋଲି କହିଲେ ଚଳେ । ମୋର ବାପାଙ୍କର ସମସାମୟିକ ଏବଂ ତାଙ୍କର ଭଦ୍ରକ ରହଣି ସମୟରେ ତାଙ୍କର ନିକଟ ସଂସ୍ପର୍ଶରେ ଆସିଥିବା ପ୍ରଫେସର ମହାପାତ୍ର ଆଉ ନାହାନ୍ତି ବୋଲି ଭାବିବା ବେଳକୁ ଲାଗୁଛି ଯେମିତି ମୁଁ ମୋ ବାପାଙ୍କୁ ଆଉଥରେ ହରାଇଲି । ଆମ୍ରପଲ୍ଲୀରେ ଆଉ ସେହି ଉଷ୍ମ ଆମନ୍ତ୍ରଣ ନାହିଁ ବୋଲି ଭାବିଲେ ମନକୁ ଗୋଟାଏ ଶୂନ୍ୟତାବୋଧ ଆବୋରି ବସୁଛି । ମୋ ପରି ଜଣେ ସାମାନ୍ୟ ଲୋକର

ଲେଖାଗୁଡ଼ିକ ପଢ଼ି ଉଚ୍ଛ୍ୱସିତ ପ୍ରଶଂସା କରିବା ପରି ଜଣେ ମହାନ୍ ଲୋକ ଆଉ ନାହାନ୍ତି, ସେକଥା ଭାବି ମୋତେ କ'ଣ ଲାଗୁଛି, ସେ କଥା ଲେଖି ବ୍ୟକ୍ତ କରି ହେବ ନାହିଁ ।

ସାର୍‌ଙ୍କର ମୁଁ ଛାତ୍ରୀ ଥିଲି ସତ, କିନ୍ତୁ ତାଙ୍କ ସହିତ ମୋର ପ୍ରକୃତ ସମ୍ପର୍କ ପ୍ରତିଷ୍ଠା ହେଲା ପ୍ରାୟ ସାତ ଆଠ ବର୍ଷ ତଳେ, ଯେତେବେଳେ ତାଙ୍କର ନାତୁଣୀର ବିବାହ ମୋ ପରିବାରରେ ହେଲା । ତରୁଣ ବୟସରେ ସାର୍‌ଙ୍କର ରୋମାଣ୍ଟିକ ବିଜ୍ଞାନଭିତ୍ତିକ ଉପନ୍ୟାସ ପଢ଼ି ବିନିଦ୍ର ରାତି ବିତାଇଛି, ମନଦେଇ ସାର୍‌ଙ୍କୁ ପାଠ ପଢ଼ାଇବାର ଶୁଣିଛି, ଅନେକ କଳ୍ପନାଜଳ୍ପନା ମଧ କରିଛି । ଭାବିଥିଲି ଏତେ ଗମ୍ଭୀର, ଭୟଉଦ୍ରେକକାରୀ ମଣିଷ କେମିତି ଏପରି ଉପନ୍ୟାସ ଲେଖିପାରିଲେ ? କିନ୍ତୁ ପରବର୍ତ୍ତୀ ସମୟରେ ଯେତେବେଳେ ସାର୍‌ଙ୍କ ପରିବାରର ନିକଟବର୍ତ୍ତୀ ହେଲି, ସେତେବେଳେ ସ୍ୱର୍ଗୀୟା କୁମୁଦିନୀ ଦେବୀ (ମାଉସୀ)ଙ୍କ ସହିତ କଥାବାର୍ତ୍ତା କରି ଜାଣିଲି ଯେ, ସାର୍ କେତେ ରୋମାଣ୍ଟିକ୍ ମିଜାଜର ଓ କୋମଳ ହୃଦୟର ମଣିଷ । ତା'ର ଟିକିନିଖି ବର୍ଣ୍ଣନା ମୁଁ ସ୍ୱାମୀ ଗର୍ବରେ ଗରବିଣୀ ମାଉସୀଙ୍କଠାରୁ ଶୁଣିଲି ଓ ପରେ ପରେ ଅନୁଭବ କଲି ମଧ । ସ୍ୱାମୀ ଭାବରେ, ବାପା ଭାବରେ, ଅଜା ଭାବରେ, ବନ୍ଧୁ ଭାବରେ, ସହକର୍ମୀ ଭାବରେ ଓ ସର୍ବୋପରି ଶିକ୍ଷକ ଭାବରେ ସେ ଥିଲେ ଅତୁଳନୀୟ । ତାଙ୍କ ପରି ଜୀବନର ପ୍ରତିଟି କ୍ଷେତ୍ରରେ ସଫଳ ହୋଇଥିବା ଏପରି ଜଣେ ମଣିଷର ସଂସ୍ପର୍ଶରେ ମୁଁ କେବେହେଲେ ଆସି ନ ଥିଲି । ମୁଁ ମୁଗ୍ଧ ହୋଇଯାଇଥିଲି । ସାର୍ ଥିଲେ ଜଣେ ସମ୍ପୂର୍ଣ୍ଣ ମଣିଷ ।

ସାର୍‌ଙ୍କ ପରି ମଣିଷ ହୁଏତ ଶହେ ବର୍ଷରେ ଜଣେ ଅଧେ ଜନ୍ମ ଗ୍ରହଣ କରନ୍ତି । ସେହି ବିଶାଳ ବ୍ୟକ୍ତିତ୍ୱ ବିଷୟରେ ଅନେକ କଥା ଲେଖା ହେବ, ଲିପିବଦ୍ଧ ହେବ ଓ ସେ ଇତିହାସରେ ପରିଣତ ହେବେ । ତେଣୁ ତାଙ୍କ ବିଷୟରେ ଅଧିକ କିଛି ଲେଖିବା ଧୃଷ୍ଟତା ହେବ । ସାର୍‌ଙ୍କ ପ୍ରତି, ତାଙ୍କର ପତ୍ନୀ ସ୍ୱର୍ଗୀୟା କୁମୁଦିନୀ ଦେବୀଙ୍କ ପ୍ରତି ମୋର ଗଭୀର କୃତଜ୍ଞତା ରହିଛି । ସେମାନଙ୍କର ସ୍ନେହର ବନ୍ଧନରେ ମୁଁ ସବୁଦିନପାଇଁ ବନ୍ଧା । ସେହି ମହାନ୍ ଆତ୍ମାମାନଙ୍କ ନିକଟରେ ମୁଁ ଗଭୀର ଶ୍ରଦ୍ଧାରେ ମଥାନତ କରୁଛି । ସ୍ୱର୍ଗରେ ଥାଇ ସେମାନେ ମୋତେ ଆଶୀର୍ବାଦ କରୁଥାଆନ୍ତୁ ଏତିକି କେବଳ ମୋର ପ୍ରାର୍ଥନା ।

ସାର୍‌ଙ୍କର ଶୋକାହତ ପରିବାରବର୍ଗଙ୍କୁ କ'ଣ ବା ସମବେଦନା ଜଣାଇବି, ସେମାନଙ୍କର ଅପୂରଣୀୟ କ୍ଷତି ଘଟିଗଲା । ସାର୍‌ଙ୍କର ପିଲାମାନେ ଯେମିତି ବାପା ପାଇଥିଲେ, ସେମିତି ଖୁବ୍ କମ୍ ଲୋକ ପାଆନ୍ତି । କେବଳ ଏତିକି ସେମାନଙ୍କୁ କହୁଛି ଯେ, ସେମାନଙ୍କର ଶୋକରେ ମୁଁ ମଧ ଜଣେ ସମଭାଗୀ ।

୩୮୯ ଡଲାର କଲୋନି
୧୧, କ୍ରସ୍
ବାଙ୍ଗାଲୋର-୯୪

# ନିଆରା ମଣିଷ ଆମ ସାର୍

**ଡକ୍ଟର ସୁବାସିନୀ ଲେଙ୍କା**

ଜୀବନ ଦୌଡ଼ରେ ୯୧ ବର୍ଷର ଯୁବକ, ଆମ ସମସ୍ତଙ୍କର ସମ୍ମାନନୀୟ, ଛାତ୍ରବତ୍ସଳ ମୋର ପୂଜ୍ୟ ଗୁରୁ ତଥା ସହକର୍ମୀ ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଜୀବନରେ ବିଶ୍ରାମ ଚାହିଁ ନ ଥିଲେ ।ସେ ଥିଲେ ଲମ୍ବା ରାସ୍ତାର ଯାତ୍ରୀ । ତାଙ୍କୁ ଟିକିଏ ବିଶ୍ରାମ ଦେବାପାଇଁ ମୃତ୍ୟୁ ତା' କୋଳକୁ ଟାଣିନେଇଛି । ସୌଭାଗ୍ୟର କଥା, ମହାନ୍ ଆତ୍ମାଙ୍କ ଯାତ୍ରାର ଶେଷ ତିଥିଟି ପଡ଼ିଛି ଶ୍ରୀ ଶ୍ରୀ ଜଗନ୍ନାଥଙ୍କର ପବିତ୍ର ରଥଯାତ୍ରା ତିଥିରେ । ଏମିତି ଏକ ପବିତ୍ର ତିଥିରେ ମହାପ୍ରଭୁ ଭାଇଭଉଣୀଙ୍କ ସହିତ ନିଜ ଜନ୍ମସ୍ଥାନ ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରୁଥିବା ସମୟରେ ବିଜ୍ଞାନ ସାହିତ୍ୟର ସ୍ରଷ୍ଟା, ମାତୃଭାଷାପ୍ରେମୀ ତଥା ବିଜ୍ଞାନ ପ୍ରଚାର ସମିତିର ପ୍ରାଣପ୍ରତିଷ୍ଠାତା ଡଃ ମହାପାତ୍ର ମହାଯାତ୍ରା କରିଥିଲେ ନିଜ ବାଣୀମନ୍ଦିର 'ଆମ୍ରପଲ୍ଲୀ'କୁ । ସାଙ୍ଗରେ ଥିଲେ ଦୁଇ ସୁପୁତ୍ର ଓ ପରିବାରବର୍ଗ । ଈଶ୍ୱରଙ୍କର କି ସଂଯୋଜନା !

କେବଳ କଟକ ସହରରେ ନୁହଁ ଆଜି ସାରା ଓଡ଼ିଶାରେ ଗୁଞ୍ଜରିତ ତାଙ୍କ ସାରସ୍ୱତ କୃତି । ମୃତ୍ୟୁ ଆପଣେଇ ନେଇଛି ତାଙ୍କ ପାର୍ଥିବ ଶରୀର – କିନ୍ତୁ ସେ ରହିଯାଇଛନ୍ତି ତାଙ୍କ ଲେଖନୀରୁ ସୃଷ୍ଟ ବୈଜ୍ଞାନିକ ଉପନ୍ୟାସ – 'ପୃଥିବୀ ବାହାରେ ମଣିଷ', 'ଉଡ଼ନ୍ତା ଥାଳିଆ', 'କୃତ୍ରିମ ଉପଗ୍ରହ', 'ଚନ୍ଦ୍ରର ମୃତ୍ୟୁ', 'ନିସ୍ତବ୍ଧ ଗୋଧୂଳି', 'ନୋବେଲ ପୁରସ୍କାର ବିଜେତା ରସାୟନବିଜ୍ଞାନୀ', 'ଶିଶୁ ଗଳ୍ପ' – 'ତୁମକୁ ସତ ମୋତେ ମିଛ', 'କିଏ ବେଶି ଭାରୀ', 'ଛବି କେମିତି କଥା କହେ' ଭ୍ରମଣ କାହାଣୀ – 'ନୀଳଚକ୍ର ସେପାରେ', 'ପାଶ୍ଚାତ୍ୟ ସ୍ମୃତି', ଅନୂଦିତ ପୁସ୍ତକ – 'ବିଜ୍ଞାନର ଦୃଶ୍ୟ', ନାଟକ – 'ରାଜନର୍ତ୍ତକୀ' ଇତ୍ୟାଦି ୮୦ରୁ ଅଧିକ ପୁସ୍ତକର ହଜାର ହଜାର ପୃଷ୍ଠା ମଧ୍ୟରେ । ସେ ରହିଯାଇଛନ୍ତି ପୁରପଲ୍ଲୀର ସମସ୍ତଙ୍କ ହୃଦୟରେ, ତାଙ୍କ ବଗିଚାର ସୁଗନ୍ଧରାଜ ଓ ରଜନୀଗନ୍ଧାର ବାସ୍ନାରେ ।

ଏଇତ କାଲିର କଥା । ପ୍ରାତଃଭ୍ରମଣରୁ ଫେରି ହାଲିଆହୋଇ ବିଛଣାରେ ଟିକିଏ ଗଡ଼ିପଡ଼ିଲି । ହଠାତ୍ କାହିଁକି କେଜାଣି ଆଖି ଆଗକୁ ଚାଲିଆସିଲେ ସାର୍ ଓ 'ଆମ୍ରପଲ୍ଲୀ' । ଅନେକ କଥା ଭାସିଉଠିଲା ମୋ ମାନସପଟରେ । ଉନ୍ନତମାନର ଗବେଷଣା ଓ ଜନପ୍ରିୟ ବିଜ୍ଞାନ ସାହିତ୍ୟର ପ୍ରଚାର ଓ ପ୍ରସାର ନିମନ୍ତେ ବହୁ ମର୍ଯ୍ୟାଦାପୂର୍ଣ୍ଣ ସମ୍ମାନ, ଯଥା – କୁପର ସ୍ମୃତି ସ୍ୱର୍ଣ୍ଣ ପଦକ, ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ସାମନ୍ତ ଚନ୍ଦ୍ରଶେଖର ପୁରସ୍କାର, କଳିଙ୍ଗ ସମ୍ମାନ, ସାରଳା ପୁରସ୍କାର, ପ୍ରାଣକୃଷ୍ଣ ପରିଜା ସ୍ମୃତି ସମ୍ମାନ, ଉତ୍କଳ ଓ ରେଭେନ୍ସା ବିଶ୍ୱବିଦ୍ୟାଳୟରୁ ସମ୍ମାନଜନକ ଡକ୍ଟରେଟ୍ ଡିଗ୍ରୀ ଇତ୍ୟାଦି ପାଇଥିବା ବ୍ୟକ୍ତି ଆଜି ନିରବ, ନିଶ୍ଚଳ । ବିଜ୍ଞାନ ସେବା ମାଧ୍ୟମରେ ମାନବ ସେବାକୁ ଆଦରି ନେଇଥିବା, ଦେଶମାତୃକାର ବୈଜ୍ଞାନିକ ବୈଭବକୁ ସମୃଦ୍ଧ କରିଥିବା, ବାସ୍ତବଧର୍ମୀ ଏବଂ କର୍ମକୁ ଭଗବାନ୍ ମଣୁଥିବା ପ୍ରତିଭାର ପୂଜାରୀ ଆଜି ସୁଦୂର ଅହମଦାବାଦରେ ଭାଷାଶୂନ୍ୟ । ପ୍ରଭୁ, ତୁମର ଏ' କି କଠୋର ଶାସ୍ତି ? ଏମିତି ଏକ ଭାବନାରେ ମୁଁ ବୁଡ଼ି ଯାଇଥିବାବେଳେ ମୋ ସ୍ୱାମୀ ମୋ ପାଖରେ ବସିପଡ଼ିଲେ ଏବଂ 'ବ୍ୟସ୍ତ ହେବନି' କହି ସାର୍‌ଙ୍କର ମହାଯାତ୍ରାର ଖବରଟି ଜଣେଇଲେ । ଏ' କି ଟେଲିପାଥି ସତରେ ! ମନେହେଲା, ହୁଏତ ଶେଷ ନିଃଶ୍ୱାସ ତ୍ୟାଗ କଲାବେଳେ ସାର୍‌ଙ୍କର ଅମର କୀର୍ତ୍ତି 'ବିଜୟ ଗୋବିନ୍ଦ ଭବନ' ତାଙ୍କ ଆଖି ସାମ୍ନାକୁ ଚାଲି ଆସିଥିବ । ସେହି ଭବନରେ ମୋର ଗଳ୍ପ ସଂକଳନ ଉନ୍ମୋଚନ ଖବର ଶୁଣି ଡଃ ବିଜୟ ପଟ୍ଟନାୟକଙ୍କୁ ଶେଷଥରପାଇଁ ଯେଉଁ ଖୁସି ସେ ଜଣେଇଥିଲେ ତାହା ତାଙ୍କର ମନେପଡ଼ି ଯାଇଥିବ – ଇତ୍ୟାଦି ଇତ୍ୟାଦି । ଏସବୁ ମୋ ମନ ଭିତରେ ପ୍ରତିଫଳିତ ହୋଇଥିବ । ସେଥିପାଇଁ କିଛି ସମୟ ସେ ଓ ତାଙ୍କ କୀର୍ତ୍ତିରାଜି ମୋ ସାମ୍ନାରେ ଆଗପଛ ହୋଇ ଧାଡ଼ି ବାନ୍ଧିଲେ । ମୋ ଆଖିରୁ ଝରିପଡ଼ିଲା କେଇ ଠୋପା ଲୁହ । ମଣିଷ ଜୀବନ ଓ ତା'ର ଗୁଣାବଳୀକୁ ନେଇ ଏକ ସମୀକ୍ଷା ଦୋହରେଇ ହେଲା ମୋ ମନରେ ।

ତାଙ୍କର କେତେ ସ୍ମୃତି ଆଜି ମୋ ହୃଦୟରେ ଉଜ୍ଜୀବିତ । ରେଭେନ୍ସା କଲେଜରେ ନାମ ଲେଖାଇବା ପରେ ପ୍ରଥମ ଅନର୍ସ ପ୍ରାକ୍ଟିକାଲ କ୍ଲାସରେ ସେ ଜାଣିଲେ ମୁଁ ତାଙ୍କ ଅଞ୍ଚଳର ଝିଅ, ତାଙ୍କର ପରିଚିତ ଆମ ଅଞ୍ଚଳର ଜମିଦାର ରାୟବାହାଦୁର୍ ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ର ମୋର ଦୂର ସମ୍ପର୍କୀୟ, ଏବଂ ସେ ଜାଣିଥିବା ଏକ ନିପଟ ମଫସଲରୁ ଆସି ମୁଁ ରେଭେନ୍ସା କଲେଜରେ ପଢୁଛି ଇତ୍ୟାଦି । ଏସବୁ ଆଲୋଚନା ସମୟରେ ମୁଁ ଅନୁଭବ କରୁଥିଲି ସତେ ଯେମିତି ତାଙ୍କର ଶ୍ରଦ୍ଧା ଓ ଅନୁକମ୍ପା ମୋ ଉପରେ ଅଜାଡ଼ି ପଡୁଛି । ତାଙ୍କ ଭଳି ଶାନ୍ତ, ଧୀରସ୍ଥିର, ଅମାୟିକ ବିଜ୍ଞ ବ୍ୟକ୍ତିତ୍ୱଙ୍କ ପାଖରେ ମୋ ମୁଣ୍ଡ ନଇଁ ଯାଇଥିଲା ସେଦିନ । ସୌଭାଗ୍ୟବଶତଃ ମୁଁ ରେଭେନ୍ସା କଲେଜରେ ଅଧ୍ୟାପିକା ହେଲି । ସେ ମୋର ସହକର୍ମୀ ତଥା ବିଭାଗୀୟ ମୁଖ୍ୟ ହେଲେ । ମୁଁ ତାଙ୍କର ଆହୁରି ନିକଟତର ହୋଇଗଲି । ପ୍ରଥମ ପ୍ରାକ୍ଟିକାଲ କ୍ଲାସ୍ ନେବାକୁ ମୋତେ ମିଳିଲା ତାଙ୍କ ସହିତ । ଆମ ଅଞ୍ଚଳ କଥା, ତଥା ଆମ ଗାଁରେ ଥିବା ତାଙ୍କ ବନ୍ଧୁ ଘର କଥା ଉପରେ ଅନେକ ଗପସପ ହେଲୁ । ମୁଁ ଅନେକ ଫ୍ରି ହୋଇଗଲି ତାଙ୍କ ସହିତ । ସେହିଦିନ ପ୍ରାକ୍ଟିକାଲ କ୍ଲାସର ଟେବୁଲ୍ ଧାରରେ ଆଙ୍ଗୁଳିରେ ବାଜା ବଜାଇ ଗୁଣୁ ଗୁଣୁ ସ୍ୱରରେ ଗୀତ ଗାଇବା ଦେଖି ମୁଁ ଜାଣିଲି ସେ ଜଣେ ସଙ୍ଗୀତପ୍ରେମୀ ଏବଂ ଖୁସ୍‌ବାସ୍‌ର ମଣିଷ ଏବଂ ଦୁଃଖ ତାଙ୍କୁ ଛୁଇଁନି ।

ଅଳ୍ପଦିନ ତଳର ଆଉ ଏକ ସ୍ମୃତି – ମୋ ଆତ୍ମଜୀବନୀ ପୁସ୍ତକ 'ପଥ ଅସରନ୍ତି'ର ମୁଖବନ୍ଧ ଲେଖିବାକୁ ତାଙ୍କୁ ଅନୁରୋଧ କଲି । ଦୁଇ ଝିଅ ତାଙ୍କର ବସିଥାନ୍ତି ତାଙ୍କ ସାମନାରେ । "ବାପା, ସୁବାସିନୀ ଅପାଙ୍କର ଭଲ ମୁଖବନ୍ଧଟିଏ ଲେଖିବେ" – ଏହା ଥିଲା ଝିଅମାନଙ୍କର ଅଳି । ସେଦିନ ତାଙ୍କ ଓଠରୁ ଝରିପଡ଼ିଥିବା କେତୋଟି ଶବ୍ଦ ମୁଁ ସାଉଁଟି ପକେଇଥିଲି ମୋ ପଣତକାନିରେ । "ଆରେ ସେ ଭଦ୍ରକ ଝିଅ – ମୁଁ ତାକୁ ମୂଳରୁ ଶ୍ରଦ୍ଧା କରେ । ବିଜ୍ଞାନ ପ୍ରଚାର ସମିତିର ସଂପାଦିକା ଭାବରେ ସେ ଅନେକ କାମ କରିଛି ।" ଜଣେ ଗୁଣୀ, ଜ୍ଞାନୀ, ଅମାୟିକ ବ୍ୟକ୍ତିଙ୍କଠାରୁ ଏମିତି ମନଖୋଲା ସ୍ମିତହାସ୍ୟ କଥା ଶୁଣି ମୋ ବହି ଲେଖା ସାର୍ଥକ ହୋଇଛି ବୋଲି ମୁଁ ସେଦିନ ଭାବିଥିଲି ।

ଆଜି ମନେପଡୁଛି, ମୋ ପିଏଚ୍.ଡି. ଡିଗ୍ରୀ ମୌଖିକ ପରୀକ୍ଷା କଥା । ବୋଧହୁଏ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ପାଇଥିବା ଗବେଷକଙ୍କ ମଧ୍ୟରେ ମୁଁ ଥିଲି ପ୍ରଥମ, ଯେ ବିଶ୍ୱବିଦ୍ୟାଳୟ ବାହାରେ ପରୀକ୍ଷା ଦେବାପାଇଁ ଅନୁମତି ପାଇଥିଲା । ମୁଁ ପରୀକ୍ଷା ଦେଲି ରେଭେନ୍ସା କଲେଜର ରସାୟନ ବିଜ୍ଞାନ ବିଭାଗରେ । ବିଭାଗୀୟ ମୁଖ୍ୟ ଥାଆନ୍ତି ସାର୍ । ତାଙ୍କ ପରମବନ୍ଧୁ ପ୍ରଫେସର ସୁକୁମାର ଆଦିତ୍ୟ କଲିକତାରୁ ଆସିଥାନ୍ତି ପରୀକ୍ଷକଭାବରେ । ପ୍ରଫେସର ଆଦିତ୍ୟ ତାଙ୍କୁ ମଧ୍ୟ ପରୀକ୍ଷା କରିବାପାଇଁ ଡାକିଥିଲେ । ସେଦିନ ସାର୍ ମୋତେ ଯେଉଁସବୁ ପଲିମରର ମୌଳିକ ପ୍ରଶ୍ନ ପଚାରି ଖୁସି ହୋଇଥିଲେ ତାହା ମୁଁ ଭୁଲିନି । ଶେଷରେ କହିପକେଇଥିଲେ, "ସେ ଆମ ଭଦ୍ରକ ଝିଅ ।" ମୋ ଖୁସି ସେଦିନ କହିଲେ ନ ସରେ ।

ଗୋକୁଳାନନ୍ଦ ସାର୍‌ଙ୍କ ଅବଦାନ ଆଜି ଓଡ଼ିଶାର ପ୍ରତି କୋଣ ଅନୁକୋଣରେ ବିଚ୍ଛୁରିତ । ତାଙ୍କ ସୃଜନିକାପାଇଁ ସେ ଚିରଜୀବିତ ପୁରପଲ୍ଲୀରେ । ଖାଲି ସେତିକି ନୁହଁ, ତାଙ୍କ ମଣିଷପଣିଆରେ ସେ ବନ୍ଧା ସମସ୍ତଙ୍କ ପାଖରେ । ଈଶ୍ୱରଙ୍କର ବରଦାନପ୍ରାପ୍ତ ସେ । ଆଜିଭଳି ପଙ୍କିଳ ଦୁନିଆରେ କେତେଜଣ ପିତାମାତା ସନ୍ତାନମାନଙ୍କଠାରୁ ଯଥୋଚିତ ସେବାଯତ୍ନ ପାଉଛନ୍ତି । କିନ୍ତୁ ସାର୍‌ଙ୍କ ଜୀବନ ଥିଲା ନିଆରା । ଶେଷପର୍ଯ୍ୟନ୍ତ କନ୍ୟାମାନଙ୍କର, ବିଶେଷକରି ଦୁଇ ପୁତ୍ରଙ୍କର ଅଗାଢ଼ ଯତ୍ନ ପ୍ରକୃତରେ ଆଜିର ପିଢ଼ିପାଇଁ ଶିକ୍ଷଣୀୟ ବିଷୟ । ଧନ୍ୟ ହୋଇଯାଇଛି ତାଙ୍କ ଜୀବନ, ଧନ୍ୟ ହୋଇଯାଇଛି ତାଙ୍କ ପିତୃତ୍ୱ ।

ଆଜିର କଥା – 'ଆମ୍ରପଲ୍ଲୀ'ରେ ଦେବ, ଦେବୀ (ମାଡାମ୍) ନାହାନ୍ତି ସତ, କିନ୍ତୁ ସେମାନଙ୍କର ମହକିତ ସ୍ମୃତି ବିଛେଇ ଯାଇଛି ଘରସାରା । ଆଜି ଶ୍ରୀ ଶ୍ରୀ ବଡ଼ଠାକୁର ଶ୍ରୀମନ୍ଦିରର ରତ୍ନସିଂହାସନରେ ନାହାନ୍ତି, କିନ୍ତୁ ଭକ୍ତମାନଙ୍କର ସୁଅ ଛୁଟୁଛି ଶ୍ରୀମନ୍ଦିରକୁ । ଠିକ୍ ସେମିତି, 'ଆମ୍ରପଲ୍ଲୀ'ରେ ପାଦ ପଡୁଛି ତାଙ୍କ ସମସ୍ତ ଶୁଭେଚ୍ଛୁଙ୍କର । ତାଙ୍କୁ ଭକ୍ତିପୂତ ପ୍ରଣାମ ଜଣାଉଛି । ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ପାଖରେ ତାଙ୍କ ଆତ୍ମାର ସଦ୍‌ଗତିପାଇଁ ପ୍ରାର୍ଥନା କରୁଛି ।

ଅବସରପ୍ରାପ୍ତ ପ୍ରାଧ୍ୟାପିକା
ରସାୟନ ବିଜ୍ଞାନ ବିଭାଗ, ରେଭେନ୍ସା କଲେଜ

# ଜଣେ ସ୍ନେହୀ ଭଲ ମଣିଷ ଚାଲିଗଲେ....

**ଶ୍ରୀ ବରଦାପ୍ରସନ୍ନ ପଟ୍ଟନାୟକ**

ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କର ତିରୋଧାନ ଗତ ୧୦ତାରିଖ ବୁଧବାର ରାତ୍ର ୯.୨୦ ମିନିଟ୍‌ରେ ଅହମଦାବାଦର ଏକ ହସ୍‌ପିଟାଲରେ ହୋଇଗଲା । ସେହିଦିନ ରାତିରେ ଏହା ସମସ୍ତଙ୍କୁ ଜଣାଇ ଦିଆଗଲା । ୧୧ତାରିଖ ସକାଳେ ଏହି ଦୁଃସମ୍ବାଦ ପାଇ ମର୍ମାହତ ହେଲି । ଶୁଣିଲି ବ୍ରେନ ହେମରେଜ ହୋଇ ବ୍ଲଡ କ୍ଲଟିଂ କରିଯାଇଥିବାରୁ ଅହମଦାବାଦର ଏକ ସ୍ୱନାମଧନ୍ୟ ହସ୍‌ପିଟାଲରେ ଅପରେଶନ ହୋଇଥିଲା ଏବଂ ସଫଳ ହୋଇଥିଲା । ଚେତାଶୂନ୍ୟ ହୋଇ ସେ ଭେଣ୍ଟିଲେଟରରେ ଥିଲେ । ତାଙ୍କ ସାନ ପୁଅ ବାବୁଲି (ନନ୍ଦନନ୍ଦନ) ମୋତେ ଜଣାଇଥିଲା ଯେ କ୍ରମଶଃ ଭଲଆଡ଼କୁ ଆସୁଛନ୍ତି, କିନ୍ତୁ 'ବିଧିର ବିଧାନ କେ କରିବ ଆନ' । ସେ ଚିରନିଦ୍ରା ଗଲେ । ଏହି ଖବର ବିଜୁଳିବେଗରେ ପ୍ରଚାରିତ ହୋଇଥିଲା । ଆମ ଘରେ ସମସ୍ତଙ୍କୁ ଏହା ଜଣାଇଦେଲି । କାରଣ ସେ ଥିଲେ ମୋର ସମ୍ପର୍କୀୟ ପିଉସା । ପିଉସୀ କୁମୁଦିନୀ (କୁମ) ଅପାକୁ ବିବାହ କରିଥିଲେ । ତାଙ୍କ ପରିବାର ସହିତ ଆମ ପରିବାରର ସମ୍ପର୍କ ପ୍ରାୟ ସାତ ଦଶନ୍ଧିରୁ ଊର୍ଦ୍ଧ୍ୱ । ୨୦୦୬ ଅକ୍ଟୋବର ୧୭ ତାରିଖରେ କୁମଅପା ଚାଲିଗଲେ । ତାଙ୍କର ମୃତ୍ୟୁରେ ପିଉସା ଭାଙ୍ଗି ପଡ଼ିଥିଲେ । ଝୁରି ହେଉଥିଲେ । ମୋ ପାଖରେ ତାଙ୍କର ଗୁଣାବଳୀ ବଖାଣୁଥିଲେ । ଏସବୁକୁ ମନେ ପକାଇ ମୋ ଆଖିରୁ ଅମାନିଆଁ ହୋଇ କେତେଟୋପା ଲୁହ ବୋହିଗଲା । ଭାବିଲି ସେ କଅଣ ଆଉ ଅପେକ୍ଷା କରିବାକୁ ମନେ କଲେ ନାହିଁ ? ନା ଅନ୍ୟତ୍ର ଜରୁରୀ କାମର ଡାକରା । କିଏ କହିବ ? ସେ ଅନନ୍ତ ପ୍ରଶ୍ନର ଉତ୍ତର କାହା ପାଖରେ ନାହିଁ । ଗୌତମ ବୁଦ୍ଧଙ୍କଠାରୁ ଆରମ୍ଭ କରି ଶଙ୍କରାଚାର୍ଯ୍ୟଙ୍କ ପର୍ଯ୍ୟନ୍ତ । ମୋତେ ଓ ମୋ ପରିବାରକୁ ପିଉସା ଓ ଅପା ଖୁବ୍ ଭଲପାଉଥିଲେ । ମୋ' ବାହାଘରରେ ସେ ଓ ଅପା ପାଖେ ପାଖେ ରହି ସାହାଯ୍ୟ, ସହଯୋଗ କରିଥିଲେ ସେ ସବୁ ଆଖି ଆଗରେ ନାଚିଯାଉଛି ।

"ବନ୍ଧୁ ତୁ ତ ଅନୁଭବୀ ନୋହୁ
ସ୍ନେହଜାତ ସୁଖ ତା' ବିଚ୍ଛେଦ ଦୁଃଖ
ଯେ ଜାଣେ ସେ ଆସି କହୁ ।"

– ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

ଶୁଣିଲି ତାଙ୍କ ମରଶରୀରକୁ ଦୁଇ ପୁଅ ଓ ସାନ ବୋହୂ ବମ୍ବେରୁ ଫ୍ଲାଇଟ୍‌ରେ ଆଣି ଦିନ ଗୋଟାଏ ସୁଦ୍ଧା ଭୁବନେଶ୍ୱରରେ ପହଞ୍ଚାଇବେ ଓ ସେଠାରୁ କଟକ ଅଣାଯିବ । ଯେହେତୁ ପିଉସା ଆମ ସାହିତ୍ୟ ଅନୁଷ୍ଠାନ 'ସ୍ୱାଗତିକା'ର ସଭାପତି ଥିଲେ, ତେଣୁ 'ସ୍ୱାଗତିକା'ର ସମସ୍ତ କର୍ମକର୍ତ୍ତା ସଭ୍ୟ-ସଭ୍ୟାମାନଙ୍କୁ ଏହା ଜଣାଇଦେଲି । ଉପସଭାପତି ପୁଷ୍ପା ସିଂଘୀ, ଉପସଭାପତି ସଲିମ୍ ଅଖତାର୍, କାର୍ଯ୍ୟକାରୀ ସଭାପତି ଶ୍ରୀକବି ଚକ୍ରଧର ଦାସ ଏହି ଖବର ଶୁଣି ମର୍ମାହତ ହେଲେ ।

ପ୍ରାୟ ଦିବା ଘ ୩.୩୦ରେ ମରଶରୀର ବାଣୀବିହାର ପରିସର ଓ ରେଭେନ୍‌ସା ବିଶ୍ୱବିଦ୍ୟାଳୟ ପରିସର ଦେଇ ଦୋଳମୁଣ୍ଡାଇସ୍ଥ ଆମ୍ରପଲ୍ଲୀ ବାସଭବନରେ ପହଞ୍ଚିଲା । 'ସ୍ୱାଗତିକା' ଅନୁଷ୍ଠାନ, 'ବିଜ୍ଞାନ ପ୍ରଚାର ସମିତି' ତଥା ବହୁ ଅନୁଷ୍ଠାନ ପକ୍ଷରୁ ଶବାଧାରରେ ପୁଷ୍ପମାଲ୍ୟ ଅର୍ପଣ କରାଗଲା । ସନ୍ଧ୍ୟା ପୂର୍ବରୁ ଶବ ଶୋଭାଯାତ୍ରା ଆରମ୍ଭ ହେଲା । ବଡ଼ପୁଅ ଡାକ୍ତର ଗିରିଜାନନ୍ଦନ (ବଙ୍କୁ) ଖଇ, କଉଡ଼ି, ବିଞ୍ଚି, ବିଞ୍ଚି ଆଗରେ ଚାଲୁଥାନ୍ତି । ଶବବାହାକ ଓ ଆମେ ସମସ୍ତେ 'ରାମ ନାମ ସତ୍ୟ ହେ, ହରିନାମ ସତ୍ୟ ହେ' ହରିବୋଲି ଧ୍ୱନି ଦେଇ ଚାଲୁଥାଉ । ଏହି ଦୃଶ୍ୟ ତଥା ପୁତ୍ର, କନ୍ୟା, ପରିବାରବର୍ଗଙ୍କ କ୍ରନ୍ଦନ ପରିବେଶକୁ

ବିଷାଦଗ୍ରସ୍ତ କରିଦେଇଥାଏ । ମରଶରୀରକୁ ଖାନନଗର ଶ୍ମଶାନକୁ ନିଆଗଲା । ବିଧି ଅନୁଯାୟୀ ପୂଜାପାଠ କରାଯିବାପରେ ବଡ଼ ପୁଅ ବଙ୍କୁ ମୁଖାଗ୍ନି ଦେଇଥିଲେ । କଟକରେ ଦୀର୍ଘଦିନ ବସବାସ କରିଥିବାରୁ ଏହାର ମାଟି ମଟାଳ ପ୍ରତି ପିଉସାଙ୍କ ମମତା ଥିଲା । ସେଇଥିପାଇଁ ତାଙ୍କର ମରଶରୀରକୁ ଖାନନଗର ଶ୍ମଶାନରେ ଦାହ କରାଯିବାକୁ କହିଯାଇଥିଲେ । କାରଣ ସେ ମୃତ୍ୟୁକୁ ଜାଣିପାରିଥିଲେ । ଲେଲିହାନ ଶିଖା ନିମିଷେକ ମଧ୍ୟରେ ପାର୍ଥିବ ଶରୀରକୁ ପୋଡ଼ି ପାଉଁଶ କରିଦେଲା । ଶବ ପାଖରେ ରୁଣ୍ଡ ହୋଇଥିବା ମୋ' ସହିତ ସମସ୍ତଙ୍କ ମୁହଁରୁ ବାହାରୁଥିଲା – ଜଣେ ସ୍ନେହୀ, ଦରଦୀ ଭଲ ମଣିଷ ଚାଲିଗଲେ । କାନ୍ଦିବାକୁ ମନ ଡାକୁଥାଏ, କୋହ ଉଠୁଥାଏ, କିନ୍ତୁ ପର ମୁହୂର୍ତ୍ତରେ ମନେ ପଡୁଥାଏ, ସମସ୍ତଙ୍କୁ ତ ଯିବାକୁ ହେବ ! ସେ ଅବା ରହିବେ କିପରି ?

''ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟ ଚ'' –

ଗୀତା

ପ୍ରକୃତିସ୍ଥ ହେଲି । ଜୀବନର ତଟରେ ସେ ବଞ୍ଚି ରହିବେ କେତେ ଦିନ ? ସେସବୁଦିନ ପାଇଁ ଚାଲିଯାଇଛନ୍ତି କିନ୍ତୁ ରଖିଯାଇଛନ୍ତି ବହୁ ସ୍ମୃତି ଯାହା ଇତିହାସ ହୋଇ ରହିଯାଇଛି ! ସେଇ ସାଇତା ସ୍ମୃତିରୁ କିଛି ଏଠାରେ ଅବତାରଣା କରୁଛି ।

ଫକୀରମୋହନ କଲେଜ ବାଲେଶ୍ୱରରେ ବିଜ୍ଞାନର ଛାତ୍ର ଥିଲି । ୧୯୫୪ କଲେଜ ଇଉନିୟନ ନିର୍ବାଚନରେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ସାହିତ୍ୟିକ ମନୋଜ ଦାସଙ୍କୁ ଜିତାଇ ସଭାପତି କରିଥାଉଁ । କଲେଜର ବାର୍ଷିକ ଉତ୍ସବରେ ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କୁ ମୁଖ୍ୟ ଅତିଥି କରି ନିମନ୍ତ୍ରଣ କରିବାକୁ ସ୍ଥିର ହେଲା । ଏହି ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଗଲା । ଏହା ପୂର୍ବରୁ ବିଜ୍ଞାନ ସମ୍ବନ୍ଧୀୟ ବକ୍ତୃତା ପ୍ରାୟ ହେଉ ନ ଥିଲା । ଏହି ନିମନ୍ତ୍ରଣକୁ ସେ ସାଦରେ ଗ୍ରହଣ କଲେ । ତାଙ୍କର ଶ୍ରେଷ୍ଠ ଉପନ୍ୟାସ 'ଉଡ଼ନ୍ତା ଥାଳିଆ' ଉପରେ ସାରଗର୍ଭକ ଭାଷଣ ପ୍ରଦାନ କଲେ । ମୋ ଦେଖିବାରେ ହଲଟି ଭରପୂର ହୋଇଯାଇଥିଲା । କଳା ଓ ବିଜ୍ଞାନ ଶ୍ରେଣୀର ଛାତ୍ର–ଛାତ୍ରୀମାନେ ଏହାକୁ ମନୋଯୋଗ ଦେଇ ଶୁଣୁଥିବାର ଦୃଶ୍ୟ ମୋର ମନେ ଅଛି । ମନୋଜବାବୁ କହିଥିଲେ ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ ବକ୍ତୃତାରେ ପ୍ରାଣ ଥିଲା, ସ୍ପନ୍ଦନ ବି ଥିଲା – ସେଇଥିପାଇଁ ହଲ ପୂର୍ଣ୍ଣ ହୋଇଯାଇଥିଲା । ସେତେବେଳେ ପିଉସା ମୋତେ ପଚାରିଥିଲେ ପିଲାମାନେ ଏହି ବକ୍ତୃତାକୁ କିପରି ଗ୍ରହଣ କଲେ ? ମୁଁ କହିଥିଲି ପିଲାମାନେ ସମସ୍ତେ ଧୀରସ୍ଥିର ହୋଇ ମନ ଦେଇ ଶୁଣୁଥିଲେ ଏବଂ ସମସ୍ତେ ଉଦ୍‌ବୁଦ୍ଧ ହୋଇଥିଲେ ।

ସେ ଥିଲେ ଛାତ୍ରବତ୍ସଳ ଅଧ୍ୟାପକ । ଗରିବ ମେଧାବୀ ଛାତ୍ରଛାତ୍ରୀଙ୍କ ପ୍ରତି ଅନୁକମ୍ପା ଥିଲା । କୁଆଁସ ଗ୍ରାମ ତଥା ଆଖପାଖ ଗ୍ରାମର ବହୁ ଛାତ୍ର–ଛାତ୍ରୀଙ୍କୁ ଆଥିକ କିମ୍ବା ବହି, ପତ୍ର ଯୋଗାଣ ମାଧ୍ୟରେ ସାହାଯ୍ୟ ଦେଇଥିବା ମୁଁ ଜାଣେ । ନିଜେ ମେଧାବୀ ଛାତ୍ର ଥାଇ ନିମ୍ନ ପ୍ରାଇମେରୀ ଠାରୁ କଲେଜ ଶେଷ ପର୍ଯ୍ୟନ୍ତ ସେ ବୃତ୍ତି ପାଇ ପାଠ ପଢ଼ିଛନ୍ତି । ଏଣୁ ଛାତ୍ର–ଛାତ୍ରୀମାନଙ୍କ ମେଧାକୁ ସେ ସ୍ୱୀକୃତି ପ୍ରଦାନ କରୁଥିଲେ । ଏହାହିଁ ତାଙ୍କର ବିଶେଷତ୍ୱ । ନିଜେ ବିଜ୍ଞାନର ପ୍ରଫେସର ଥିବାରୁ ବିଜ୍ଞାନକୁ ଜନପ୍ରିୟ କରାଇବାପାଇଁ ସେ ଗଠନ କରିଥିଲେ 'ବିଜ୍ଞାନ ପ୍ରଚାର ସମିତି' ଏବଂ ସେ ଥିଲେ ଏହାର ପ୍ରତିଷ୍ଠାତା । ତାଙ୍କର ବହୁ ଛାତ୍ର–ଛାତ୍ରୀ ଏଥିରେ ସଭ୍ୟ ରହି ଏହାର ଅଭିବୃଦ୍ଧିରେ ସହାୟକ ହୋଇଛନ୍ତି । ବହୁ ଅନୁଷ୍ଠାନର ସେ ପ୍ରତିଷ୍ଠାତା ତଥା ମ୍ୟାନେଜିଙ୍ଗ ଟ୍ରଷ୍ଟି । ବଡ଼ଭାଇ ନିତ୍ୟାନନ୍ଦଙ୍କ ନାମରେ କୁଆଁସ ଗ୍ରାମରେ ପ୍ରତିଷ୍ଠା କରିଯାଇଛନ୍ତି ନିତ୍ୟାନନ୍ଦ ଭବନ । ଏହା ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଅଗ୍ରଣୀ ଅନୁଷ୍ଠାନ । ସେହିପରି ମା' ଫୁଳ ଦେବୀଙ୍କ ନାମରେ ପ୍ରତିଷ୍ଠା କରିଯାଇଛନ୍ତି 'ଫୁଳ ଦେବୀ ସ୍ମୃତି ଭବନ' । ଭଦ୍ରକର ଅବସରପ୍ରାପ୍ତ

ସରକାରୀ କର୍ମଚାରୀଙ୍କ ସ୍ଥାୟୀ କାର୍ଯ୍ୟାଳୟପାଇଁ କୁଆଁସ ମୌଜାରେ ଜମି ଦାନ କରିଯାଇଛନ୍ତି । ବାପା ବିଜୟ ଗୋବିନ୍ଦଙ୍କ ସ୍ମୃତିରେ ଦୋଳମୁଣ୍ଡାଇରେ ପ୍ରତିଷ୍ଠା କରିଛନ୍ତି 'ବିଜୟଗୋବିନ୍ଦ ଭବନ' ଯାହାକି ପୂର୍ବାଞ୍ଚଳରେ ସଭାସମିତିପାଇଁ ସହାୟକ ହୋଇଛି । ସେହିପରି ବାଣୀବିହାରରେ ଥିବା ଅତ୍ୟାଧୁନିକ ଜୈବିକ ରସାୟନ ପରୀକ୍ଷାଗାରପାଇଁ ଦେଇଛନ୍ତି ପ୍ରଭୂତ ଆର୍ଥିକ ସାହାଯ୍ୟ । ବାଣୀବିହାରରେ ଏଣ୍ଡାଉମେଣ୍ଟ ଚେୟାରପାଇଁ ଆର୍ଥିକ ସାହାଯ୍ୟ, ରେଭେନ୍‌ସାରେ ସ୍ନାତକୋତ୍ତର ସେମିନାର ଲାଇବ୍ରେରୀପାଇଁ ଆର୍ଥିକ ସାହାଯ୍ୟ । ରେଭେନ୍‌ସାର ଅତ୍ୟାଧୁନିକ ଜୈବିକ ପରୀକ୍ଷାଗାରପାଇଁ ଆର୍ଥିକ ସାହାଯ୍ୟ । ଏହି ସମସ୍ତ ପ୍ରକଳ୍ପ ବୃହତ୍ ଅଟେ । ଏତଦ୍‌ବ୍ୟତୀତ କେତେକ କ୍ଷୁଦ୍ର ପ୍ରକଳ୍ପ, ଯଥା – ଅନାଥାଶ୍ରମ, ଗାଡ଼କଣ ଭୁବନେଶ୍ୱରର ଚିଲଡ୍ରେନ୍ ହୋମ୍‌ପାଇଁ ଜୋତା, ଇଉନିଫର୍ମ, ବର୍ଷକର ପିଲାଙ୍କ ଦରମା, ଭୁବନେଶ୍ୱରର ଅନ୍ଧ ପିଲାଙ୍କପାଇଁ ଦୁଇଟି ବଡ଼ କାର୍ପେଟ, ପାଟକୁରା କୋରୁଆର ପଲ୍ଲୀଶ୍ରୀ ମହିଳା ସମିତିର ଶିଶୁମାନଙ୍କପାଇଁ ଦଶ ଗୋଟି ଶଯ୍ୟା, ତକିଆ ଓ ଗଦି ଦାନ କରାଯାଇଛି । ରକ୍ତଦାନ ଶିବିରର ପରିଚାଳନା ସହ ବିନା ମୂଲ୍ୟରେ ୮୬ ରୋଗୀଙ୍କ ବିନା ମୂଲ୍ୟରେ ରକ୍ତ ପରୀକ୍ଷା କରାଯାଇଛି । ଗୋକୁଳାନନ୍ଦ-ନିତ୍ୟାନନ୍ଦ ଫାଉଣ୍ଡେସନ୍ ପ୍ରତିଷ୍ଠା କରି ଏହାରି ମାଧ୍ୟମରେ ବହୁ ସେବା ଯୋଗାଇ ଦିଆଯାଉଛି । ଏହି ଫାଉଣ୍ଡେସନ୍ ସାରା ଓଡ଼ିଶାରେ ଏକମାତ୍ର ସକ୍ରିୟ ଅନୁଷ୍ଠାନର ମାନ୍ୟତା ଲାଭ କରି ପ୍ରଶଂସିତ ହୋଇଛି ।

ମୋ ଦ୍ୱାରା ପ୍ରତିଷ୍ଠିତ 'ସ୍ୱାଗତିକା'ର ସେ ଥିଲେ 'ସଭାପତି' । କଟକରେ ଦୀର୍ଘଦିନ ଧରି ଏହି ଅନିଷ୍ଠାନ ଭାରତର ବିଭିନ୍ନ କୋଣ ଅନୁକୋଣରୁ ବହୁ ଭାଷା-ଭାଷୀ କବିମାନଙ୍କୁ ଏକତ୍ର କରାଇ ଡିସେମ୍ବରରେ ପ୍ରତି ବର୍ଷ କବି ସମ୍ମିଳନୀ କରାଇଆସୁଛି । ଏହାର ରୌପ୍ୟ ଜୟନ୍ତୀ ଗତ ୨୯।୧୨।୨୦୧୨ ତାରିଖରେ ଅନୁଷ୍ଠିତ ହୋଇଯାଇଛି । ଏଥିରେ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ କବି ଓ ସାହିତ୍ୟିକ ଡକ୍ଟର ସୀତାକାନ୍ତ ମହାପାତ୍ର ମୁଖ୍ୟ ଅତିଥିଭାବେ ଯୋଗଦେଇ ବିଭିନ୍ନଭାଷାର ସର୍ବଭାରତୀୟ କବିମାନଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ଯେଉଁମାନେ ସମ୍ବର୍ଦ୍ଧିତ ହୋଇଥିଲେ ସେମାନେ ହେଲେ

୧. ପ୍ରଫେସର ହୃଦାନନ୍ଦ ରାୟ, (ପ୍ରଜ୍ଞାରତ୍ନ) ସମ୍ମାନ ଓଡ଼ିଆ ସାହିତ୍ୟପାଇଁ ।

୨. ପ୍ରଫେସର ଡକ୍ଟର ବୈଷ୍ଣବ ଚରଣ ସାମଲ, (ସାହିତ୍ୟ ରତ୍ନ) ସମ୍ମାନ ଓଡ଼ିଆ ସାହିତ୍ୟପାଇଁ ।

୩. ପ୍ରଫେସର ଡକ୍ଟର ନଟବର ଶତପଥୀ (ଭାଷ୍ୟ ରତ୍ନ) ସମ୍ମାନ ଓଡ଼ିଆ ସାହିତ୍ୟପାଇଁ ।

୪. ପ୍ରଫେସର ଡକ୍ଟର ମହେଶ୍ୱର ମହାନ୍ତି (ଶିଶୁସାହିତ୍ୟ ରତ୍ନ) ସମ୍ମାନ ଓଡ଼ିଆ ସାହିତ୍ୟପାଇଁ ।

୫. ଏମ୍‌ଏସ୍‌ଭି ଗଙ୍ଗାରାଜୁ (କଥା କ୍ରାନ୍ତି ସମ୍ମାନ) ତେଲୁଗୁ ସାହିତ୍ୟପାଇଁ ।

୬. ଶ୍ରୀ ବୃନ୍ଦାବନ ଚନ୍ଦ୍ର ରଥ (ନାଟ୍ୟଗୌରବ ସମ୍ମାନ) ଓଡ଼ିଆ ନାଟକପାଇଁ ।

୭. ଜନାବ୍ ୟୁସୁଫ ଜମାଲ (କବିକଳ୍ପ ସମ୍ମାନ) ପାର୍ଶୀ ସାହିତ୍ୟପାଇଁ ।

୮. ଜନାବ୍ ନାଫିଜ୍ ମନଜର ହାସାନ୍ ଦଶ୍‌ନଭି (କବି କଲ୍ଲୋଳ ସମ୍ମାନ) ଉର୍ଦ୍ଦୁ ସାହିତ୍ୟପାଇଁ ।

୯. ଶ୍ରୀମତୀ ପ୍ରେମଲତା ସାମଲ (ଗୀତି ନିର୍ଝରିଣୀ ସମ୍ମାନ) ଓଡ଼ିଆ ଗୀତିକବିତାପାଇଁ ।

୧୦. ଶ୍ରୀ ଅଶୋକ କୁମାର ଖାଣ୍ଡେଲୱାଲ (ସମାଜ ଗୌରବ ସମ୍ମାନ) ସମାଜ ସେବାପାଇଁ ।

୧୧.ଶ୍ରୀ ସରୋଜକୁମାର ମଲ୍ଲିକ୍ (ଛାୟାଚିତ୍ର ପ୍ରବୀଣ ସମ୍ମାନ) ଫଟୋଗ୍ରାଫି ପାଇଁ ।

ଏହି ରୌପ୍ୟ ଜୟନ୍ତୀର ଆୟୋଜନ ଓ ସାଫଲ୍ୟପାଇଁ ମୁଁ ଅଧିକାଂଶ ସମୟରେ ତାଙ୍କ ପାଖକୁ

ଯାଇ ପରାମର୍ଶ କରେ । ମୁଁ ଏହାର ପ୍ରତିଷ୍ଠାତା ସମ୍ପାଦକ ଥିବାରୁ ଭାରତର ବିଭିନ୍ନ ଭାଷାର କବିମାନଙ୍କୁ ଏକାଠି କରି ଏହା ଜାତୀୟ ସଂହତି ରକ୍ଷାରେ କାର୍ଯ୍ୟକରୁଥିବାରୁ ମୋତେ ସେ ଉତ୍ସାହ ପ୍ରଦାନ କରିଯାଇଛନ୍ତି । ସେଥିପାଇଁ ମୁଁ ତାଙ୍କଠାରେ ଚିର ଋଣୀ । ରୌପ୍ୟ ଜୟନ୍ତୀର କିଛି ଦିନ ପୂର୍ବରୁ ସେ ଘରେ ପଡ଼ିଯାଇଥିଲେ । ଚିକିତ୍ସାପାଇଁ ବଙ୍କୁ ତାଙ୍କୁ ବମ୍ବେ ନେଇଯାଇଥିଲା । ଯିବାବେଳେ ମୋତେ କହିଲେ ଓଡ଼ିଶା ବାହାରୁ ଆସୁଥିବା କବିମାନଙ୍କୁ ଆତିଥ୍ୟରେ ଊଣା ନ କରିବାକୁ ସେ ଚେତାଇ ଦେଇଥିଲେ । 'ସ୍ୱାଗତିକା' ପ୍ରତି ତାଙ୍କର ଶୁଭେଚ୍ଛା ଏହିଥିରୁ ଜଣାଯାଏ ।

ଭାଗବଦ୍‌ଗୀତାରେ ବର୍ଣ୍ଣିତ କର୍ମଯୋଗରେ ତାଙ୍କର ଗଭୀର ବିଶ୍ୱାସ ଥିଲା । ମଣିଷ ଜୀବନ ସ୍ମୃତିର ଏବଂ ଅନୁଭୂତିର ଏକ ମାଳା । ପରିଣତ ବୟସରେ ମଧ୍ୟ ସେ ଥକି ପଡ଼ୁ ନ ଥିଲେ । ସେ ଥିଲେ ସରଳ, ନିଷ୍କପଟ, ଅମାୟିକ । ତାଙ୍କର ଅନାବିଳ ସ୍ନେହ, ଶ୍ରଦ୍ଧା ମୁଁ ଦୀର୍ଘଦିନ ପାଇଆସିଛି । ସେଥିପାଇଁ ଚିର ଋଣୀ । ଜଣେ ଉଚ୍ଚକୋଟୀର ସାହିତ୍ୟିକ ଭାବେ ସେ ସତୁରି ଖଣ୍ଡରୁ ଅଧିକ ପୁସ୍ତକ ରଚନା କରି ଉତ୍କଳ ବାଣୀଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି । ଓଡ଼ିଆ ବିଦ୍ୟାଳୟ, ମହାବିଦ୍ୟାଳୟର ଛାତ୍ର-ଛାତ୍ରୀମାନଙ୍କପାଇଁ ବହୁ ଶ୍ରମ ସ୍ୱୀକାର କରି ଓଡ଼ିଆରେ ପାଠ୍ୟପୁସ୍ତକ ରଚନା କରି ଯଶସ୍ୱୀ ହୋଇଛନ୍ତି, ସେଥିପାଇଁ ଚିରସ୍ମରଣୀୟ ରହିବେ । ତାଙ୍କର ସବୁଠାରୁ ଭଲ ଗୁଣ ହେଲା ସମସ୍ତଙ୍କୁ ଭଲପାଇବା ଓ ଉତ୍ସାହ ପ୍ରଦାନ କରିବା । ତାଙ୍କ ଜୀବନର ନୀରବ ଅନ୍ତର୍ମୁଖୀନତା ଓ ଗୀତାର 'ସୁଖ ଦୁଃଖଂ ସମକୃତ୍ୱାଂ' ଚେତନାଟି ତାଙ୍କ ଠାରେ ପ୍ରକାଶ ପାଇଥିବା ମୁଁ ମର୍ମେ ମର୍ମେ ଉପଲବ୍ଧି କରିପାରିଛି । ସେ ଯୋଗଜନ୍ମା ଥିଲେ ଓ ବଂଶର ଗୌରବ ବୃଦ୍ଧି କରିଯାଇଛନ୍ତି । ତାଙ୍କଠାରେ ଗର୍ବ କିମ୍ବା ଅହଙ୍କାର ନ ଥିଲା । ସଂସ୍କୃତରେ କୁହାଯାଇଛି –

"ସ ଜାତୋ ଯେନ ଜାତେନ ଯାତି ବଂଶ ସମୁନ୍ନତିଂ,
ପରିବର୍ତ୍ତିନି ସଂସାରେ ମୃତୋ କୋବା ନ ଜାୟତେ ।"

ଅର୍ଥାତ୍ ଯେଉଁମାନଙ୍କ ଜନ୍ମ ହେବାଦ୍ୱାରା ଜାତି ଓ ବଂଶର ଉନ୍ନତି ସାଧିତ ହୋଇଥାଏ, ସେମାନଙ୍କୁ ହିଁ ସାର୍ଥକଜନ୍ମା ବୋଲି କୁହାଯାଏ । ପିଉସାଙ୍କ କ୍ଷେତ୍ରରେ ଏହାହିଁ ପ୍ରଯୁଜ୍ୟ । ତାଙ୍କ ଆତ୍ମାର ସଦ୍‌ଗତି କାମନା କରୁଛି । ତାଙ୍କ ପରଲୋକରେ ବଙ୍କୁ, ବାବୁଲୀ, ଟୁନୁ, ରନୁ, ଝୁନୁ ଓ ପରିବାରବର୍ଗ ଏହି ଦାରୁଣ ଦୁଃଖ ସହ୍ୟ କରିବାପାଇଁ ଭଗବାନ୍ ସହାୟ ହୁଅନ୍ତୁ । ଏହାହିଁ ପ୍ରାର୍ଥନା କରୁଛି ।

# ସ୍ମୃତିରୁ ଖିଏ

ନିରଞ୍ଜନ ପାତ୍ର

ଆସିଥିଲ ଧରାଧାମେ
ବାଣ୍ଟିବାକୁ ଜ୍ଞାନ
ଚାଲିଗଲ ପର କରି
ଶ୍ରୀଗୁଣ୍ଡିଚା ଦିନ ।୧।

ବୁଝୁଥିଲ ଦିନରାତି
ସଭିଙ୍କ ଖବର
ଥିଲ ତୁମେ ଆମପାଇଁ
ଦେବତାମନ୍ଦିର ।୨।

ଥିଲ ତୁମେ ଜନପ୍ରିୟ
ବିଜ୍ଞାନ ଜନକ
ଶହ ଶହ ପୁସ୍ତକର
ବିଦ୍ୱାନ ଲେଖକ ।୩।

ଶ୍ରଦ୍ଧା ସ୍ନେହ ଥିଲା ତବ
ଜୀବନର ବୃତ୍ତି
ଦାନ କଲ ଧନ ଜ୍ଞାନ
ବସି ଦିନରାତି ।୪।

ଚାଲିଗଲ ଗଢ଼ିଦେଇ
କେତେ ଅନୁଷ୍ଠାନ
ଏକତାରେ ବାନ୍ଧି ଦେଲ
କେତେ କେତେ ମନ ।୫।

ଥିଲ ତୁମେ ମିଷ୍ଟଭାଷୀ
ହିତାକାଙ୍‌କ୍ଷୀ ହୋଇ
ଦେଉଥିଲ ଉପଦେଶ
ପାଖରେ ବସାଇ ।୬।

କହୁଥିଲ ଆଦରରେ
"ଆସୁନ କାହିଁକି ?
ଆସିବଟି ସମିତିକୁ
ନିଇତି ଏଣିକି ।୭।"

ଭୁଲି ନାହୁଁ ତବ ବାକ୍ୟ
ଭୁଲି ବି ପାରୁନୁ
ପାଟି ଆମ ଖୋଲୁ ନାହିଁ
ଚାଲିଗଲା ଦିନୁ ।୮।

ଲେଖିଅଛ କେତେ କେତେ
ବିଜ୍ଞାନର ଛନ୍ଦ
ଆମ ପାଇଁ ଗର୍ବ ଥିଲ
ହେ ! ଗୋକୁଳାନନ୍ଦ ।୯।

ପେସା ଥିଲା ଅଧ୍ୟାପନା
ନିଶା ଥିଲା ଲେଖା
ଚାଲିଗଲ ଲୁଚି ଲୁଚି
ନ ଦେଇକି ଦେଖା ।୧୦।

ଥିଲ ତୁମେ ଲୋକପ୍ରିୟ
ଥିଲ ଆମ ଗୁରୁ
ମାଗୁଅଛୁ ଆଶୀର୍ବାଦ
ସେହି ସ୍ୱର୍ଗପୁରୁ ।୧୧।

ଈଶ୍ୱରଙ୍କ ଚରଣରେ
କରୁଛୁ ମିନତି
ସେ ଅମର ଆତ୍ମା ତବ
ପାଉଥାଉ ଶାନ୍ତି ।୧୨।

ଏଚ୍. - ୧୦
ମହତାବନଗର, ତୁଳସୀପୁର, କଟକ

# ଶୁଭାନୁଧ୍ୟାୟୀ

**ଶ୍ରୀ ଅପୂର୍ବ ରଞ୍ଜନ ରାୟ**

ସେ ଆମ ଘରର ଜ୍ୱାଇଁ ଓ ମୋର ଭଗ୍ନୀପତି ହେଲେ ସୁଦ୍ଧା, ମୋର ତାଙ୍କ ସହିତ ପରିଚୟ ହୁଏ ଚତୁର୍ଥ ଶ୍ରେଣୀରେ । ସେତେବେଳେ ମୋ' ପିତା ବିଶିଷ୍ଟ ଜମିଦାର ବିନୋଦ ବିହାରୀ ରାୟଙ୍କର ଦେହାନ୍ତ ହୋଇଯାଇଥାଏ । ଶୁଦ୍ଧିକ୍ରିୟାର ଦୁଇ ଦିନ ପୂର୍ବରୁ ସେ ଆମ ଭୂୟାଁ ଉଆସ ଘରେ ପହଞ୍ଚିଲେ । ତାଙ୍କୁ ଦେଖିବାପାଇଁ ଲୋକ ଗହଳି । କାରଣ ସେତେବେଳେ ଆମ ଅଞ୍ଚଳରେ ଦୁଇ ଜଣ ଉଚ୍ଚଶିକ୍ଷିତ ଜ୍ୱାଇଁ – ଜଣେ ହେଉଛନ୍ତି ପ୍ରଫେସର ଶତ୍ରୁଘ୍ନ ନାଥ ଓ ଅନ୍ୟ ଜଣେ ହେଉଛନ୍ତି ଡ. ଗୋକୁଳାନନ୍ଦ ମହାପାତ୍ର । ଅପା ସ୍ୱର୍ଗତା କୁମୁଦିନୀ ମହାପାତ୍ର, ଲୋକଗହଳି ଦେଖି ତାଙ୍କୁ ବାହାର ଦାଣ୍ଡ ପିଣ୍ଡାରେ ପଡ଼ିଥିବା ଚେୟାରରେ ବସାଇଲେ । ସେ ସେତେବେଳେକୁ ମାତ୍ର ଆମ ଗାଆଁର ଦୁଇ ଜଣଙ୍କୁ ଚିହ୍ନିଥିଲେ । ଜଣେ ହେଉଛନ୍ତି ଅଗଣୀ ଚରଣ ରାୟ, ଅନ୍ୟ ଜଣେ କିଶୁ ଚରଣ ରାୟ । ସେ କଲିକତାରେ ଏମ୍.ଏସ୍‌ସି. ପଢୁଥିବା ବେଳେ ସାଂପ୍ରଦାୟିକ ଦଙ୍ଗା ବେଳେ ଅଗଣା ଦାଦା (ଅଗଣୀ ଚରଣ ରାୟ) ତାଙ୍କୁ ସୁରକ୍ଷା ଦେଇଥିଲେ । ନିଜ ବସାକୁ କିଛି ଦିନ ପାଇଁ ସେ ତାଙ୍କୁ ନେଇ ଆସିଥିଲେ । କିଶା ସାଆଁନ୍ତ (କିଶୁ ଚରଣ ରାୟ)ଙ୍କର କଲିକତାରେ ଗ୍‌' ଠିକାଦାରୀ ଥାଏ । ପଇସାବାଲା – ବାପାଙ୍କର ସେ ଅତି ଆପଣାର । ତେଣୁ ଗୋକୁଳିଭାଇ (ଗୋକୁଳାନନ୍ଦ ମହାପାତ୍ର) ଆମ ଘରର ଜ୍ୱାଇଁ ଭାବରେ, ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ ଦିଅନ୍ତି । ମୋ' ଜନ୍ମ ବେଳକୁ ଏମ୍.ଏସ୍‌ସି. ଶେଷ ବର୍ଷରେ ସେ ପଢୁଥିବା ଶୁଣିଛି । ଏତେ ବୟସର ବ୍ୟବଧାନ ଭିତରେ ସଂପର୍କ କ'ଣ ହୋଇପାରେ ! ଶଳା-ଭିଣୋଇର ସମ୍ବନ୍ଧ ରହିଥିଲେ ହେଁ, ତାଙ୍କୁ ମୁଁ ଯଥେଷ୍ଟ ଉଚ୍ଚରେ ରଖିଥାଏ – ସମ୍ମାନ ଓ ଭକ୍ତି ଦେବାରେ ଆଦୌ ଅବହେଳା କରେ ନାହିଁ ।

ଆମ ପରିବାରର ମୋ' ସହିତ ତାଙ୍କର ଅଧିକ ଆଳାପ-ଆଲୋଚନା ହୁଏ, ମୋତେ ଭଲ ପାଆନ୍ତି । ଦୁହେଁ ବସିଗଲେ ନାନା କଥା ଆଲୋଚନା ହୁଏ । ମୁଁ ଭାବେ ସେ ଥିଲେ ଜୀବନ୍ତ ଭାଷାକୋଷ । ଓଡ଼ିଶା ଇତିହାସ, ଶିକ୍ଷା ବିଭାଗ, ଶିକ୍ଷା ବିଭାଗରେ ବିଜ୍ଞାନ ଶିକ୍ଷା, ବିଜ୍ଞାନ ବହି ରଚନା ଓ ତାଙ୍କ ସମୟର ଅଧ୍ୟାପନା ଏବଂ ବର୍ତ୍ତମାନର ଅଧ୍ୟାପନା ଉପରେ ଆମ ଭିତରେ ଆଲୋଚନା ହୁଏ । ଏହି ଆଲୋଚନାରୁ ମୁଁ କେତେକ ତଥ୍ୟ ପାଇଯାଏ । ତାଙ୍କ ଜୀବନୀ ବହି ଲେଖିବାପାଇଁ ଯେତେ ମୁଁ କହିଛି, ତା'ର ଗୋଟିଏ ଉତ୍ତର – 'ସେଥିରୁ ମିଳିବ କ'ଣ ? ମୋ ଜୀବନରେ ଏପରି କୌଣସି ଉଲ୍ଲେଖନୀୟ ଘଟଣା ନାହିଁ ଯାହା ମୁଁ ଲେଖି, ଉତ୍ତର ପିଢ଼ି ପାଇଁ ରଖିଯିବି ।' ଏଡେ ବଡ଼ ମଣିଷ – ଓଡ଼ିଆ ବିଜ୍ଞାନ ସାହିତ୍ୟର ସ୍ରଷ୍ଟା, ଅନୁଭୂତି ଓ ଅଭିଜ୍ଞତାର ଗନ୍ତାଘର, ଅଥଚ ସେ 'ଆତ୍ମଜୀବନୀ' ଲେଖିବାକୁ ଅନିଚ୍ଛୁକ ଥିଲେ । ବହୁ କ୍ଷେତ୍ରରେ ଆତ୍ମଜୀବନୀରେ ଆପଣା ଢୋଲ ଆପଣାକୁ ବଜାଇବାକୁ ହୁଏ ବୋଲି, ସମ୍ଭବତଃ ସେ ଏଥିପ୍ରତି ଆଗ୍ରହୀ ନ ଥିଲେ ।

ମୋର ବିବାହରେ ସେ ଯୋଗ ଦେଇଥିଲେ । ବର ସଜବାଜ, ବରଯାତ୍ରା ଠାରୁ ସବୁ ତତ୍ତ୍ୱ ସେ ନେଇ, ବରସହିତ ମଧ୍ୟ ଯାଇଥିଲେ । ବିବାହ ପରେ ବର କନ୍ୟାଙ୍କ ସହ ପରଦିନ ବାହୁଡ଼ିଲେ । ମୋର ସେତେବେଳକୁ ବିଶେଷ ନଜର ନ ଥାଏ, ସେ ଦିନେ କହୁଥିଲେ – 'ତମ ଘରକୁ ମୁଁ ତମରି ବ୍ରତୋପନୟନ ଓ ବିବାହରେ ଯାଇଛି ।' ସେତେବେଳେ ମୁଁ ତୃତୀୟ ଶ୍ରେଣୀରେ ପଢୁଥାଏ । ସେ ବି ବ୍ରହ୍ମଚାରୀର ଥାଳୀରେ ଅପା ସହିତ ବ୍ରତଭିକ୍ଷା ଦେଇଛନ୍ତି । ମୁଁ ବ୍ରତ ହୋଇଥିବାରୁ ବଡ଼ ଭଣଜା ବଙ୍କୁ (ଗିରିଜାନନ୍ଦନ) ଓ ସାନ ଭଣଜା ବାବୁଲି (ନନ୍ଦନନ୍ଦନ)ର କର୍ଣ୍ଣବେଧ ସମୟରେ ମାମୁଁ ରୂପେ ମୋର ଉପସ୍ଥିତି ପାଇଁ ଭାଇ (ଭିଣୋଇ) ମୋତେ ଗୁରୁତ୍ୱ ଦେଇଥାଆନ୍ତି । ସେଥିପାଇଁ ବଙ୍କୁର କର୍ଣ୍ଣବେଧ (ଗଉଳିଆଗଞ୍ଜ ଭଡ଼ାଘରେ) ଓ ବାବୁଲିର କର୍ଣ୍ଣବେଧ(ଦୋଳମୁଣ୍ଡାଇ ଘରେ) ସମୟରେ ମୁଁ ମାମୁଁ ଭୂମିକା ତୁଲାଇଥିଲି । ଅନ୍ୟ ମୋର ଦୁଇଭାଇଙ୍କ ଠାରୁ ସେ ମୋ ସହିତ ଅଧିକ ଖୋଲାଖୋଲି ବାର୍ତ୍ତାଳାପ କରନ୍ତି । ମୁଁ ବି ତାଙ୍କ ସହିତ କଥା ହୋଇପାରେ । ଅନ୍ୟ ଦୁଇଭାଇ ମୋ ଠୁଁ ବଡ଼ ହେଲେ ସୁଦ୍ଧା, ଭିଣୋଇଙ୍କ ଆଗରେ ଠିଆ ହୋଇ କଥା ହେବାକୁ ସାହସୀ ହୁଅନ୍ତି ନାହିଁ ।

ସାକ୍ଷାତରେ ସବୁବେଳେ, ମୋର ଲେଖାଲେଖି କଥା ସେ ପଚାରନ୍ତି - କ'ଣ ଆଉ ନୂଆ ବହି ପ୍ରକାଶ ପାଇଲା ପଚାରି ବୁଝନ୍ତି । ବର୍ତ୍ତମାନ ଓଡ଼ିଆ ସାହିତ୍ୟରେ ସମାଲୋଚନା ଗ୍ରନ୍ଥର ଅଭାବ ଦର୍ଶାଇ, ଏଥିପ୍ରତି ଧ୍ୟାନ ଦେବାକୁ ପରାମର୍ଶ ଦିଅନ୍ତି । ମୋର ସମାଲୋଚନା ଗ୍ରନ୍ଥ 'ଆଧୁନିକ କବିତାର ଦିଗ୍‌ଦର୍ଶନ' ରେଫେରେନ୍‌ସ ପୁସ୍ତକ ରୂପେ ମନୋନୀତ ହୋଇଛି, ଏମ୍.ଏ.ର ଓଡ଼ିଆ ଛାତ୍ରୀ ମୋ' ଭାଣିଜୀ ରୁନୁ ଓ ଝୁନୁ ଠାରୁ ଶୁଣି ବହୁ ଖୁସି ହୋଇଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀରେ କ୍ରମାଗତ ଦୁଇଥର ସଦସ୍ୟ ଓ ଫକୀରମୋହନ ବିଶ୍ୱବିଦ୍ୟାଳୟର ସିନେଟ ସଦସ୍ୟ ଭାବେ ରାଜ୍ୟପାଳ ତଥା ଚାନ୍‌ସେଲରଙ୍କ ଦ୍ୱାରା ମୁଁ ମନୋନୀତ ହୋଇଥିବା ସମ୍ବାଦରେ ଆନନ୍ଦିତ ହୋଇ, ମୋତେ ଧନ୍ୟବାଦ ଜଣାଇଥିଲେ । ଜିଲ୍ଲା ଓ ରାଜ୍ୟସ୍ତରୀୟ ବିଭିନ୍ନ କମିଟିରେ ମୁଁ ସଦସ୍ୟ ଭାବେ, ମନୋନୀତ ହେବାପରେ, ମୋର ଯୁକ୍ତିସଂଗତ ପ୍ରସ୍ତାବମାନ ଆଗତ ସମ୍ବାଦରେ ସେ ସନ୍ତୋଷ ପ୍ରକାଶ କରନ୍ତି । ଏପରିକି ବୟସ୍କ ପ୍ରବୀଣମାନଙ୍କ ସହିତ ଯଥାର୍ଥ ପ୍ରସଙ୍ଗରେ ଯୁକ୍ତିଯୁକ୍ତ ବିତର୍କକୁ ସେ ସ୍ୱାଗତ କରୁଥିଲେ ।

ତାଙ୍କ ଠାରୁ, ନିଶ୍ଚୟ ନମ୍ରତା ଓ ବିନୟ ଶିଖିବାର ବିଷୟ । ଯାହାକୁ ଯେପରି ସମ୍ମାନ ଦେବାକୁ ସେ କୁଣ୍ଠାପ୍ରକାଶ କରନ୍ତି ନାହିଁ । ତାଙ୍କ ଶାଶୂ (ମୋ'ବୋଉ)ଙ୍କୁ ସାକ୍ଷାତରେ ଯେପରି ସେ ମୁଣ୍ଡ ନୁଆଁଇ ପ୍ରଣାମ କରନ୍ତି, ତାହା ହେଉଛି ତାଙ୍କ କର୍ତ୍ତବ୍ୟନିଷ୍ଠା ଓ ପୂଜ୍ୟପୂଜାର ଆଦର୍ଶ । ତାଙ୍କ ରଚିତ ପୁସ୍ତକ ପ୍ରକାଶ ପାଇଲେ, ମୋତେ ଖଣ୍ଡିଏ ଉପହାର ଦିଅନ୍ତି । ଏଥିପାଇଁ ତାଙ୍କ ପ୍ରଣୀତ ଅନେକ ଗ୍ରନ୍ଥ ଆମ ଘରେ ବ୍ୟକ୍ତିଗତ ପାଠାଗାରରେ ସାଇତାହୋଇ ରହିଛି । ମୁଁ ଯେତେବେଳେ ଲୋକପ୍ରିୟ ବକ୍ତା ଭାବେ ପରିଚିତ ହୋଇଗଲି ଏବଂ ଓଡ଼ିଶା ତଥା ଓଡ଼ିଶା ବାହାରକୁ ଭାଷଣ ଦେବା ଲାଗି ନିମନ୍ତ୍ରଣ ପାଇଲି, ସେତେବେଳେ ସେ ମୋତେ ଗୋଟିଏ ଉପଦେଶ ଦେଇଥିଲେ, ତାହା ମୋର ମନେଅଛି "ଅଧିକ ସ୍ଥାନକୁ ଭାଷଣ ଦେବାକୁ ଯାଅ ନାହିଁ - ସମୟ ନଷ୍ଟ ହେଉଛି । ସେ ଭାଷଣ ପବନରେ ଉଡ଼ିଯିବ । ତମେ ଲେଖକ - ଲେଖାଲେଖି କରୁଛ । ସେହି ସମୟରେ ନୂଆ କିଛି ଲେଖ - ଏହି ଲେଖା ସିନା ତମକୁ ସ୍ମରଣୀୟ କରିବ ।"

ଓଡ଼ିଶାର ଅନ୍ୟତମ ସାରସ୍ୱତ ପୁରୁଷ କବିଶେଖର ଚିନ୍ତାମଣି ମହାନ୍ତିଙ୍କୁ ଅଧିକ ପରିଚିତ କରିବାପାଇଁ ତାଙ୍କର ପ୍ରବଳ ଆଗ୍ରହ ଥିଲା । ସେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ହୋଇ ସୁଦ୍ଧା, ଅନାଲୋଚିତ ହୋଇ ରହିଥିବା ଦୃଷ୍ଟିରୁ, 'କବିଶେଖର ଚିନ୍ତାମଣି ପୁରସ୍କାର' ପ୍ରବର୍ତ୍ତନ କରିଥିଲେ । ପ୍ରତିବର୍ଷ କବିଙ୍କ ଜୟନ୍ତୀରେ ଜଣେ ଶ୍ରେଷ୍ଠ ସାହିତ୍ୟିକଙ୍କୁ ପୁରସ୍କୃତ କରାଯାଏ । ତାଙ୍କ ମାଆଙ୍କ ନାମରେ ଗଠିତ 'ଫୁଲଦେବୀ ଦାତବ୍ୟ ସ୍ମାରକୀ ନିଧି (ଟ୍ରଷ୍ଟ)' ପକ୍ଷରୁ ଏହି ପୁରସ୍କାର ଦିଆଯାଏ । ପୁରସ୍କାର ସହିତ ଉତ୍ସବର ସମସ୍ତ ଖର୍ଚ୍ଚ ଏହି ଟ୍ରଷ୍ଟ ବହନ କରିଥାଏ । ଭଦ୍ରକ ପୂଜ୍ୟପୂଜା ସଂସଦର ସେ ଥିଲେ ଆରମ୍ଭରୁ ଅନ୍ୟତମ ଉପଦେଷ୍ଟା । ଯେଉଁ ବର୍ଷ ତାଙ୍କୁ ମର୍ଯ୍ୟାଦାଜନକ 'ବିଜୟା ସମ୍ମାନ' ଦିଆଯିବା ପାଇଁ ପ୍ରସ୍ତାବ ଗୃହୀତ ହେଲା, ତା'ର ଉତ୍ତରରେ ସେ କହିଥିଲେ - 'ମୁଁ ତ ସଂଗଠନ ସହିତ ସଂପୃକ୍ତ । ମୋତେ ନ ଦିଆଯାଇ, ଅନ୍ୟ କାହାକୁ ଏହି ପୁରସ୍କାର ଦିଆଯାଉ ।' ମାତ୍ର ସଦସ୍ୟ ଓ ଉପଦେଷ୍ଟା ମଣ୍ଡଳୀଙ୍କ ଅନୁରୋଧକ୍ରମେ ସେ ଏହା ଗ୍ରହଣ କରିବାକୁ ବିଜୟା ମିଳନରେ ଉପସ୍ଥିତ ହୋଇଥିଲେ । ଅନାଲୋଚିତ ବରପୁତ୍ରମାନଙ୍କୁ ଆଲୋକକୁ ଆଣିବା ଦିଗରେ ତାଙ୍କର ଉତ୍ସାହ ଭୁଲିହେବ ନାହିଁ । ସ୍ୱାସ୍ଥ୍ୟାବସ୍ଥା ଓ ବାର୍ଦ୍ଧକ୍ୟର ଚାପ ହେତୁ ମୋ' ମଝିଆ ପୁଅ ଦୀପୁନର ବିବାହକୁ ଆସିପାରି ନଥିଲେ । ନିମନ୍ତ୍ରଣ ପାଇ ଫୋନରେ ନ ଆସିପାରିବାର ଅକ୍ଷମତା ଜଣାଇ, ଉପହାର ପଠାଇ ଦେଇଥିଲେ । 'ଗୋକୁଳାନନ୍ଦ ବିଜ୍ଞାନ ବିଚିତ୍ରା' ପ୍ରକାଶ ପାଇଲାବେଳେ, ସେଥିରେ ସ୍ଥାନିତ ବିଜ୍ଞାନଭିତ୍ତିକ କବିତାଗୁଡ଼ିକ ପ୍ରକାଶ ପୂର୍ବରୁ ମୋତେ ପଢ଼ାଇଲେ । କାରଣ ଗତ କେତେ ବର୍ଷ ଧରି କବିତା ଲେଖାର ଅଭ୍ୟାସ ମୋର ରହିଆସିଛି । ପ୍ରକାଶ ପାଇଲା ପରେ ପୁଣି ପଚାରିଲେ - 'କବିତାଗୁଡ଼ିକ କେମିତି ଲାଗୁଛି ! ଚଳିବ ତ !' ଏପରି ବିନୟୀ ଗୁଣ ତାଙ୍କୁ ମହାନ୍ କରିପାରିଛି । ମୁଁ ବୟସରେ କେତେ ସାନ - ଅଥଚ ମୋ'ଠାରୁ ତାଙ୍କ ଲେଖା ଉପରେ ବି ସେ ମତାମତ ନେବାକୁ ଆଗ୍ରହୀ । ମଣିଷପରି ମଣିଷଟିଏ ଥିଲେ ।

ଆଜି ତାଙ୍କ ଦେହାନ୍ତରେ ମୋର ଜଣେ ଅତି ଆପଣାର ଶୁଭାନୁଧ୍ୟାୟୀଙ୍କୁ ହରାଇ ମର୍ମାହତ ।

ସଂପାଦକ, 'ସାଳନ୍ଦୀ ସମାଚାର'
ମଠସାହି, ଭଦ୍ରକ ।

# ସେ ମୋର ପ୍ରଣମ୍ୟ

**ଶ୍ରୀମତୀ ଅନସୂୟା ରାୟ**

ମୁଁ ତାଙ୍କର ଶଳାର ସ୍ତ୍ରୀ ହୋଇଥିଲେ ହେଁ ସେ କେବେ ଦିନେ ମୋତେ ସେପରି ଦୃଷ୍ଟିରେ ଦେଖି ନ ଥିଲେ। ସେ ଥିଲେ ଏକା ମୋର ନୁହେଁ – ଆମ ପରିବାରର ଜଣେ ବୟସ୍କ ଗୁରୁଜନ। ତାଙ୍କ ବ୍ୟବହାର – ତାଙ୍କ ନମ୍ରତା ଓ କଥା କହିବାର ଯେଉଁ ଢଙ୍ଗ, ମୋତେ ମଣିଷପରି ମଣିଷଟିଏ ହେବା ପାଇଁ ଶିକ୍ଷା ଦେଇଛି। ବିବାହର କିଛିଦିନ ପରେ ଅପା ଓ ଭାଇଙ୍କ ନିମନ୍ତ୍ରଣ କ୍ରମେ ମୁଁ କଟକ ଯାଇଥିଲି। ମୋତେ ସେ ମୁହାଁମୁହିଁ କିଛି ନ କହି, ଘର ଭିତରେ କହୁଥାଆନ୍ତି, ମୁଁ କଟକ ଆସିଛି ଯେତେବେଳେ ଟିକେ ରେଭେନ୍‌ସା କଲେଜ ପରି ଓଡ଼ିଶାର ବଡ଼ କଲେଜ ବୁଲିଆସେ। କଟକ ଚଣ୍ଡୀ ଦର୍ଶନ କରେ, ବାରବାଟୀ ଷ୍ଟାଡିୟମ ବୁଲିଆସେ। କଟକର ଯେତେ ବଡ଼ବଡ଼ ଦର୍ଶନୀୟ ସ୍ଥାନ ଅଛି, ସବୁ ମୁଁ ଦେଖେ – ଏହା ଥାଏ ତାଙ୍କର ଇଚ୍ଛା। ଅପା ସେ କଥାକୁ ସମର୍ଥନ କରୁଥାଆନ୍ତି। ତାହାବି କାର୍ଯ୍ୟକାରୀ ହେଲା। ଟୁନୁ, ରୁନୁ, ଝୁନୁ ଓ ମୁଁ ସମସ୍ତେ ମିଶି ରେଭେନ୍‌ସା କଲେଜ ବୁଲିଗଲୁ। ଭାଇ ଆମ ସହିତ ବି ଯାଇଥିଲେ। ବୁଲି ବୁଲି କଲେଜ ପରିସରରେ ଯେତେବେଳେ ବହୁ ସମୟ ହୋଇଗଲା, ସେତେବେଳେ ସେ ପିଲାମାନଙ୍କୁ କହିଲେ – ଆରେ ତମ ମାଈଁର ଗୋଡ଼ ଘୋଳେଇ ପଡ଼ିବଣି, ଚାଲ ଆମେ ଘରକୁ ଫେରିଯିବା । ସେଦିନ ସେଇ ପଦେ କଥା, କଥା ନ ଥିଲା – ମୋତେ ଅମୃତ ପରି ମନେ ହେଉଥିଲା। କେଡ଼େ କଅଁଳ ସ୍ୱରରେ ଆମେ ସମସ୍ତେ ବୁଝିପାରିଲା ଭଳି କହୁଥିଲେ, ସେହି ଭାଷା ମୁଁ କେବେ ଭୁଲିପାରିବି ନାହିଁ। ସେଦିନ ମନେ ହେଉଥିଲା ସତେ ଯେମିତି କାଳୀପୂଜା କି ଦୁର୍ଗାପୂଜାରେ ବୁଲି ବୁଲି ହାଲିଆ ହୋଇସାରିଲାପରେ ମୋ ବାପା କି ଜଣେ ବୟସ୍କ ଗୁରୁଜନ ମୋ ମନକଥା ବୁଝିପାରୁଛନ୍ତି।

ଗୋଟିଏ ସ୍ମୃତି ମୋର ମନେଅଛି – ଶାରୀରିକ ଅସୁସ୍ଥତା ପାଇଁ ଭଦ୍ରକର ଡାକ୍ତରମାନେ କଟକରେ ଦେଖାଇବା ପାଇଁ କହିଲେ । ମୋ ସ୍ୱାମୀ ଏକଥା ଶୁଣିବା ପରେ ଯେତେବେଳେ କଟକ ଖବର ଦେଲେ, ସେତେବେଳେ ଅପା ଓ ଭାଇ ଶୀଘ୍ର ଆମେ ସେଠାରେ ପହଞ୍ଚିବାପାଇଁ ନିର୍ଦ୍ଦେଶ ଦେଲେ। ପହଞ୍ଚିବା ମାତ୍ରେ ଡାକ୍ତରୀ ଚିକିତ୍ସା ଲାଗି ଭାଇ ଯେପରି ପଦକ୍ଷେପ ନେଇଥିଲେ, ତାହା ମୋ ଜୀବନ ଇତିହାସରେ ଅଲିଭା ହୋଇରହିଛି।

ବୋଉ ବଞ୍ଚିଥାଆନ୍ତି। ସେ ଯେତେବେଳେ ତାଙ୍କ ନିଜ ଘର କୁଆଁସକୁ ଆସନ୍ତି ଭଦ୍ରକର ମଠସାହି ହୋଇ ଯାଆନ୍ତି। ଲକ୍ଷ୍ୟ ବୋଉଙ୍କ ସହିତ ସାକ୍ଷାତ ହେବ। ତାଙ୍କୁ ସେ ସାକ୍ଷାତ୍ ପାଇ ଯେପରି ବିନମ୍ରତାର ସହ ପ୍ରଣାମ କରନ୍ତି, ସେଇଠୁ ତାଙ୍କର ବଡ଼ପଣିଆ ଜଣାପଡ଼ିଯାଏ। ମଣିଷ ଉଚ୍ଚକୁ ଗଲେ ତାଠିଁ ନମ୍ର ଓ ବିନୟ ଭାବ ଅଧିକ ସଞ୍ଚାରିତ ହୋଇଯାଏ। ଏହା ପ୍ରମାଣିତ ହୁଏ। ସେ କଟକରୁ ଆସୁଛନ୍ତି ବୋଲି ଆମେ ଚଳଚଞ୍ଚଳ ହୋଇପଡୁ। କିନ୍ତୁ ସେ ଆମର ଚଳଚଞ୍ଚଳତାପାଇଁ କିଛି କାରଣ ନାହିଁ ବୋଲି ସବୁବେଳେ କହୁଥାଆନ୍ତି । କେତେବେଳେ କେମିତି ପଇଡ଼ ଟିକେ ପିଇ ଅବା ବୋଉଙ୍କ ହାତତିଆରି ସାଦାପାନ ଖଣ୍ଡେ ଖାଇ ବିଦାୟ ନିଅନ୍ତି। ବୋଉଙ୍କ ବର୍ଷକିଆ ବେଳକୁ ସେ ମଠସାହି ଆସିଥିଲେ। ସେତେବେଳକୁ କୀର୍ତ୍ତନ ସରିଆସିଲାଣି । ଆଉ ଅଳ୍ପ ସମୟ ପରେ ନଗର କୀର୍ତ୍ତନ ହୋଇ ଦଧି ଭଙ୍ଗାଯିବ । ସେ ଏକଥା ଶୁଣି ସାମାନ୍ୟ ଅବଶୋଷ କଲେ, ତଥାପି

ଅଷ୍ଟପ୍ରହରୀ ମଣ୍ଡପ ପାଖକୁ ଯାଇ ନିତାଇ ଗୌରଙ୍କୁ ପ୍ରଣାମକରି ପୂଜକଠାରୁ ପାଦୁକା ଟିକେ ପାଇ ବାହୁଡ଼ିଲେ। ମୁଁ ସେଇଦିନ ତାଙ୍କୁ ପ୍ରଣାମ କରିବା ସହିତ ଥରଟିଏ ମାତ୍ର କଥା କହିଥିଲି - ଆପଣ ଏଇଠି ଖାଇ କୁଆଁସ ଯିବେ।

ତାଙ୍କର ଆମଘର ପ୍ରତି ବିଶେଷତଃ ଆମ ପିଲାମାନଙ୍କ ପ୍ରତି ସବୁବେଳେ ଧ୍ୟାନଥାଏ। ନୂଆଘର ତିଆରି ପରେ ସେ ବି ଆମ ନୂଆଘରକୁ ଆସିଥିଲେ। ଭାରି ଖୁସିହୋଇଗଲେ। ପିଲାମାନେ ଆହୁରି ଭଲ କରନ୍ତୁ, ବଡ଼ ମଣିଷ ହୁଅନ୍ତୁ, ଏହାହିଁ ଥିଲା ତାଙ୍କର ଆଶୀର୍ବାଦ। ସେ ନିଜର ଆତ୍ମୀୟ ହେଉ କି ପରଲୋକ ହେଉ କି ଅନ୍ୟ କାହାର ହେଉ ତା'ର ଉନ୍ନତି ଦେଖିଲେ ଭାରି ଖୁସିହୁଅନ୍ତି। ମୋ ଭାଇ କେଶବ ରେଭେନ୍‌ସା କଲେଜରେ ଏମ୍.ଏସ୍‌ସି. ପଢୁଥିବା ବେଳେ, ସେ ତାଙ୍କର ଛାତ୍ର ଥିଲା। ସେ ସମୟରେ ଭାଇ କେବଳ ତା'ର ଶିକ୍ଷକ ନ ଥିଲେ - ଅଭିଭାବକ ପରି ହାନିଲାଭ ସବୁକଥାକୁ ଲକ୍ଷ୍ୟ ରଖୁଥିଲେ। ସମୟେ ସମୟେ ତା'ର ସାକ୍ଷାତ ହୋଇଗଲେ, ତାକୁ ତା'ର ଭଲମନ୍ଦ ପଚାରି ବୁଝୁଥିଲେ।

ତାଙ୍କପରି ଜଣେ ମମତାମୟ, ସ୍ନେହପ୍ରବଣ ଗୁରୁଜନଙ୍କୁ ହରାଇ ବାସ୍ତବରେ ଆମ ପରିବାର ଆଜି ମୁରବୀଶୂନ୍ୟ ହୋଇଯାଇଥିବା ମନେହେଉଛି। କଟକ କଥା ମନେପଡ଼ିଲେ ଆଉ ଅପାର ସ୍ୱର କି ଭାଇଙ୍କ ସ୍ୱର ଶୁଭିବ ନାହିଁ ସିନା, ମାତ୍ର ସେ ଦୁଇଟି ଶୁଭେଚ୍ଛୁ ଆତ୍ମାଙ୍କ ମୁହଁ ସବୁଦିନେ ମୋ ଆଖି ଆଗରେ ଜଳଜଳ ହୋଇ ନାଚିଉଠୁଥିବ। ସେ ଯେଉଁଠି ଥାଆନ୍ତୁ ନା କାହିଁକି ତାଙ୍କ ଅକୁଣ୍ଠ ଆଶୀର୍ବାଦ ଆମ ପରିବାର ପ୍ରତି ଥାଉ, ଏତିକି ମୋର ଅନ୍ତିମ କାମନା।

ବରିଷ୍ଠ ସହକାରୀ ଶିକ୍ଷୟିତ୍ରୀ
ମଠସାହି, ଭଦ୍ରକ

# ଚିର ନମସ୍ୟ ସାର୍

ଡକ୍ଟର ବିଜୟକୁମାର ମିଶ୍ର

ପରମପୂଜ୍ୟ ଗୋକୁଳାନନ୍ଦ ସାର୍‌ଙ୍କ ବିୟୋଗ ସମସ୍ତଙ୍କ ମନରେ ପ୍ରଚଣ୍ଡ ଆଘାତ ଦେଇଛି । ତାଙ୍କର ସମସ୍ତ ଅନୁଜଙ୍କର ସେ ଥିଲେ ଉତ୍ସାହର ପ୍ରାଣବିନ୍ଦୁ । ସେ ଥିଲେ ବିଜ୍ଞାନ ପ୍ରଚାର ସମିତିର ସ୍ରଷ୍ଟା । ଓଡ଼ିଆରେ ବିଜ୍ଞାନର ପ୍ରସାର ଓ ଲୋକପ୍ରିୟତାପାଇଁ ସେ ଅଗ୍ରଣୀ ଭୂମିକା ନେଇଥିଲେ ।

ମୋର ସୌଭାଗ୍ୟ, ମୁଁ ତାଙ୍କ ଦ୍ୱାରା ସୃଷ୍ଟ ଓ ପାଳିତ ବିଜ୍ଞାନ ପ୍ରଚାର ସମିତିର ଦୁଇ ବର୍ଷ ସଂପାଦକ ଥିଲି । ତାଙ୍କ ନିକଟରେ ରହି ସମିତିର ସମୃଦ୍ଧିରେ ତାଙ୍କର ଭୂମିକା ସମ୍ବନ୍ଧରେ ଭଲ ଭାବେ ହୃଦୟଙ୍ଗମ କରିଛି ।

ନୂତନ ଲେଖକଙ୍କୁ ଉତ୍ସାହ ଓ ପ୍ରେରଣା ଦେବାରେ ସେ କେବେ ପଛାଉ ନ ଥିଲେ । କୌଣସି ଏକ ଲେଖାରେ ତ୍ରୁଟି ଥିଲେ ସେ ଅତି ଆଗ୍ରହରେ ତାହା ସଂଶୋଧନ କରି ଦେଉଥିଲେ ସିନା କିନ୍ତୁ ଲେଖା ଓ ଲେଖକଙ୍କର ଆଦୌ ସମାଲୋଚନା କରୁ ନ ଥିଲେ । ମୁଁ ବହୁତ ଡେରିରେ ବିଜ୍ଞାନ ପ୍ରଚାର ସମିତିରେ ଯୋଗ ଦେଇଥିଲି । ତାଙ୍କ ଭଳି କେତେକ ବ୍ୟକ୍ତିତ୍ୱଙ୍କ ପ୍ରେରଣାରେ ଏହାର ଏକ ସକ୍ରିୟ ସଭ୍ୟ ହେଲି ।

ସେ ଥିଲେ ମିଷ୍ଟଭାଷୀ । ତାଙ୍କ କଥାରେ କଟୁ ଓ ତାଚ୍ଛଲ୍ୟ ନ ଥିଲା । ବିଜ୍ଞାନକୁ ଓଡ଼ିଆ ଭାଷାରେ ଲୋକପ୍ରିୟ କରିବାରେ ସେ ଥିଲେ ଅଦ୍ୱିତୀୟ । ସେ ଯାହା ସୃଷ୍ଟି କରିଯାଇଛନ୍ତି, ତାହା ତାଙ୍କୁ ଅମର କରିଛି । ବିଜ୍ଞାନ ପ୍ରଚାର ସମିତିର ସଭ୍ୟମାନେ ତାଙ୍କର କାମକୁ ଆଗେଇ ନେଇପାରିଲେ ତାହାହିଁ ହେବ ସାର୍‌ଙ୍କପାଇଁ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

ଭଗବାନ୍‌ଙ୍କ ନିକଟରେ ପ୍ରାର୍ଥନା, ତାଙ୍କର ଆତ୍ମାର ସଦ୍‌ଗତି ହେଉ

ପୂର୍ବତନ ବିଭାଗୀୟ ମୁଖ୍ୟ, ଭୂଗୋଳ ବିଭାଗ,
ରେଭେନ୍‌ସା ବିଶ୍ୱବିଦ୍ୟାଳୟ, କଟକ

# ମୋର ପୂଜ୍ୟ ଗୁରୁଦେବ ଓ ବିଶ୍ୱସ୍ତ ଉପଦେଷ୍ଟା ପ୍ରଫେସର ଡ. ଗୋକୁଳାନନ୍ଦ ମହାପାତ୍ର

**ପ୍ରଫେସର ଡାକ୍ତର ଇନ୍ଦ୍ରମଣି ସାହୁ**

୧୯୫୫ ରୁ ୧୯୫୭ ପର୍ଯ୍ୟନ୍ତ ମୁଁ ରେଭେନ୍ସା କଲେଜରେ ଆଇ.ଏସ୍‌ସି. (ଆଜିର ଯୁକ୍ତଦୁଇ ବିଜ୍ଞାନ) ପଢୁଥିଲାବେଳେ ପ୍ରଫେସର ମହାପାତ୍ର ରସାୟନ ବିଜ୍ଞାନରେ ମୋର ଗୁରୁ ଥିଲେ । ତାଙ୍କର ଅମାୟିକ ଓ ସରଳ ବ୍ୟବହାର, ନମ୍ର କଥାବାର୍ତ୍ତା, ରସାୟନବିଜ୍ଞାନର ପ୍ରାକ୍ଟିକାଲ୍‌ରେ ଦକ୍ଷତା ମୋତେ ମୁଗ୍ଧ କରିଥିଲା ।

ସେ ବିଜ୍ଞାନ ପ୍ରଚାର ସମିତି, କଟକର ପ୍ରତିଷ୍ଠାତା ଓ ପ୍ରାଣକେନ୍ଦ୍ର ଥିଲେ । ତାଙ୍କର ସୁପରିଚାଳନା ଓ ନିର୍ଦ୍ଦେଶନାରେ ବିଜ୍ଞାନ ପ୍ରଚାର ସମିତିର ନିୟମିତ ବୈଠକ, ପ୍ରବନ୍ଧ ପାଠ, ସ୍କୁଲମାନଙ୍କରେ ବିଜ୍ଞାନ ଚର୍ଚ୍ଚା, ପିଲାମାନଙ୍କ ବିଜ୍ଞାନଭିତ୍ତିକ ସାହିତ୍ୟ ରଚନା ଓ ସେମାନଙ୍କୁ ଉତ୍ସାହିତ କରିବାକୁ ପୁରସ୍କାର ଓ ସମ୍ବର୍ଦ୍ଧନା ପ୍ରଦାନ କରାଯାଉଛି । ବିଜ୍ଞାନ ସାହିତ୍ୟରେ ଉତ୍ସାହିତ କରିବାକୁ ବିଜ୍ଞାନ ପ୍ରଚାର ସମିତିଦ୍ୱାରା ସଭ୍ୟମାନଙ୍କୁ ସମ୍ବର୍ଦ୍ଧନା ଦିଆଯାଉଛି । ବିଜ୍ଞାନଭିତ୍ତିକ ପତ୍ରିକା 'ବିଜ୍ଞାନାଲୋକ'ର ପ୍ରକାଶନ ତାଙ୍କରି ନିର୍ଦ୍ଦେଶନାରେ ମଧ୍ୟ ହୋଇଆସୁଛି । ବିଜ୍ଞାନ ପ୍ରଚାର ସମିତି ବୈଠକପାଇଁ ମଧ୍ୟ ସେ ତାଙ୍କ ଘର ଆଗପଟ ହଲ୍‌କୁ ଛାଡ଼ି ଦେଇଛନ୍ତି ।

୧୯୯୫ରେ ମୁଁ ସରକାରୀ ଚାକିରିରୁ ଅବସର ନେଲାପରେ ବିଜ୍ଞାନ ପ୍ରଚାର ସମିତିର ସଭ୍ୟ ହେଲି । ସେ ମୋର ବିଶ୍ୱସ୍ତ ଉପଦେଷ୍ଟା ଓ ପ୍ରେରଣାର ଉତ୍ସ ଥିଲେ । ତାଙ୍କରି ପ୍ରେରଣାରେ ମୁଁ ଦଶ ଖଣ୍ଡ ପୁସ୍ତକ ରଚନା କରି ବିଜ୍ଞାନ ପ୍ରଚାର ସମିତିଦ୍ୱାରା ଚାରି ଥର ସମ୍ବର୍ଦ୍ଧିତ ହୋଇଛି । ପୃଥିବୀର ସପ୍ତାଶ୍ଚର୍ଯ୍ୟ, ସୁଖପାଠ ବିଜ୍ଞାନ, ମହାକାଶ ବିଜ୍ଞାନ, କମ୍ପ୍ୟୁଟର ବିଜ୍ଞାନ, ଗପ ଓ ବିଜ୍ଞାନ କଥା, ଆମ ଶରୀର ଓ ସ୍ୱାସ୍ଥ୍ୟ ପ୍ରଭୃତି ବିଭାଗରେ ୭୦ରୁ ଅଧିକ ପୁସ୍ତକ ସେ ରଚନା କରିଯାଇଛନ୍ତି । ତାଙ୍କୁ ବିଜ୍ଞାନ ସାହିତ୍ୟ ରଚନାର 'ପିତାମହ' କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଜ୍ଞାନ କୃତିପାଇଁ ସେ ବହୁ ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧିତ ହୋଇଥିଲେ । ୨୦୧୦ରେ ତାଙ୍କୁ ସମ୍ମାନଜନକ 'କଳିଙ୍ଗ ପୁରସ୍କାର', ଏ ଯୁଗର ଶ୍ରେଷ୍ଠ ଆବିଷ୍କାରପାଇଁ ୧୯୮୬ରେ ସାହିତ୍ୟ ଏକାଡେମୀ ପୁରସ୍କାର ରେଭେନ୍ସା ଓ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ସମ୍ମାନଜନକ ଡକ୍ଟରେଟ ଡିଗ୍ରୀ ତାଙ୍କୁ ଅର୍ପଣ କରାଯାଇଛି ।

ଏପରି ଜଣେ ସ୍ୱନାମଧନ୍ୟ ବୈଜ୍ଞାନିକଙ୍କୁ ହରାଇଥିବାରୁ ଆମେମାନେ ମର୍ମାହତ । ତାଙ୍କର ମହାନ୍ ଆତ୍ମାର ସଦ୍‌ଗତିପାଇଁ ମୁଁ ଭଗବାନ୍‌ଙ୍କ ନିକଟରେ ପ୍ରାର୍ଥନା କରି ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

# ବିଜ୍ଞାନ ପ୍ରଚାର ସମିତି
# ମୁଁ ଓ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

**ଇଂ. ଧୀରେନ୍ଦ୍ର କୁମାର ବିଶ୍ୱାଳ**

ମୁଁ ସାର୍‌ଙ୍କ ପ୍ରତ୍ୟକ୍ଷ ଛାତ୍ର ନ ଥିଲି । ମୋର କଲେଜ ପାଠ କଲିକତା ଓ ମାନ୍ଦ୍ରାଜରେ । କିନ୍ତୁ ସ୍କୁଲରେ ପଢୁଥିବାବେଳେ ଓ ପରବର୍ତ୍ତୀ ସମୟରେ ସାର୍‌ଙ୍କ ଲିଖିତ କେତେକ ବିଜ୍ଞାନ ପୁସ୍ତକ ଅଧ୍ୟୟନ କରିଥିଲି ।

୧୯୭୦ ମସିହାରେ ସୁବାସିନୀ ସହିତ ମୋର ବିବାହ ହେଲାପରେ ତାଙ୍କଠାରୁ ସାର୍‌ଙ୍କ ବିଷୟରେ ଅବଗତ ହେଲି ।

ସୁବାସିନୀ ବହୁ ଆଗରୁ ବିଜ୍ଞାନ ପ୍ରଚାର ସମିତିର ଆଜୀବନ ସଭ୍ୟା ଥିବାରୁ ସମିତିର କେତେକ ବିଶେଷ କାର୍ଯ୍ୟକ୍ରମରେ ମୁଁ ତାଙ୍କ ସହିତ ଯୋଗ ଦେଇ ସାର୍‌ଙ୍କୁ ପ୍ରତ୍ୟକ୍ଷଭାବେ ଦେଖିଥିଲି ଓ ତାଙ୍କ ଭାଷଣ ଶୁଣିଥିଲି ।

ବିଜ୍ଞାନ ପ୍ରଚାର ସମିତିର କାର୍ଯ୍ୟକ୍ରମରେ ଆକୃଷ୍ଟ ହୋଇ ସମିତିର ଆଜୀବନ ସଭ୍ୟ ହେଲି ଓ ବିଦ୍ୟାଳୟ କାର୍ଯ୍ୟକ୍ରମ, ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା, ଜାତୀୟ ବିଜ୍ଞାନ ଦିବସ, ପ୍ରତିଷ୍ଠାଦିବସ, ବଣଭୋଜି ଓ ବାର୍ଷିକ ଉତ୍ସବରେ ସକ୍ରିୟ ଭାଗ ନେଲି ।

ସାର୍‌ଙ୍କ ପରାମର୍ଶ ତଥା ଅନ୍ୟାନ୍ୟ ବରିଷ୍ଠ ସଭ୍ୟ / ସଭ୍ୟାମାନଙ୍କ ଅନୁମୋଦନକ୍ରମେ ମୋତେ ସମିତିରେ ୨୦୦୭ ଓ ପରେ ପରେ ୨୦୦୮ ମସିହାପାଇଁ ସଂପାଦକ ଦାୟିତ୍ୱ ତୁଲାଇବାକୁ ପଡ଼ିଥିଲା ।

ଯୁଗ୍ମ ସମ୍ପାଦକ ଡକ୍ଟର ନାରାୟଣ ପାଲ୍ ଓ ଅନ୍ୟାନ୍ୟ ବରିଷ୍ଠ ସଦସ୍ୟଙ୍କ ସହଯୋଗରେ ୨ବର୍ଷ ସମିତିର ସମସ୍ତ କାର୍ଯ୍ୟକ୍ରମ ସୁଚାରୁରୂପେ ସଂପାଦନ କଲାପରେ ୨୦୦୮ ମସିହା ଡିସେମ୍ବର ମାସରେ ଅବ୍ୟାହତି ନେବାକୁ ଚାହିଁଥିଲି । ୨୦୦୯ ମସିହା ଡିସେମ୍ବର ମାସରେ ସମିତିର ହୀରକ ଜୟନ୍ତୀ ପାଳନ ହେବାକୁ ଥିବାରୁ ସାର୍‌ଙ୍କ ପ୍ରସ୍ତାବକ୍ରମେ ମୋତେ ପୁଣି ଆଉ ଗୋଟିଏ ବର୍ଷ (୨୦୦୯) ସଂପାଦକ ପଦ ତୁଲାଇବାକୁ ପଡ଼ିଥିଲା ।

ଭାଗ୍ୟର ବିଡ଼ମ୍ବନା । ଜୁଲାଇ ୧୧, ୨୦୦୯ ମସିହାରେ ସଡ଼କ ଦୁର୍ଘଟଣାରେ ମୋର ବାମ ଗୋଡ଼ ଭାଙ୍ଗିଗଲା ଓ ୬ ମାସରୁ ଊର୍ଦ୍ଧ୍ୱ ମୁଁ ଶଯ୍ୟାଶାୟୀ ହେଲି । ରୋଗ ଶଯ୍ୟାରେ ଥାଇ ମଧ୍ୟ ସମିତିର ସମସ୍ତ କାର୍ଯ୍ୟକ୍ରମ ଯୁଗ୍ମ ସଂପାଦକ ଡକ୍ଟର ପାଲ୍ ଓ ଅନ୍ୟାନ୍ୟ ସଦସ୍ୟମାନଙ୍କ ସହଯୋଗରେ ତୁଲାଇବାକୁ ଚେଷ୍ଟା କରିଥିଲି ।

ସେହି ସମୟର ଗୋଟିଏ ଘଟଣା ମୋତେ ଆଜି ବି ବାରମ୍ବାର ଆନ୍ଦୋଳିତ କରେ । ହଠାତ୍ ସାର୍ ବାଡ଼ି ଧରି ମୁଁ ଶୋଇଥିବା ଦ୍ୱିତୀୟ ମହଲା କୋଠରିରେ ପହଞ୍ଚିଗଲେ । ମୁଁ ଯେତିକି ଆଶ୍ଚର୍ଯ୍ୟ ହେଲି ତା'ଠାରୁ ଅଧିକ ଦୁଃଖିତ ହେଲି ସାର୍‌ଙ୍କୁ ଏପରି କଷ୍ଟ ଦେଇଥିବାରୁ । ମୁଁ ସାର୍‌ଙ୍କ ଛାତ୍ର ନୁହେଁ । କେତେ ଦିନର ବା ପରିଚୟ । କିନ୍ତୁ ସାର୍‌ଙ୍କ ଆତ୍ମୀୟତା ମୋତେ ବିମୁଗ୍ଧ କରିଥିଲା । ତାଙ୍କର ଅନାବିଳ ସ୍ନେହ, ଶ୍ରଦ୍ଧା, ସର୍ବୋପରି ମଣିଷପଣିଆ ଆଗରେ ମୁଁ ନତମସ୍ତକ ହୋଇଥିଲି ।

ଆଜି ସାର୍ ନାହାନ୍ତି – ବିଶ୍ୱାସ ହେଉନି । ଜନ୍ମ ହେଲେ ମୃତ୍ୟୁ ଧ୍ରୁବ ସତ୍ୟ । ତଥାପି ଆମେ ଜଣେ ସୁହୃଦୟ ମଣିଷକୁ ହରାଇ ମ୍ରିୟମାଣ ହୋଇପଡ଼ିଛୁ । ପବିତ୍ର ଗୁଣ୍ଡିଚା ଯାତ୍ରାରେ ସାର୍ ମହାଯାତ୍ରାର ସୁଯୋଗ ପାଇଲେ । ଧନ୍ୟ ସେ ପୁଣ୍ୟାତ୍ମା । ତାଙ୍କ ଆତ୍ମା ସଦ୍‌ଗତି ପାଇବ ନିଶ୍ଚୟ । ତଥାପି ଭଗବାନ୍ ତାଙ୍କର ଅମର ଆତ୍ମାର ସଦ୍‌ଗତି କରନ୍ତୁ ଓ ତାଙ୍କ ପରିବାରଙ୍କୁ ଧୈର୍ଯ୍ୟ ଦିଅନ୍ତୁ ଏହାହିଁ ତାଙ୍କ ନିକଟରେ ମୋର ବିନମ୍ର ପ୍ରାର୍ଥନା ।

ସ୍ୱାତୀ ଭବନ
ଷ୍ଟେସନ ବଜାର, କଟକ

# ଡଃ ଗୋକୁଳାନନ୍ଦ ମହାପାତ୍ର : ଶୋକାର୍ତ୍ତ ଶ୍ରଦ୍ଧା ନିବେଦନ

**ଡାକ୍ତର ରବିରଞ୍ଜନ ସାହୁ**

ଓଡ଼ିଶାର ବିଜ୍ଞାନ ଗଗନରୁ ଏକ ଉଜ୍ଜ୍ୱଳ ନକ୍ଷତ୍ର ଅନ୍ତର୍ହିତ ହୋଇଯାଇଛି । ରାଜ୍ୟର ବୈଜ୍ଞାନିକ ତଥା ବୌଦ୍ଧିକ ମହଲକୁ ଶୋକସନ୍ତପ୍ତ କରି ପ୍ରଫେସର ଡଃ ଗୋକୁଳାନନ୍ଦ ମହାପାତ୍ର ୯୨ ବର୍ଷ ବୟସରେ ସବୁଦିନ ଲାଗି ଅବର୍ତ୍ତମାନ ହୋଇଯାଇଛନ୍ତି । ବାର୍ଦ୍ଧକ୍ୟ ଓ ହୃଦ୍‌ରୋଗରେ ଆକ୍ରାନ୍ତହୋଇ ଅହମ୍ମଦାବାଦର ଏକ ଘରୋଇ ନର୍ସିଂହୋମ୍‌ରେ ଚିକିତ୍ସିତ ହେଉଥିବାବେଳେ ଗତ ୧୦ ତାରିଖ ରାତି ୯ଟାବେଳେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଓଡ଼ିଶାରେ ଓଡ଼ିଆ ଭାଷା ମାଧ୍ୟମରେ ବିଜ୍ଞାନକୁ ଲୋକପ୍ରିୟ କରାଇବା କ୍ଷେତ୍ରରେ ସେ ଥିଲେ ଅଗ୍ରଦୂତ । ନିତ୍ୟନୂତନ ବୈଜ୍ଞାନିକ ତଥ୍ୟ ଅନୁସନ୍ଧାନ ଲାଗି ତାଙ୍କର ନିରଳସ ଉଦ୍ୟମ ଥିଲା ଅବିରତ । ବିଜ୍ଞାନ ଶିକ୍ଷା ଓ ଗବେଷଣାର ପ୍ରସାରଦ୍ୱାରା ସାମଗ୍ରିକଭାବେ ବୈଜ୍ଞାନିକ ଚେତନା ସୃଷ୍ଟି କରିବା ଲାଗି ସେ ନିରନ୍ତର ତତ୍ପର ଥିଲେ । ଆଜି ତାଙ୍କର ବିୟୋଗରେ ଏସବୁ କ୍ଷେତ୍ରରେ ଓ ବିଶେଷକରି ବିଜ୍ଞାନକୁ ଲୋକପ୍ରିୟ କରିବା ଓ ବିଜ୍ଞାନ ଶିକ୍ଷା ପ୍ରତି ଆଗ୍ରହ ବୃଦ୍ଧି କରିବା କ୍ଷେତ୍ରରେ ଯେଉଁ ବିରାଟ ଶୂନ୍ୟତା ସୃଷ୍ଟି ହେଲା, ତା' ଅନେକ ଦିନ ଯାଏ ଅପୂରଣୀୟ ରହିବ । ବିଜ୍ଞାନର ଗୂଢ଼ ଓ ଜଟିଳ ତଥ୍ୟଗୁଡ଼ିକୁ ସରଳ ଭାବରେ ବୁଝାଇବା ଲାଗି ପ୍ରଫେସର ମହାପାତ୍ର ଯେଭଳି ପାରଦର୍ଶୀ ଥିଲେ, ସେଭଳି ସେସବୁକୁ ଓଡ଼ିଆ ଭାଷାରେ ବୋଧଗମ୍ୟ ଢଙ୍ଗରେ ପ୍ରକାଶ କରିବାରେ ଥିଲେ ସିଦ୍ଧହସ୍ତ । ଉଭୟ ବିଜ୍ଞାନ ଓ ଓଡ଼ିଆ ଭାଷା ଉପରେ ତାଙ୍କର ଅନନ୍ୟ ଦଖଲ ଥିଲା ।

ପ୍ରଫେସର ମହାପାତ୍ର ୧୯୨୨ ମସିହାରେ ଭଦ୍ରକ ଜିଲ୍ଲାରେ ପିତା ବିଜୟ ଗୋବିନ୍ଦ ମହାପାତ୍ର ଓ ମାତା ଫୁଲଦେବୀଙ୍କ କୋଳ ମଣ୍ଡନ କରି ଜନ୍ମଗ୍ରହଣ କରିଥିଲେ । କୁଆଁସ ପ୍ରାଇମେରୀ ସ୍କୁଲରେ ପ୍ରାଥମିକ ଶିକ୍ଷା ଓ କଟକରେ ସ୍ନାତକ ଶିକ୍ଷା ଓ କଲିକତା ବିଶ୍ୱବିଦ୍ୟାଳୟରେ ରସାୟନ ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରି ରେଭେନ୍ସା କଲେଜରେ ରସାୟନ ବିଜ୍ଞାନ ବିଭାଗର ଅଧ୍ୟାପକ ଭାବରେ ଡଃ ମହାପାତ୍ର ତାଙ୍କ କର୍ମମୟ ଜୀବନ ଆରମ୍ଭ କରିଥିଲେ । ପରବର୍ତ୍ତୀ ଅବସ୍ଥାରେ ସେ ସେଇ ବିଭାଗର ମୁଖ୍ୟ ଭାବରେ ଦୀର୍ଘଦିନ ଧରି ଦାୟିତ୍ୱ ତୁଲାଇଥିଲେ । ତାଙ୍କର ପ୍ରଗାଢ଼ ଉଦ୍ୟମ ଫଳରେ ରସାୟନ ବିଭାଗର ବହୁବିଧ ଉନ୍ନତି ହେବା ସହିତ ରାଜ୍ୟରେ ରସାୟନ ବିଜ୍ଞାନ ଶିକ୍ଷାର ଦିଗନ୍ତ ପ୍ରସାରିତ ହୋଇଥିଲା । ସେ ମଧ୍ୟ କିଛି ବର୍ଷ ଧରି ଭୁବନେଶ୍ୱରର ମହର୍ଷି କଲେଜର ଅଧ୍ୟକ୍ଷ ଓ ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଏକାଡେମୀର ନିର୍ଦ୍ଦେଶକ ଭାବରେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ତୁଲାଇଥିଲେ । ୧୯୮୧ ମସିହାରେ ଡଃ ମହାପାତ୍ର ସରକାରୀ ଚାକିରିରୁ ଅବସର ଗ୍ରହଣ କଲେ ବି ଛାତ୍ର ଜୀବନରୁ ଆରମ୍ଭ ହୋଇଥିବା ଓଡ଼ିଆରେ ବିଜ୍ଞାନ ସାହିତ୍ୟ ସୃଷ୍ଟି ଲାଗି ତାଙ୍କ ଉଦ୍ୟମ ଶେଷ ନିଃଶ୍ୱାସ ତ୍ୟାଗ କରିବା ଯାଏ ଅବ୍ୟାହତ ରହିଥିଲା ।

ଜଣେ ଲୋକପ୍ରିୟ ବିଜ୍ଞାନ ଲେଖକଭାବେ ସୁବିଦିତ ଡଃ ମହାପାତ୍ର ହେଉଛନ୍ତି ଓଡ଼ିଆ ବିଜ୍ଞାନ ସାହିତ୍ୟର ଜନକ । କଲିକତାରେ ସ୍ନାତକୋତ୍ତର ଛାତ୍ର ଥିବାବେଳେ 'କୋଇଲା' ଉପରେ ଲେଖିଥିବା ଏକ ବୈଜ୍ଞାନିକ ପ୍ରବନ୍ଧ ମାସିକ ପତ୍ରିକା 'ସହକାର'ରେ ପ୍ରକାଶ ପାଇଥିଲା । ତାହାହିଁ ହେଉଛି ଓଡ଼ିଆ ଭାଷାରେ ଲିଖିତ ସର୍ବପ୍ରଥମ ବୈଜ୍ଞାନିକ ଆଲେଖ୍ୟ । ତା' ପରେ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ବୈଜ୍ଞାନିକ ଲେଖାମାନ ପ୍ରକାଶ ପାଇଥିଲା । ୧୯୫୩ ମସିହାରେ ପ୍ରଥମେ ସେ 'ପୃଥିବୀ ବାହାରେ ମଣିଷ' ନାମରେ ଏକ ବୈଜ୍ଞାନିକ ଉପନ୍ୟାସ ଲେଖି ପାଠକୀୟ ଆଦୃତ ଲାଭ କରିଥିଲେ । ବିଜ୍ଞାନକୁ ଲୋକପ୍ରିୟ କରିବା ଲାଗି ଡଃ ମହାପାତ୍ର

୧୦୦ରୁ ଅଧିକ ବୈଜ୍ଞାନିକ ପୁସ୍ତକ ଏବଂ ଛାତ୍ରଛାତ୍ରୀଙ୍କ ଶିକ୍ଷା ଲାଗି ପାଠ୍ୟପୁସ୍ତକ ରଚନା କରିଥିଲେ । ସେସବୁ ମଧ୍ୟରେ 'ଉଡ଼ନ୍ତା ଥାଳିଆ', 'କୃତ୍ରିମ ଉପଗ୍ରହ', 'ଚନ୍ଦ୍ରର ମୃତ୍ୟୁ', 'ନିଃଶବ୍ଦ ଗୋଧୂଳି', 'ମାଡ୍ୟାମ୍ କ୍ୟୁରୀ' ଇତ୍ୟାଦି ପୁସ୍ତକ ବହୁ ଭାବରେ ପ୍ରଶଂସିତ ଓ ଆଦୃତ ହୋଇଥିଲା । 'ଏ ଯୁଗର ଶ୍ରେଷ୍ଠ ଆବିଷ୍କାର' ଲାଗି ସେ ଓଡ଼ିଆ ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇଥିଲେ । ନିରଳସ ସାରସ୍ୱତ ସାଧନା, ଗବେଷଣା ଓ ବୈଜ୍ଞାନିକ ଅନୁସନ୍ଧିତ୍ସା ଲାଗି ଡଃ ମହାପାତ୍ରଙ୍କୁ ବହୁ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧିତ ଓ ସମ୍ମାନିତ କରାଯାଇଥିଲା । ସେସବୁ ମଧ୍ୟରେ ୨୦୧୦ ମସିହାରେ ବିଜ୍ଞାନ କୃତି ଲାଗି 'କଳିଙ୍ଗ ପୁରସ୍କାର' ଓ 'ଆପି. କେ. ପରିଜା ସମ୍ମାନ' ବିଶେଷ ଉଲ୍ଲେଖଯୋଗ୍ୟ । ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ତାଙ୍କୁ ସମ୍ମାନଜନକ ଡକ୍ଟରେଟ ଡିଗ୍ରୀ ପ୍ରଦାନ କରାଯାଇଥିଲା ।

ଜଡ଼ବିଜ୍ଞାନର ଛାତ୍ର ହେଲେବି ଡଃ ମହାପାତ୍ରଙ୍କ ହୃଦୟ ଦରଦ, ମାନବିକତା ଓ କରୁଣାର ପ୍ଲାବନରେ ନିରନ୍ତର ପ୍ଲାବିତ ଥିଲା । ସମାଜର ନବଜାତ ଶିଶୁ, ଅସହାୟ ବୃଦ୍ଧ ଓ ଅନାଥ ଶିଶୁଙ୍କ ଥଇଥାନ ଓ ବିକାଶକୁ ସେ ଜୀବନର ଅନ୍ୟତମ ପ୍ରଧାନ ବ୍ରତ ଭାବରେ ଗ୍ରହଣ କରିଥିଲେ ଏବଂ ୨୦୧୦ ମେ ମାସରେ ଡଃ ଗୋକୁଳାନନ୍ଦ 'ନିତ୍ୟାନନ୍ଦ ମହାପାତ୍ର ଫାଉଣ୍ଡେସନ୍' ନାମକ ଏକ ସଂସ୍ଥା ଗଠନ କରି ତା' ମାଧ୍ୟମରେ ସେମାନଙ୍କୁ ଯଥାସମ୍ଭବ ସହାୟତା ପ୍ରଦାନ କରୁଥିଲେ । ସଂସ୍ଥାର ସେ ଆଜୀବନ ଅଧ୍ୟକ୍ଷ ଥାଇ ଏଭଳି ମହନୀୟ ସମାଜ ସେବାରେ ଦାୟିତ୍ୱ ତୁଲାଉଥିଲେ ଏବଂ ତଦ୍ଦ୍ୱାରା ସେ ସୂଚିତ କରିଦେଉଥିଲେ ଯେ, ମଣିଷ ଯେକୌଣସି ସ୍ତରରେ ଥାଉ ନା କାହିଁକି, ସମାଜ ପ୍ରତି ତା'ର କର୍ତ୍ତବ୍ୟ ବିଷୟରେ ଆଖି ବୁଜି ଦେଇପାରିବ ନାହିଁ ।

ଧୀର ସ୍ଥିର, ଭାବଗମ୍ଭୀର ଅତ୍ୟନ୍ତ ସ୍ନେହୀ, ନିଷ୍କପଟ, ଉଦାର, ଚିନ୍ତାଶୀଳ ଡଃ ମହାପାତ୍ର ବ୍ୟକ୍ତିଗତ ଜୀବନରେ ଥିଲେ ଋଷିପ୍ରତିମ । ଜୀବନର ପ୍ରତିଟି କ୍ଷେତ୍ରରେ ଯଥାବିଧି କର୍ତ୍ତବ୍ୟ ଯଥୋଚିତ ଭାବରେ ପାଳନ କରିବା ଥିଲା ତାଙ୍କର ଆଦର୍ଶସ୍ଥାନୀୟ ବୈଶିଷ୍ଟ୍ୟ । ଆଜି ତାଙ୍କର ତିରୋଧାନ ଯେଭଳି ଅତ୍ୟନ୍ତ ଶୋକାବହ, ତାଙ୍କର ଆଦର୍ଶ ସେଇଭଳି ପିଢ଼ି ପରେ ପିଢ଼ିଙ୍କ ପାଇଁ ଅନୁସରଣୀୟ । ସ୍ୱର୍ଗତ ମହାପାତ୍ରଙ୍କ ଉଦ୍ଦେଶ୍ୟରେ ଶତକୋଟି ପ୍ରଣାମର ନୈବେଦ୍ୟ ଅର୍ପଣ କରି ଆମେ ତାଙ୍କ ଆତ୍ମାର ସଦ୍‌ଗତି କାମନା କରୁଛୁ ।

ସଭାପତି
ଜ୍ଞାନବିଜ୍ଞାନ ଫାଉଣ୍ଡେସନ
ଚାନ୍ଦିନୀଚୌକ, କଟକ-୨

# ମୃତ୍ୟୁଞ୍ଜୟ

ଭାରତୀ ବେହେରା

ଜୁଲାଇ ୧୦ ତାରିଖ, ବୁଧବାର ରାତ୍ରି ୧୦ଟା ବେଳେ ଆମର ପୂଜ୍ୟ ଶିକ୍ଷକ, ବିଜ୍ଞାନୀ, ଗବେଷକ, ଲୋକପ୍ରିୟ ବିଜ୍ଞାନ ଲେଖକ ଓ ସମାଜସେବୀ ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କର ଦୀର୍ଘ ୯୧ ବର୍ଷର ଅଭିଯାନ ସମାପ୍ତ ହୋଇଗଲା ଅହମ୍ମଦାବାଦର ଏକ ଘରୋଇ ଡାକ୍ତରଖାନରେ । ଶିକ୍ଷକ ସେ ଥିଲେ ପେସାରେ, କିନ୍ତୁ ନିଶା ଥିଲା ବିଜ୍ଞାନର ଯୁଗାନ୍ତକାରୀ ଉଦ୍ଭାବନ ଓ ସଫଳ ପ୍ରୟୋଗକୁ ଲୋକଲୋଚନକୁ ଆଣିବା । ନିଜର ଆମ୍ରପଲ୍ଲୀ ବାସଭବନରେ ହେଉଥିଲା ବିଜ୍ଞାନ ଚର୍ଚ୍ଚା । ବିଜ୍ଞାନ ପ୍ରଚାର ସମିତିର ବିଜ୍ଞାନପ୍ରେମୀ ସଭ୍ୟମାନଙ୍କପାଇଁ ଆମ୍ରପଲ୍ଲୀ ଥିଲା ଏକ ଆକର୍ଷଣ ।

ମୁଁ ପ୍ରଥମେ ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କୁ ଜାଣିଥିଲି ଆମ ସ୍କୁଲରେ ପ୍ରଚଳିତ ବିଜ୍ଞାନ ପୁସ୍ତକର ଲେଖକ ଭାବରେ । ତା'ପରେ ରେଭେନ୍‌ସା କଲେଜରେ ପଢ଼ିବାବେଳେ ଅନୁଭବ କରିଥିଲି ସେହି ମହାନ୍ ରସାୟନବିତ୍ ଶିକ୍ଷକଙ୍କର ଅମାପ ଜ୍ଞାନ, ଅଗାଧ ପାଣ୍ଡିତ୍ୟ, ରସାୟନ ବିଜ୍ଞାନକୁ ସରଳ ଭାବରେ ବୁଝାଇବାର ଶୈଳୀ ଓ ଛାତ୍ରବତ୍ସଳତା । ଜଣେ କୃତୀ ଶିକ୍ଷକର ଆଚାର, ବ୍ୟବହାର, ଆଚରଣ, କଥାବାର୍ତ୍ତା, ଚାଲିଚଳଣ କିପରି ହେବା ଉଚିତ ତାହା ତାଙ୍କଠାରେ ପରିପ୍ରକାଶ ହେଉଥିଲା ଶ୍ରେଣୀଗୃହ, ପରୀକ୍ଷାଗାର, ମହାବିଦ୍ୟାଳୟ ପ୍ରାଙ୍ଗଣ ତଥା ରାସ୍ତାଘାଟରେ । ବିଜ୍ଞାନ ପ୍ରଚାର ସମିତିର ସଭ୍ୟ ହେବା ପରେ ସେହି ମନୀଷୀଙ୍କର ନିକଟତର ହେବାର ସୁଯୋଗ ପାଇଥିଲି ।

ଲୋକପ୍ରିୟ ବିଜ୍ଞାନ ଲେଖକ ଓ ବିଜ୍ଞାନ ପ୍ରଚାର ସମିତିର ପୁରୋଧା ସେଇ ମହାନ୍ ବ୍ୟକ୍ତିତ୍ୱଙ୍କର ଉପନ୍ୟାସ ପୃଥିବୀ ବାହାରେ ମଣିଷ, ଉଡ଼ନ୍ତା ଥାଳିଆ, ଚନ୍ଦ୍ରର ମୃତ୍ୟୁ, ନିଃଶବ୍ଦ ଗୋଧୂଳି ଓ ଆହୁରି ଅନେକ ଛୋଟରୁ ବଡ଼ ସମସ୍ତଙ୍କଦ୍ୱାରା ବିଶେଷ ଭାବରେ ଆଦୃତ ହୋଇଛି । ଖାଲି ବିଜ୍ଞାନ ଲେଖାରେ ନିଜକୁ ସୀମିତ ନ ରଖି ସେ ସମାଜର ଭିନ୍ନକ୍ଷମ, ଅନାଥ ଶିଶୁଙ୍କୁ ସାହାଯ୍ୟ କରିବାପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ବିଜ୍ଞାନପ୍ରେମୀ ଛାତ୍ର ତଥା ଗବେଷକଙ୍କୁ ଉତ୍ସାହିତ କରିବାପାଇଁ ସେ ଡଃ ଗୋକୁଳାନନ୍ଦ 'ନିତ୍ୟାନନ୍ଦ ମହାପାତ୍ର ଫାଉଣ୍ଡେସନ' ନାମରେଏକ ସଂଗଠନ କରିଥିଲେ । ରେଭେନ୍‌ସା ମହାବିଦ୍ୟାଳୟରେ ଗଢ଼ି ଉଠିଥିବା ଜୈବ ରସାୟନ ବିଜ୍ଞାନାଗାର, ଉତ୍କଳ ବିଶ୍ୱବିଦ୍ୟାଳୟରେ ଜୈବ ରସାୟନ ବିଜ୍ଞାନାଗାର, ବାବାସାଗର ବିଦ୍ୟାପୀଠରେ ନିର୍ମିତ ହୋଇଥିବା ସଭାଗୃହ ହେଉଛି ସେହି ମହାନ୍ ଶିକ୍ଷାବିତ୍ ଗୋକୁଳାନନ୍ଦ ମହାପାତ୍ରଙ୍କର ଦାନ ।

ତାଙ୍କ ମରଶରୀର ଆଜି ଆମ ସମ୍ମୁଖରେ ନାହିଁ, କିନ୍ତୁ ସେ ପାଳଟି ଯାଇଛନ୍ତି ଆମର ପରମ୍ପରା, ଐତିହ୍ୟ, ଅମର ଓ ମୃତ୍ୟୁଞ୍ଜୟୀ । ତାଙ୍କର ମରଶରୀର ନ ଥିଲେ ବି କୌଣସି ବିଜ୍ଞାନପ୍ରେମୀ ତାଙ୍କୁ ଭୁଲିପାରିବେନି । ସେହି ଅମର ଆତ୍ମାର ସଦ୍‌ଗତିପାଇଁ ମୁଁ ଭଗବାନ୍‌ଙ୍କ ପାଖରେ ପ୍ରାର୍ଥନା କରୁଛି ।

ନାରାୟଣ ମିଶ୍ର ଲେନ୍, କଟକ – ୩

# ଆମ୍ରପଲ୍ଲୀରେ ସୂର୍ଯ୍ୟାସ୍ତ

**ସୁଜିତାଭ ଶତପଥୀ**

୧୧.୦୭.୨୦୧୩ ତାରିଖ ସବୁଦିନ ପରି ଶ୍ରୁତି ବିଦ୍ୟାମନ୍ଦିର ଜଗତ୍‌ପୁରରେ ସକାଳ ୬ଟାରୁ ୭ଟା ପର୍ଯ୍ୟନ୍ତ ବେଦାନ୍ତ କ୍ଲାସ୍‌ରେ ଯୋଗଦେଇ ଫେରିଲାବେଳେ କାର୍ ଭିତରେ ରଖିଥିବା ମୋବାଇଲ୍ ଫୋନ୍‌ଟିକୁ ପରୀକ୍ଷା କରିନିଏ କିଛି କଲ୍ ଅଛି କି ! ସେଦିନ ଥିଲା ୫ଗୋଟି ମିସ୍ କଲ୍ । ବିଜ୍ଞାନ ପ୍ରଚାର ସମିତିର ସହ ସଂପାଦକଙ୍କଠାରୁ ତୁରନ୍ତ ପୁଣି କଲ୍‌ଟିଏ ପାଇଲି – ସାର୍ ଚାଲିଗଲେ – ସଙ୍ଗେ ସଙ୍ଗେ ମାନସ ପଟରେ ଆସିଗଲା ଦୋଳମୁଣ୍ଡାଇସ୍ଥିତ ଆମ୍ରପଲ୍ଲୀର ସେହି କୁମୁଦିନୀ ସ୍ମୃତି ଭବନ - ଉପର ଘରୁ ସାର୍ କିପରି ବାଡ଼ିଟିଏ ଧରି ଧୀରେ ଧୀରେ ପାଦ ପକାଇ ଆସି ବସନ୍ତି ବିଜ୍ଞାନ ପ୍ରଚାର ସମିତି ବୈଠକର ସଭାପତି ଆସନରେ –

ଓଡ଼ିଶାରେ ବିଜ୍ଞାନକୁ ଲୋକପ୍ରିୟ ସୃଜନାତ୍ମକ ବିଭବରେ ପରିଣତ କରିବା କ୍ଷେତ୍ରରେ ଯେଉଁମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଥିଲେ ଅଗ୍ରଗଣ୍ୟ । ୨୨.୦୫.୧୯୨୨ରେ ଭଦ୍ରକର ବିଶିଷ୍ଟ ବ୍ୟବସାୟ ସ୍ୱର୍ଗତ ବିଜୟଗୋବିନ୍ଦ ମହାପାତ୍ର ଓ ସ୍ୱର୍ଗତା ଗୋବିନ୍ଦ ମହାପାତ୍ର ଓ ସ୍ୱର୍ଗତା ଶୁକଦେବୀଙ୍କ ଭାଗ୍ୟାକାଶରେ ସେହି ବାଳ ସୂର୍ଯ୍ୟଙ୍କର ପହଲି କିରଣ ବିଚ୍ଛୁରିତ ହୋଇଥିଲା । ତୁଳସୀ ଦୁଇ ପତ୍ରରୁ ବାସେ, ତାଙ୍କର ପିଲାଦିନର ଲକ୍ଷ୍ୟ ବିଜ୍ଞାନ ପଢ଼ିବି, ବିଜ୍ଞାନ ସମ୍ପର୍କିତ ଗବେଷଣା କରିବି ଏବଂ ସମାଜରେ ବିଜ୍ଞାନ ସଂପର୍କରେ ଜନ ସଚେତନା ସୃଷ୍ଟି କରିବି । ୧୯୪୫ରୁ ୧୯୪୭ ସେ ଯେତେବେଳେ କଲିକତା ବିଶ୍ୱବିଦ୍ୟାଳୟରେ ଏମ୍.ଏସ.ସି. ପଢୁଥିଲେ ସେହି ଦିନୁ କଲିକତା ଆକାଶବାଣୀରୁ ଓଡ଼ିଶାପାଇଁ ରାତି ୯.୩୦ରୁ ୧୦ଟା ଯାଏ ଓଡ଼ିଆ କାର୍ଯ୍ୟକ୍ରମରେ ବିଜ୍ଞାନ ପ୍ରସଙ୍ଗ ଉପରେ ତାଙ୍କ ଲିଖିତ ପ୍ରବନ୍ଧ ପ୍ରସାରିତ ହେଉଥିଲା ।

ସାର୍‌ଙ୍କ ଲିଖିତ ପ୍ରବନ୍ଧ ପ୍ରଥମେ ପ୍ରକାଶିତ ହୁଏ – ବାମଣ୍ଡାରୁ ଡକ୍ଟର ମାୟାଧର ମାନସିଂହଙ୍କ ସଂପାଦନାରେ ପ୍ରକାଶିତ 'ଶଙ୍ଖ' ନାମକ ଓଡ଼ିଆ ପତ୍ରିକାରେ । ଉକ୍ତ ପତ୍ରିକାରେ ଧାରାବାହିକ ଭାବେ ପ୍ରତି ମାସରେ ତାଙ୍କର ଲେଖା ବାହାରୁଥିଲା ଏବଂ ସେ ପ୍ରତି ଲେଖାପାଇଁ ୫ ଟଙ୍କା ପାଉଥିଲେ । ତାଙ୍କର ପ୍ରଥମ ପୁସ୍ତକ 'ବିଜ୍ଞାନ ବିସ୍ମୟ' ୧୯୪୯ ମସିହା କଟକର ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର ପ୍ରକାଶିତ କରିଥିଲେ । ସେହିବର୍ଷ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗ ଦେଇଥାନ୍ତି । ତାଙ୍କର ମାନସି ସନ୍ତାନ 'ବିଜ୍ଞାନ ପ୍ରଚାର ସମିତି' ଭୂମିଷ୍ଠ ହୁଏ ୧୯୪୯ ମସିହାରେ । ଉଦ୍ଦେଶ୍ୟ ଥିଲା ବିଜ୍ଞାନର ପ୍ରଚାର ପ୍ରସାର ଓ ତା'ର ସଚେତନତା ସୃଷ୍ଟି କରିବା । ଦୀର୍ଘ ୬୪ ବର୍ଷ ହେଲା ଏହି ଅନୁଷ୍ଠାନ ସକ୍ରିୟ ରହି ବିଜ୍ଞାନକୁ ଲୋକପ୍ରିୟ କରିବାରେ ସଫଳ ପଦକ୍ଷେପ ନେଇ ଆସୁଛି । ଏହି ବିଜ୍ଞାନ ପ୍ରଚାର ସମିତିର ସଭାପତି ପଦ ମଣ୍ଡନ କରି ଆସୁଥିଲେ ସାର୍ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର । ଯଦିଓ ମୁଁ ସାର୍‌ଙ୍କର ଛାତ୍ର ଥିଲି, ୧୯୬୨ରୁ ୧୯୬୬ ପର୍ଯ୍ୟନ୍ତ ଏବଂ ୧୯୬୮ରେ ଉଦ୍ଭିଦ ବିଜ୍ଞାନରେ ଏମ୍.ଏସ୍.ସି. କରି ୧୯୭୦ରୁ ଓଡ଼ିଶା ସରକାରଙ୍କ ଉଚ୍ଚଶିକ୍ଷା ବିଭାଗ ଛାଡ଼ି କାନାରା ବ୍ୟାଙ୍କ୍‌ରେ ଯୋଗ ଦେଇଥିଲି ଓ ୨୦୦୧ରେ କଲିକତାରୁ ଅବସର ଗ୍ରହଣ କରି କଟକ ଆସିଲି ।

ପରେ ପରେ ବିଜ୍ଞାନ ପ୍ରଚାର ସମିତିର ଆଜୀବନ ସଦସ୍ୟରୂପେ ଯୋଗଦେଇ ସାର୍‌ଙ୍କୁ ଅତି ନିକଟରେ ଦେଖିବାର ଏବଂ ବାର୍ତ୍ତାଳାପ କରିବାର ସୌଭାଗ୍ୟ ଅର୍ଜନ କରିଛି । ସନ୍ଥପୁରୁଷ, ବିଜ୍ଞାନ ପ୍ରେମୀ, ସରଳ, ଈଶ୍ୱର ବିଶ୍ୱାସୀ – ପରିଣତ ବୟସରେ ବି କର୍ମ ପ୍ରବଣତା ଦେଖି ସ୍ୱତଃ ମୁଣ୍ଡ ନଇଁଯାଏ ।

ପ୍ରଥମ ପୁସ୍ତକ ବିଜ୍ଞାନ ବିସ୍ମୟ (୧୯୪୯)ରୁ ଲେଖା ଆରମ୍ଭ । ଅନ୍ୟ ପୁସ୍ତକ ପୃଥିବୀ ବାହାରେ ମଣିଷ, ଚନ୍ଦ୍ରର ମୃତ୍ୟୁ, ଉଡ଼ନ୍ତା ଥାଳିଆ, ମଧ୍ୟାହ୍ନର ଅନ୍ଧକାର, ପାଶ୍ଚାତ୍ୟ ସ୍ମୃତି, ନିଳଚକ୍ରବାଳ ସେପାରେ, ଚତୁର୍ଥ ପରିସର, ବୈଜ୍ଞାନିକ ଜ୍ଞାନକୋଷ ଇତ୍ୟାଦି ୧୦୨ଟି ବିଜ୍ଞାନଧର୍ମୀ ପୁସ୍ତକ ପ୍ରକାଶିତ ହୋଇଛି । ସେ ଶେଷ ପର୍ଯ୍ୟନ୍ତ ବ୍ୟସ୍ତଥିଲେ – ''ବୈଜ୍ଞାନିକ ଜ୍ଞାନକୋଷ ପୁସ୍ତକର ପରବର୍ତ୍ତୀ ସଂସ୍କରଣ କାର୍ଯ୍ୟରେ । ସାର୍ ବହୁ ପୁରସ୍କାର / ସମ୍ମାନରେ ସମ୍ମାନିତ । ଓଡ଼ିଶା ବିଜ୍ଞାନ ଏକାଡେମୀ ପୁରସ୍କାର, ବିଜ୍ଞାନଲୋକ ରୌପ୍ୟ ଜୟନ୍ତୀ ସମାରୋହ ସମ୍ମାନ, ପ୍ରାଣକୃଷ୍ଣ ପରିଜା ବିଜ୍ଞାନ ସାହିତ୍ୟ ସମ୍ମାନ, ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ତଥା କଳିଙ୍ଗ ସମ୍ମାନ ସହ ବିଭିନ୍ନ ଅନୁଷ୍ଠାନଦ୍ୱାରା ମଧ୍ୟ ସମ୍ବର୍ଦ୍ଧନା ପ୍ରାପ୍ତ ହୋଇଅଛନ୍ତି ।

ହେ ପ୍ରଜ୍ଞା ପୁରୁଷ, ଆପଣଙ୍କୁ ମୋର ନତମସ୍ତକ ପ୍ରଣାମ । ଆପଣଙ୍କ ହୃଦୟ ବିଗଳିତ ହୁଏ ସାଂପ୍ରତିକ ବିଜ୍ଞାନ ଶିକ୍ଷା ପଦ୍ଧତିକୁ ନେଇ । ଏକ ସାକ୍ଷାତ୍‌କାରରେ ସାର୍ କହିଥିଲେ – ମୁଁ ସାଂପ୍ରତିକ ଶିକ୍ଷା ପଦ୍ଧତି ନେଇ ଆଦୌ ସନ୍ତୁଷ୍ଟ ନୁହେଁ ଏବେ ଯେଉଁଭଳି ବିଜ୍ଞାନ ଶିକ୍ଷା ଦିଆଯାଉଅଛି, ତାହା ଉଭୟ ଛାତ୍ର/ଛାତ୍ରୀ ଓ ଅଭିଭାବକଙ୍କପାଇଁ ବିପଦପୂର୍ଣ୍ଣ । ପ୍ରାକ୍ଟିକାଲ୍ କ୍ଲାସ୍ ପ୍ରାୟତଃ ହେଉନାହିଁ । ଆମେ ପ୍ରଥମେ ପ୍ରାକ୍ଟିକାଲ୍ କରିଆରେ ବୁଝାଉଥିଲୁ, ତା'ପରେ ଥିଓରି କ୍ଲାସ୍‌ରେ ପଢ଼ାଉଥିଲୁ । ଏବେ କିନ୍ତୁ ଉଭୟ ମଧ୍ୟରେ ତାଳମେଳ ନାହିଁ । ଏ ଥିଲା ଜଣେ ବିଜ୍ଞାନ ପ୍ରେମୀଙ୍କ ହୃଦୟର ବ୍ୟଥା ।

୧୯୨୨ରେ ଯେଉଁ ବାଳ ସୂର୍ଯ୍ୟଙ୍କର ଉଦୟ ହୋଇଥିଲା, ତାହା ଆଜି ଆମ୍ରପଲ୍ଲୀରେ ଅସ୍ତ ହୋଇଗଲା । ସେଦିନ ସଂଧ୍ୟାରେ ଆମ୍ରପଲ୍ଲୀରୁ ସାର୍‌ଙ୍କ ଅନ୍ତୀମ ଯାତ୍ରାରେ ଯୋଗଦାନ କରି ଖାନନଗରର ସ୍ୱର୍ଗଦ୍ୱାର ମହା ଶ୍ମଶାନରେ ଅନ୍ତିମ ସଂସ୍କାରରେ ରହି ସେହି ଦିବ୍ୟ ଆତ୍ମାର ଉର୍ଦ୍ଧ୍ୱ ଗତିକୁ ଦର୍ଶନ କଲାବେଳେ ସ୍ମରଣରେ ଆସୁଥାଏ ।

*''ମଣିଷ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ*
*କର୍ମେ ଜିଏ ନର, କର୍ମ ଏକା ତା'ର ଜୀବନର ମାନଦଣ୍ଡ''*

ଉତ୍କଳମଣି ଗୋପବନ୍ଧୁଙ୍କର ଏହି ଉକ୍ତି ପାଇଁ ଏକ ମାତ୍ର ଦର୍ଶକ ହୋଇ ରହିଅଛି । ସାର୍ ଆଜି ନାହାନ୍ତି, ତାଙ୍କର ବିୟୋଗ ଓଡ଼ିଶାରେ ଏକ ଶୂନ୍ୟସ୍ଥାନ ସୃଷ୍ଟି କଲା । ପଞ୍ଚଭୂତର ଶରୀର ପଞ୍ଚଭୂତରେ ଲୀନ ହେଲା । ଆତ୍ମା ଅମର । ଦିବ୍ୟ ପୁରୁଷଙ୍କ ଆତ୍ମା ପରମାତ୍ମାଙ୍କ ଅଶେଷ କରୁଣାରେ ଶାନ୍ତି ଲାଭ କରୁ ।

ତାଙ୍କର ଅମୀୟ ଆଶିଷଧାରା ସମସ୍ତ ବିଜ୍ଞାନ ପ୍ରେମୀ ଲେଖକ, ଗବେଷକ ଓ ଛାତ୍ର ସମାଜକୁ ଋଦ୍ଧିମନ୍ତ କରୁ । ଆଜିର ଏହି ପବିତ୍ର ଦିବସରେ ସେହି ପବିତ୍ର ଆତ୍ମା ପ୍ରତି ମୋର ଭକ୍ତିପୂତ ପ୍ରଣତି ଜଣାଉଛି ଏବଂ ପରିବାରର ସଦସ୍ୟଗଣ ସାର୍‌ଙ୍କ ଗୁଣବତ୍ତାଗୁଡ଼ିକୁ ପାଥେୟ କରି ଆଗେଇ ଚାଲିବେ, ସେମାନଙ୍କ ପଥ କୁସୁମିତ ହେଉ, ଏହାହିଁ ଭଗବାନଙ୍କ ନିକଟରେ ମୋର ପ୍ରାର୍ଥନା ।

ଓଁ ତତ୍‌ସତ୍ ।।

କୋଷାଧକ୍ଷ : ବିଜ୍ଞାନ ପ୍ରଚାର ସମିତି
୧୦୦୧, ମହାନଦୀବିହାର, କଟକ

# କିମ୍ବଦନ୍ତୀ ପୁରୁଷ

**ଶ୍ରୀ କଲ୍ୟାଣ ମହାପାତ୍ର**

ଭାରତ ସଦ୍ୟ ସ୍ୱାଧୀନତା ପାଇଥାଏ । ଇଂରେଜମାନେ ଚାଲିଯାଇଥିଲେହେଁ ଇଂରାଜୀ ଭାଷାର ରାଜୁତି ଚାଲିଥାଏ । ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା, ଭାରୀ ଶିଳ୍ପରେ, ଦେଶ ବହୁତ ଅନୁନ୍ନତ ଥାଏ । ବିଜ୍ଞାନ ଶିକ୍ଷାର ପ୍ରସାରଦ୍ୱାରା ହିଁ ଦେଶର ବିକାଶ ସମ୍ଭବ ବୋଲି ପ୍ରଧାନମନ୍ତ୍ରୀ ନେହରୁ ଡାକରା ଦେଇଥାଆନ୍ତି । ବିଜ୍ଞାନ କ'ଣ ସର୍ବସାଧାରଣ ଜାଣିଲେ ହିଁ 'ଆ' ଜହ୍ନମାମୁ ସରଗଶଶୀ ବୋଲି କହିବାନି, ସୂର୍ଯ୍ୟ ପୃଥିବୀ ଚାରିକଡ଼େ ବୁଲୁଛି ବୋଲି କହିବାନି କି ଝାଡ଼ାବାନ୍ତି ରୋଗ ହେଲେ ମା' ବାଡ଼ି ଠାକୁରାଣୀଙ୍କୁ ସିରିଣି ଭୋଗ କରିବାନି ।''

ଦେଶରେ ଅଧିକାଂଶ ଲୋକ ଅଶିକ୍ଷିତ । ବିଜ୍ଞାନ ଶିକ୍ଷା ତ ଇଂରାଜୀରେ । ଆଜିପରି ସେତେବେଳେ ଓଡ଼ିଆ ଖବରକାଗଜ ପତ୍ରପତ୍ରିକାରେ ବିଜ୍ଞାନ ଲେଖା କିଛି ପ୍ରକାଶିତ ହେଉ ନ ଥିଲା । ବିଜ୍ଞାନର ପ୍ରସାର ହେବ କିପରି ? ଏହି ସମୟରେ ଜଣେ ଯୁବକ, — ରେଭେନ୍‌ସାରେ ତରୁଣ ଅଧ୍ୟାପକ ଗୋକୁଳାନନ୍ଦଙ୍କ ମୁଣ୍ଡରେ ଢୁକିଲା — ଓଡ଼ିଆ ଭାଷାରେ ବିଜ୍ଞାନର ପ୍ରଚାର କରାଇବା । କଟକର ରେଭେନ୍‌ସା କଲେଜ ଓ ମେଡିକାଲ କଲେଜ ଥିଲା ରାଜ୍ୟର ଅଗ୍ରଗାମୀ ବିଜ୍ଞାନ ଶିକ୍ଷାନୁଷ୍ଠାନ । ବହୁ ସିନିୟର ଅଧ୍ୟାପକ ଓ ଡାକ୍ତରଙ୍କୁ ପ୍ରସ୍ତାବ ଦେଲେ । ଅନେକ ଏକଥା, ଓଡ଼ିଆ ଭାଷାରେ ବିଜ୍ଞାନର ପ୍ରଚାର ପ୍ରସାର କରାଇବା ଚିନ୍ତାଧାରାକୁ ହସରେ ଉଡ଼ାଇଦେଲେ ।

ତେବେ ବି ଯୁବ ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ର ହତୋତ୍ସାହ ନ ହୋଇ ଚାରି ଜଣ ବହୁତ ବୟସ୍କ ଡାକ୍ତର ଓ ଅଧ୍ୟାପକଙ୍କୁ ନେଇ 'ବିଜ୍ଞାନ ପ୍ରଚାର ସମିତି' ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠା କଲେ । ସେଦିନ ଥିଲା ୧୯୪୯ ମସିହା ଅଗଷ୍ଟ ୭ ତାରିଖ । ଏହା ଥିଲା ପ୍ରତିଷ୍ଠା ଦିବସ । ଏହାର କାଂସ୍ୟ ଜୟନ୍ତୀ, ରଜତ ଜୟନ୍ତୀ, ସ୍ୱର୍ଣ୍ଣ ଜୟନ୍ତୀ, ହୀରକ ଜୟନ୍ତୀ ପାଳିତ ହୋଇଯାଇଛି । ୨୦୨୪ ମସିହା ଅଗଷ୍ଟ ୭ରେ ଆମେ ପ୍ଲାଟିନମ୍ ଜୟନ୍ତୀ ପାଳନ କରିଥାଆନ୍ତୁ । ତା' ପୂର୍ବରୁ ସାର୍ ଗୋକୁଳାନନ୍ଦ ମହାପାତ୍ର ଅନ୍ତର୍ହିତ ହୋଇଗଲେ ।

୬୪ ବର୍ଷର ଏହି ବିଜ୍ଞାନ ପ୍ରଚାର ସମିତି ଶାଖା ପ୍ରଶାଖା ମେଲି ବିରାଟ ବଟବୃକ୍ଷରେ ପରିଣତ ହୋଇଛି । ଭୁବନେଶ୍ୱର, ବୁର୍ଲା-ସମ୍ବଲପୁର, ବ୍ରହ୍ମପୁର, ରାଉରକେଲା, ଜଗତ୍‌ସିଂହପୁର ଆଦି ଅନେକ ସହରରେ ଏହାର ଶାଖା ବିସ୍ତାରିତ ହୋଇଛି । ଯେଉଁ ତରୁଣମାନେ ଅଧ୍ୟାପନା ବା ନିଜ ବୃତ୍ତିର ରୋଜଗାରକ୍ଷମ କାର୍ଯ୍ୟ ଛଡ଼ା ଲେଖାଲେଖିର ପାଖ ମାଡୁ ନ ଥିଲେ, ସେମାନେ ବିଜ୍ଞାନରେ ପୁସ୍ତକଟିଏ ଲେଖୁଛନ୍ତି ବା ବିଭିନ୍ନ ପତ୍ରପତ୍ରିକାରେ ସରଳ ଓଡ଼ିଆ ଭାଷାରେ ଜନପ୍ରିୟ ବିଜ୍ଞାନ ପ୍ରବନ୍ଧ, ଗଳ୍ପ, ନାଟକ, କବିତା ପ୍ରକାଶ କରୁଛନ୍ତି । ରାଜ୍ୟରେ ଶହ ଶହ ଏଭଳି ଲେଖକ, ଲେଖିକା ସୃଷ୍ଟି ହୋଇଛନ୍ତି ଯେଉଁମାନଙ୍କର ମନଛୁଆଁ ବିଜ୍ଞାନ ଲେଖା ରାଜ୍ୟର ବିଭିନ୍ନ ପତ୍ରପତ୍ରିକାରେ ପ୍ରତିଦିନ ବହୁଳ ଭାବରେ ଦେଖିବାକୁ ମିଳୁଛି । ପ୍ରତି ଶ୍ରେଣୀର ସରକାରୀ ସାହିତ୍ୟ ପୁସ୍ତକରେ ଏଭଳି ଲେଖାମାନ ପ୍ରକାଶିତ ହେଉଛି । ବିଭିନ୍ନ ବିଦ୍ୟାଳୟରେ ବର୍ଷର ବିଭିନ୍ନ ସମୟରେ ବିଜ୍ଞାନସଭା, ବିଜ୍ଞାନ ତର୍କ ପ୍ରତିଯୋଗିତା, ବିଜ୍ଞାନ ମେଳା ଆଦି ଅନୁଷ୍ଠିତ ହେଉଛି । ଆମ ଭାଷାରେ ବିଜ୍ଞାନର ବେଶ୍ ପ୍ରସାର ହୋଇଛି । ନିରକ୍ଷର ଜନସାଧାରଣଙ୍କ ମନରେ ବିଜ୍ଞାନ ସଚେତନତା ବଢ଼ିଛି । ସମାଜରୁ କେତେକାଂଶରେ ଅନ୍ଧବିଶ୍ୱାସ ଦୂରୀଭୂତ ହୋଇଛି । ଏ ସବୁର ମୂଳରେ ରହିଛି 'ବିଜ୍ଞାନ ପ୍ରଚାର ସମିତି', ଯାହାର ସ୍ରଷ୍ଟା ଥିଲେ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ।

ଗଛରୁ ସେଓ ତଳକୁ ପଡ଼ିଲା — ମାଧ୍ୟାକର୍ଷଣ ଶକ୍ତି ଯୋଗୁଁ । ଶହ ଶହ ବର୍ଷ ଧରି ଲୋକେ ଦେଖୁଥିଲେ ହେଁ, ତାହାର ଆବିଷ୍କାରକ ଆଇଜାକ୍ ନିଉଟନ୍ । ସେଇଭଳି ଓଡ଼ିଆ ଭାଷାରେ ମଧ୍ୟ ବିଜ୍ଞାନ ପଢ଼ିହେବ, ବୁଝିହେବ ଲେଖିହେବ ତାହା ତତ୍‌କାଳୀନ ବହୁ ବିଜ୍ଞାନୀଙ୍କ ମନରେ ବାସ୍ତବ ନ ଥିଲା, ଯାହାକୁ ବାସ୍ତବ ରୂପ ଦେଇଥିଲେ ଡଃ ମହାପାତ୍ର । ସାମାନ୍ୟ ୟୁରାନିୟମ ପରମାଣୁର ବିଖଣ୍ଡନ ଶୃଙ୍ଖଳ ପ୍ରକ୍ରିୟା (Chain Reaction) ଜରିଆରେ ବିପୁଳ ଶକ୍ତି ସୃଷ୍ଟି କଲାଭଳି ଡଃ ମହାପାତ୍ରଙ୍କ ୬୪ ବର୍ଷ ତଳର ସେଇ ସୃଜନୀ ବିଜ୍ଞାନର ବ୍ୟାପକ ପ୍ରଚାର ପ୍ରସାର କରିଛି, ଯାହାକି ଅବିରାମ ଆଗକୁ ମାଡ଼ି ଚାଲିଥିବ, ଚେନ୍ ପ୍ରକ୍ରିୟାଭଳି ।

ଡଃ ମହାପାତ୍ରଙ୍କ ସ୍ୱ-ଲେଖନୀ ବିଷୟରେ କହିବାର ଅବସର ନାହିଁ । ଶତାଧିକ ଜନପ୍ରିୟ ପୁସ୍ତକର ଲେଖକ ସେ । ପ୍ରବନ୍ଧ, ଗଳ୍ପ, ନାଟକ — ସବୁଗୁଡ଼ିକ ମନଛୁଆଁ । ବହୁ ସରକାରୀ ଅନୁଷ୍ଠାନ, ବିଶ୍ୱବିଦ୍ୟାଳୟ ଆଦିଦ୍ୱାରା ସେ ସମ୍ମାନିତ । ଅତି ଶାନ୍ତ, ମିଷ୍ଟଭାଷୀ ଏଭଳି ରକ୍ତମାଂସ ଦେହଧାରୀ ମଣିଷଟିଏ, ଯାହାଙ୍କର ୪୦ ବର୍ଷଧରି ସାହଚର୍ଯ୍ୟ ପାଉଥିଲି, ହଠାତ୍ ଶ୍ରୀଗୁଣ୍ଡିଚା ଦିନ ଇତିହାସକୁ ଚାଲିଗଲେ । ମନେହୁଏ, ସେ ଥିଲେ ଜଣେ କିମ୍ବଦନ୍ତୀ ପୁରୁଷ ।

ରାଣୀହାଟ, କଟକ-୧

# ବିଜ୍ଞାନ ପ୍ରଚାର ସମିତିର ସ୍ରଷ୍ଟା ଓ ପୃଷ୍ଠପୋଷକଙ୍କ ସ୍ମୃତିରେ

**କିଶୋର ମହାନ୍ତି**

ଓଡ଼ିଆ ଭାଷାର ଜଣେ ତପସ୍ୱୀ ସାଧକ, ବିଜ୍ଞାନ ସାହିତ୍ୟର ଅନ୍ୟତମ ସ୍ରଷ୍ଟା, ବିରଳ ସଙ୍ଗଠକ, ଛାତ୍ରବତ୍ସଳ ଅଧ୍ୟାପକ, ସରଳ ଜୀବନ ଓ ଉଚ୍ଚ ବିଚାରର ବ୍ୟକ୍ତିତ୍ୱ, ପରିବାରର ଭକ୍ତ, (ପିତା, ମାତା, ବଡ଼ଭାଇଙ୍କ ଆଜୀବନ ଦାୟାଦ, ପତ୍ନୀଙ୍କ ହୃଦୟକୁ ଚିହ୍ନିଥିବା ସ୍ୱାମୀ) ମହାନ୍ ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା ଓ ପୃଷ୍ଠପୋଷକ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କ ଚରଣେ ପ୍ରଣାମ ।

ଜୀବନର ପରମ ସୌଭାଗ୍ୟରୁ ବିଜ୍ଞାନ ପ୍ରଚାର ସମିତିର ଦାୟିତ୍ୱ ନେଇ ସାର୍‌ଙ୍କ ସହ ସମ୍ପର୍କ ଘନିଷ୍ଠ ହୋଇଛି କିନ୍ତୁ ପରୋକ୍ଷରେ ମୋତେ ଜଣେ ମା' ଓ ବାପାଙ୍କ ସାନ୍ନିଧ ମିଳିଛି । ସେମାନଙ୍କଠାରୁ ସୂକ୍ଷ୍ମରେ ମଧ୍ୟ ଆଶୀର୍ବାଦ ପାଉଛି ଓ ପାଉଥିବି ଏ ବିଶ୍ୱାସ ରଖୁଛି ।

ମୋ ଦୃଷ୍ଟିରେ ସାର୍ ନିରପେକ୍ଷ; ପ୍ରଫେସର, ଇଞ୍ଜିନିୟର, ଡାକ୍ତର, ଶିକ୍ଷକ ମଧ୍ୟରେ ପାତର ଅନ୍ତର ନ ଥିଲା ତାଙ୍କର, ତେଣୁ ବିଜ୍ଞାନ ପ୍ରଚାର ସମିତିରେ ଏବେ ମଧ୍ୟ କିଛି ସଦସ୍ୟ ଆତ୍ମୀୟତାର ସହ ଉପସ୍ଥିତ ରହୁଛନ୍ତି । ପ୍ରଫେସର ବିଜୟ ପଟ୍ଟନାୟକ, ତାଙ୍କର ସୁପୁତ୍ର ଓ ମୋର ଉପସ୍ଥିତିରେ ରାତିରେ ଏହି ଆଲୋଚନା ମୋତେ ସ୍ତମ୍ଭୀଭୂତ କରିଥିଲା ।

* ଶାଖା ସୃଷ୍ଟିପାଇଁ ସାର୍‌ଙ୍କ ଇଚ୍ଛା ପ୍ରବଳ କିନ୍ତୁ ବୁର୍ଲା ପରେ, ଭୁବନେଶ୍ୱର ଶାଖାର ପୁନର୍ଗଠନପାଇଁ ଜନଶିକ୍ଷଣ ସଂସ୍ଥାନ ପରିସରରେ ନିଖିଳ ପଟ୍ଟନାୟକଙ୍କୁ ଅନୁରୋଧ ଏବଂ ଅମୂଲ୍ୟକୃଷ୍ଣଙ୍କ ବାସଭବନରେ ମଧ୍ୟ ସମସ୍ତଙ୍କୁ ଆହ୍ୱାନ ଉତ୍ସାହିତ କରିଥିଲା । ଜଗତ୍‌ସିଂହପୁରରେ ଶାଖାପାଇଁ ଅନ୍ୟ ସମସ୍ତ ସଦସ୍ୟଙ୍କ ଅସହଯୋଗ ଥିଲେ ମଧ୍ୟ ସାର୍‌ଙ୍କ ଆଶୀର୍ବାଦ ନେଇ କେବଳ ମୁଁ କାମ କଲି ।

ଓଡ଼ିଶା ବିଜ୍ଞାନ କଂଗ୍ରେସର ବୈଜ୍ଞାନିକ ସମ୍ମାନପାଇଁ ସାର୍‌ଙ୍କୁ ନେବା ଓ ଆଣିବା ଦାୟିତ୍ୱ ମିଳିଥିଲା ଏବଂ କଳିଙ୍ଗ ସମ୍ମାନପାଇଁ 'ସାର୍‌ଙ୍କ' ପାଖେ ପାଖେ ରହିବା ସୁଯୋଗ ମିଳିଥିଲା । ଏଭଳି ସମ୍ମାନିତ ବ୍ୟକ୍ତିତ୍ୱଙ୍କ ଅତି ନିକଟତର ଥିବାରୁ ମୁଁ ଗର୍ବିତ ।

ମୋଭଳି ଏତେ ଛୋଟ ଲେଖକର ଗୋଟିଏ ଲେଖା ଦୁଇ ଥର ବାହାରିଲା କିପରି ଏ ଯୁକ୍ତି ଥିଲା ଅନ୍ୟତମ ବରିଷ୍ଠ ପ୍ରଫେସରଙ୍କର କିନ୍ତୁ ସେ ଲେଖା ଜଣେ ପ୍ରଖ୍ୟାତ ରସାୟନବିତ୍ ଓ ଭାରତୀୟ ପ୍ରଥମ ରସାୟନ ବିଜ୍ଞାନ ଅଧ୍ୟାପକଙ୍କ ହେତୁ ବହୁତ ଗବେଷଣାତ୍ମକ ସଂଗ୍ରହ, ଏହା ଥିଲା ପ୍ରଫେସର ଗୋକୁଳାନନ୍ଦଙ୍କ ଉତ୍ତର ।

ଅତି ନିକଟରେ ଥିବା ଯୋଗୁଁ ପ୍ରତିଦିନ ଦେଖା ସାକ୍ଷାତ୍ ହେଉଥିଲା କିନ୍ତୁ କାର୍ଯ୍ୟ ଜଞ୍ଜାଳରେ ବାହାରେ ରହୁଥିବାରୁ ଉପସ୍ଥିତ ହୋଇପାରୁ ନ ଥିଲି । ସାର୍ ଫୋନ୍ ଯୋଗେ ଅନୁରୋଧ କରୁଥିଲେ । କାମ କର । (ସମୟାନୁବର୍ତ୍ତିତା ଓ ପ୍ରତିକ୍ରିୟାବିହୀନ ସମ୍ରାଟଙ୍କୁ କୃତାଞ୍ଜଳି)

# ଅନାଥର ନାଥ ବୈଜ୍ଞାନିକ ପ୍ରଫେସର ଗୋକୁଳାନନ୍ଦ

**ଡାକ୍ତର ପଦ୍ମନାଭ ବେହେରା**

ନିଃସଙ୍ଗ ହେଲା ଆମ୍ରପଲ୍ଲୀ – ବୈଜ୍ଞାନିକ, ସମାଜସେବୀ, ଅନାଥର ନାଥ ଗୋକୁଳାନନ୍ଦ ମହାପାତ୍ରଙ୍କ ଦୋଳମୁଣ୍ଡାଇସ୍ଥିତ ବାସଭବନ । ସେଠାରେ ଦୈନନ୍ଦିନ ଚାଲିଥିଲା ଗବେଷଣା ଓ ବିଭିନ୍ନ ତଥ୍ୟ ଉଦ୍ଭାବନ । ସେ ଜଣେ ବିଜ୍ଞାନ ଜଗତର ପ୍ରାଣପ୍ରତିଷ୍ଠାତା, ବିଜ୍ଞାନ ପ୍ରଚାର ପରିଷଦର ପ୍ରତିଷ୍ଠାତା, ପ୍ରଥମ ଓଡ଼ିଆ ବିଜ୍ଞାନ ଲେଖକ, ଲୋକପ୍ରିୟ ବିଜ୍ଞାନ ଲେଖକ । ରାଜ୍ୟରେ ଓ ରାଜ୍ୟ ବାହାରେ ବିଜ୍ଞାନକୁ ଲୋକପ୍ରିୟ କରିବାରେ ତାଙ୍କର ମହତ୍ତ୍ୱପୂର୍ଣ୍ଣ ଯୋଗଦାନପାଇଁ କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ ପକ୍ଷରୁ ୨୦୧୦ ମସିହାରେ ସମ୍ମାନଜନକ କଳିଙ୍ଗ ପୁରସ୍କାର ମିଳିଥିଲା । ଅନନ୍ୟ ବୈଜ୍ଞାନିକ ସାରସ୍ୱତ କୃତିପାଇଁ ୧୯୮୬ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ଆର. କେ. ପରିଜା ସମ୍ମାନ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ସମ୍ମାନଜନକ ଡକ୍ଟରେଟ୍ ଡିଗ୍ରୀର ଅଧିକାରୀ ହୋଇଥିଲେ । ସେ ମଧ୍ୟ ଥିଲେ ଏକ ଅତୁଳନୀୟ ଓଡ଼ିଆ ବିଜ୍ଞାନ ସାହିତ୍ୟର ସ୍ରଷ୍ଟା ।

ସ୍ୱର୍ଗତ ମହାପାତ୍ର ୧୯୨୨ ମସିହାରେ ଭଦ୍ରକ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ । ୯୧ ବର୍ଷ ବୟସରେ ୧୦ ଜୁଲାଇ ରାତ୍ର ୧୦ ଘଣ୍ଟା ସମୟରେ ଅହମଦାବାଦର ଏକ ଉଚ୍ଚକୋଟୀର ହସ୍ପିଟାଲ୍‌ରେ ତାଙ୍କର ପରଲୋକ ହୋଇଯାଇଥିଲା । ଖବରପାଇ ମୁଁ ଓ ବନ୍ଧୁ ସହୋଦର ମର୍ମାହତ ହୋଇପଡ଼ିଥିଲୁ । ତାଙ୍କର ପିତାଙ୍କ ନାମ ବିଜୟ ଗୋବିନ୍ଦ ମହାପାତ୍ର, ମାତାଙ୍କ ନାମ ଫୁଲଦେବୀ ଓ ସ୍ତ୍ରୀଙ୍କ ନାମ କୁମୁଦିନୀ । ତାଙ୍କର ପିତାଙ୍କ ନାମ ଅନୁସାରେ ଦୋଳମୁଣ୍ଡାଇର ସାଗରବାବା ବିଦ୍ୟାଳୟ ପ୍ରାଙ୍ଗଣରେ ବିଜୟଗୋବିନ୍ଦ ଭବନ ନିର୍ମାଣ କରି ଉତ୍ସର୍ଗ କରିଛନ୍ତି ଓ ସ୍ତ୍ରୀ କୁମୁଦିନୀଙ୍କ ସ୍ମରଣାର୍ଥେ ଓଡ଼ିଶା ବିଜ୍ଞାନ ସମିତିର ବୈଠକ କକ୍ଷ ତାଙ୍କର ଆମ୍ରପଲ୍ଲୀ ନିବାସରେ ନିର୍ମାଣ କରିଛନ୍ତି ଓ ସମିତିକୁ ମଧ୍ୟ ଉତ୍ସର୍ଗ କରିଛନ୍ତି ।

ସେ ପ୍ରଥମେ କଲିକତା ବିଶ୍ୱବିଦ୍ୟାଳୟରୁ ରସାୟନବିଜ୍ଞାନରେ ସ୍ନାତକୋତ୍ତର ହାସଲ କରିଥିଲେ । ପ୍ରଥମେ ରେଭେନ୍‌ସା ବିଶ୍ୱବିଦ୍ୟାଳୟର ରାସାୟନ ବିଭାଗର ଅଧ୍ୟାପକ ଭାବେ ଚାକିରି ଆରମ୍ଭ କରି, ବିଭାଗୀୟ ମୁଖ୍ୟ ଭାବେ ଦୀର୍ଘଦିନ କାର୍ଯ୍ୟ ତୁଲାଇ ବିଭାଗର ବହୁବିଧ ଉନ୍ନତି ସାଧନ କରିଥିଲେ, ଯାହାଦ୍ୱାରା ସେ ରେଭେନ୍‌ସା ବିଶ୍ୱବିଦ୍ୟାଳୟ ହେବା ପରେ ରସାୟନ ବିଭାଗର ଲେକ୍‌ଚର କକ୍ଷକୁ ତାଙ୍କ ନାମରେ 'ଗୋକୁଳାନନ୍ଦ କକ୍ଷ' ଭାବେ ନାମିତ କରାଯାଇଛି ।

ନିଃସ୍ୱାର୍ଥପର ସେବା ଓ 'କର୍ମ ହିଁ ଉପାସନା'କୁ ଆଧାର କରି ସମାଜର ନବଜାତ ଶିଶୁ, ଅନାଥ ଶିଶୁ, ଅସହାୟ ବୃଦ୍ଧଙ୍କ ଥଇଥାନ ବିକାଶପାଇଁ ଏକ ଫାଉଣ୍ଡେସନ୍ ଜି.ଏନ୍.ଏମ୍.ଏଫ୍ ନାମରେ ୨୦୧୦ ମସିହାରେ ଗଠନ କରି ବହୁ ଭିନ୍ନକ୍ଷମ ଅନାଥ ଶିଶୁମାନଙ୍କୁ ଆର୍ଥିକ ସହାୟତା ଯୋଗାଇ ଦେଇଆସୁଥିଲେ ।

ତାଙ୍କର ବିୟୋଗରେ କେବଳ ଆମ୍ରପଲ୍ଲୀ ନୁହେଁ, କଟକ ସହର ତଥା ସାରା ଓଡ଼ିଶା ତାଙ୍କର ଗୁଣଗାନ କରି ସ୍ମୃତିଚାରଣ କରୁଛନ୍ତି । ବିଜ୍ଞାନକୁ ଲୋକପ୍ରିୟ କରିବାରେ ଯେତେଗୁଡ଼ିଏ ତାଙ୍କ କଲମରେ ଲେଖାଯାଇଅଛି, ତାହା ଅତି ଉଚ୍ଚକୋଟୀର ଓ ଆକର୍ଷଣୀୟ ହୋଇଥାଏ । ପ୍ରାଞ୍ଜଳ ଭାବରେ ବର୍ଣ୍ଣନା ହୋଇଥିବା ବିଷୟବସ୍ତୁ ସାଧାରଣ ଲୋକଙ୍କ ସ୍ତରରେ ଅତି ସହଜ ହୋଇଥାଏ ଓ ଆଦୃତ ହୋଇଥାଏ । ଲେଖାଗୁଡ଼ିକ ବର୍ତ୍ତମାନ ସବୁ ତାଙ୍କୁ ଝୁରି ଅଶ୍ରୁତର୍ପଣ କରୁଛନ୍ତି ।

ଆୟୁଷ କରେ ନାହିଁ ମଣିଷକୁ ଆୟୁଷ୍ମାନ୍, ଧନରତ୍ନ ମଣିଷକୁ କରେ ନାହିଁ ବିତ୍ତବାନ୍ – ଅହଙ୍କାର ପିନ୍ଧାଏ ନାହିଁ ମଣିଷକୁ କାଳଜୟୀ ହେବାର ଶିରସ୍ତ୍ରାଣ – ବାହ୍ୱାସ୍ଫୋଟ ଚଢ଼ାଇ ଦିଏ ନାହିଁ ମସ୍ତକରେ ବିଜୟ ମୁକୁଟ ।

ବୁଦ୍‌ବୁଦ ପରି କ୍ଷୟଶୀଳ ଏ ଜୀବନ ଚାହୁଁ ଚାହୁଁ ସମୟ ସ୍ରୋତରେ ବିଲୀନ ହୋଇଯାଏ, କେବଳ ଏ ସଂସାରରେ ରହିଯାଏ ଯଶ ଓ କୀର୍ତ୍ତି ଯାହା ଚିର ଦିନ ତା'କୁ ଆୟୁଷ୍ମାନ୍ କରି ରଖିଥାଏ । ସେହିଭଳି ସ୍ୱର୍ଗତ ଗବେଷକ, ବୈଜ୍ଞାନିକ ଡଃ ଗୋକୁଳାନନ୍ଦ ମହାପାତ୍ର ରହିବେ ଚିରକାଳ ସ୍ମରଣୀୟ ।

*"ତୁମେ ତ ଦେଖିଲ ନାହିଁ କିଏ ଦେଲା ଗଳେ ଫୁଲମାଳ*
*ତୁମେ ତ ଦେଖିଲ ନାହିଁ କିଏ ତୁମ ପଛେ ପଛେ ଗଲା ?*
*ଚରଣପରଶି କିଏ ମଥା ନୋଇଁ ଦେଲା ଅଶ୍ରୁ ଢାଳି,*
*କେ କରିଲା ସଂକୀର୍ତ୍ତନ ତୁମ ନାମେ ଦେଇ କରତାଳି ।"*

– କବି ଗୋଦାବରୀଶ ମହାପାତ୍ର

ଆଜି ତାଙ୍କର କର୍ତ୍ତବ୍ୟନିଷ୍ଠାକୁ ଜୁହାର କରୁଛି । ତାଙ୍କ ଆତ୍ମା ନିକଟରେ ମୋର ଭକ୍ତିପୂତ ପ୍ରଣତି ଜଣାଉଛି । ତାଙ୍କର ଆଦର୍ଶ, ତାଙ୍କର ଉପଲବ୍ଧି ଓ ତାଙ୍କର ଦୃଷ୍ଟିଭଙ୍ଗୀକୁ ଆପଣା କରି ତାଙ୍କୁ ଉପଲବ୍ଧି କରିହୁଏ । ତେଣୁ ସେ ମୋ ପାଇଁ ଏବେ ମଧ ଜୀବିତ ଓ ମାର୍ଗଦର୍ଶକ ।

ପ୍ରଶାନ୍ତି ଆପାର୍ଟମେଣ୍ଟ,
ଦେଉଳସାହି, କଟକ

---

# ପରମପୂଜ୍ୟ ଗୁରୁ ପ୍ରଫେସର ଡଃ ଗୋକୁଳାନନ୍ଦ ମହାପାତ୍ରଙ୍କ ପ୍ରତି ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

**ଶ୍ରୀ ମହେନ୍ଦ୍ରକୁମାର କାୟସ୍ଥ**

ଲୋକପ୍ରିୟ ବିଜ୍ଞାନ ସାହିତ୍ୟ ଜଗତର ସମ୍ରାଟ୍, ବିଜ୍ଞାନପ୍ରଚାର ସମିତିର ସ୍ଥାପକ, ଗୁରୁମାନଙ୍କର ଗୁରୁ, ଭୀଷ୍ମ ପିତାମହ ସମ ବ୍ୟକ୍ତି, ବୈଜ୍ଞାନିକ ତଥା ବିଜ୍ଞାନ ପ୍ରଚାର ସମିତିର ମେରୁଦଣ୍ଡ ଯଶସ୍ୱୀ ବୈଜ୍ଞାନିକ ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ ଦେହାବସାନ ଆଜି ସମସ୍ତ ବିଜ୍ଞାନପ୍ରେମୀ ଜନଗଣଙ୍କୁ ମ୍ରିୟମାଣ କରିଦେଇଛି । ସେହି ମହାନ୍ ଓଡ଼ିଶା ବିଜ୍ଞାନାକାଶର ଦୀପ୍ତିମନ୍ତ ଜ୍ୟୋତିଷ୍କ ଗତ ଜୁଲାଇ ୧୦ ତାରିଖ ବୁଧବାର ରାତ୍ର ୧୦ଟା ସମୟରେ ଅସ୍ତମିତ ହୋଇଗଲେ ।

ସେହି ପ୍ରଥିତଯଶା ବ୍ୟକ୍ତିଙ୍କର ଜନ୍ମ ୨୪ ମେ ୧୯୨୨, ଦେହାବସାନ ଜୁଲାଇ ୧୦, ୨୦୧୩ । ଏହି ଦୀର୍ଘ ସମୟ କାଳ ବାଲ୍ୟାବସ୍ଥା ଓ ଶିକ୍ଷା ସମୟକୁ ବାଦ୍‌ଦେଲେ ୧୯୪୮ ମସିହାରୁ ଶେଷନିଶ୍ୱାସ ପର୍ଯ୍ୟନ୍ତ ନିଜକୁ ବିଜ୍ଞାନ ସେବାରେ ସେ ନିୟୋଜିତ କରିଥିଲେ । ସେ ସମୟ ସାଥୀରେ ବନ୍ଧୁ ବାନ୍ଧି ନିଜର କାର୍ଯ୍ୟକାଳ, ଅବସର ସମୟତକ କଟାଇ ଦେଇଥିଲେ । ଜୀବନର ପ୍ରତି ମୁହୂର୍ତ୍ତକୁ ବିଜ୍ଞାନ ପ୍ରଚାର ସମିତିର କାର୍ଯ୍ୟରେ ଲେଖନୀ ଚାଳନାରେ ବିତାଇ ଦେଇଛନ୍ତି । ତାଙ୍କର ଜୀବନକାଳ ଭିତରେ ୬୦ରୁ ଊର୍ଦ୍ଧ୍ୱ ବିଜ୍ଞାନ ପ୍ରବନ୍ଧ, ବିଦ୍ୟାଳୟଠାରୁ ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କପାଇଁ ୨୦ରୁ ଅଧିକ ପୁସ୍ତକ, ୪୬ରୁ ଅଧିକ ଲୋକପ୍ରିୟ ବିଜ୍ଞାନ ରଚନାବଳୀ, ୧୪ଟି ବୈଜ୍ଞାନିକ ଉପନ୍ୟାସ, ଗଳ୍ପ ପୁସ୍ତକ, ଏକାଧିକ ଭ୍ରମଣ କାହାଣୀ, ୧୨ରୁ ଅଧିକ ଶିଶୁବିଜ୍ଞାନ ପୁସ୍ତକ, ସର୍ବୋପରି ଗୋକୁଳାନନ୍ଦ ଗ୍ରନ୍ଥାବଳୀ ୧ମ, ୨ୟ, ୩ୟ ଓ ଏକାଧିକ ଅନୁବାଦ ପୁସ୍ତକ ରଚନା କରି ବିଜ୍ଞାନର ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଜୀବନର ଅପରାହ୍ଣରେ ଦୁଇଟି ବୃହତ୍ ବିଜ୍ଞାନକୋଷ ସୃଷ୍ଟିକରି ଜ୍ଞାନଲିପ୍‌ସୁମାନଙ୍କୁ ଖୋରାକ ଯୋଗାଇଛନ୍ତି । ଜଣେ ବ୍ୟକ୍ତି ଏତେସଂଖ୍ୟକ ପୁସ୍ତକ ରଚନା କରିବା କଳ୍ପନାର ବାହାରେ । ତେଣୁ କହିବାକୁ ଗଲେ ବିଜ୍ଞାନ ରଚନାରେ ସେ ହେଉଛନ୍ତି ଭଗବାନ୍ ବ୍ୟାସସଦୃଶ ।"

ତାଙ୍କର ସମସ୍ତ ରଚନା, ସମାଜସେବା କାର୍ଯ୍ୟାବଳୀପାଇଁ ବହୁ ସମ୍ମାନ ଓ ପୁରସ୍କାର ପାଇବାରେ

ଯୋଗ୍ୟତା ହାସଲ କରିଛନ୍ତି । ରସାୟନ ବିଜ୍ଞାନରେ ଶ୍ରେଷ୍ଠତମ ଗବେଷଣା ସନ୍ଦର୍ଭପାଇଁ ସର୍ବଭାରତୀୟ ସ୍ତରରେ 'କୁପର' ସ୍ମୃତି ପଦକ ୧୯୬୧, ଲୋକପ୍ରିୟ ବିଜ୍ଞାନ ସାହିତ୍ୟ ସୃଷ୍ଟିପାଇଁ ସାହିତ୍ୟ ଏକାଡେମୀ ପୁରସ୍କାର ୧୯୬୪, ଓଡ଼ିଶା ସାହିତ୍ୟ ଏକାଡେମୀ ରଜତ ଜୟନ୍ତୀ ଉତ୍ସବରେ ବିଜ୍ଞାନ ସାହିତ୍ୟପାଇଁ ୧୯୮୨, ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ୧୯୮୮, ଓଡ଼ିଶା ବିଜ୍ଞାନ ଏକାଡେମୀଦ୍ୱାରା ପୁରସ୍କୃତ ୨୦୦୨, ଶାରଳା ପୁରସ୍କାର ୧୯୯୪, ଉତ୍କଳ ସାହିତ୍ୟ ସମାଜର ପ୍ରାଣକୃଷ୍ଣ ପରିଜା ସ୍ମୃତି ପୁରସ୍କାର, ରସାୟନ ବିଜ୍ଞାନ ଓ ଲୋକପ୍ରିୟ ବିଜ୍ଞାନ ସାହିତ୍ୟପାଇଁ ଓଡ଼ିଶା ସ୍ମୃତି ପୁରସ୍କାର ୧୯୯୬, ସାମନ୍ତ ଚନ୍ଦ୍ରଶେଖର ପୁରସ୍କାର ୧୯୮୮, ସାମଗ୍ରିକଭାବେ ସମସ୍ତ ବିଜ୍ଞାନକୃତିପାଇଁ ୨୦୧୦ ମସିହାରେ ସମ୍ମାନଜନକ କଳିଙ୍ଗ ପୁରସ୍କାର ଲାଭ କରି ବିଜ୍ଞାନ ପ୍ରଚାର ସମିତିକୁ ଗୌରବ ମଣ୍ଡିତ କରିଛନ୍ତି । ନିକଟ ଅତୀତରେ ଉତ୍କଳ ବିଶ୍ୱବିଦ୍ୟାଳୟର ଏକ ସ୍ୱତନ୍ତ୍ର ଉତ୍ସବରେ ଡଃ ମହାପାତ୍ରଙ୍କୁ ସମ୍ମାନଜନକ ଡକ୍ଟରେଟ୍ ଡିଗ୍ରୀ ମଧ୍ୟ ପ୍ରଦାନ କରାଯାଇଛି ।

ବିଜ୍ଞାନ ଗବେଷଣା, ବିଜ୍ଞାନ ସାହିତ୍ୟ ସୃଷ୍ଟି କରିବାରେ ଯେପରି ମନୋନିବେଶ କରିଥିଲେ ସେହିପରି ନିଜକୁ ସମାଜ ସେବାରେ ନିୟୋଜିତ ମଧ୍ୟ କରିଥିଲେ ସେ । ସମାଜର ଅବହେଳିତ ଶିଶୁ, ଅସହାୟ ବୃଦ୍ଧ, ଅନାଥ ଶିଶୁମାନଙ୍କର ବିକାଶପାଇଁ 'ଗୋକୁଳାନନ୍ଦ ନିତ୍ୟାନନ୍ଦ ମହାପାତ୍ର ଫାଉଣ୍ଡେସନ୍' ନାମକ ଏକ ସଂସ୍ଥା ଗଠନ କରିବା ସହିତ ସେ ସଂଗଠନର ଅଧ୍ୟକ୍ଷ ରୂପେ ରହି ଭିନ୍ନକ୍ଷମ ଓ ଅନାଥ ଶିଶୁମାନଙ୍କୁ ଆର୍ଥିକ ସାହାଯ୍ୟ ଇତ୍ୟାଦି ଯୋଗାଇ ଦେଇଥିଲେ । ଏଇ G.N.M.F. ସଂସ୍ଥାଦ୍ୱାରା ବାଣୀବିହାର, ରେଭେନ୍ସା ବିଶ୍ୱବିଦ୍ୟାଳୟ, ବାବା ସାଗର ଦାସ ବିଦ୍ୟାଳୟରେ ସ୍ୱତନ୍ତ୍ର ଧରଣର ପ୍ରକୋଷ୍ଠ ନିର୍ମାଣ କରି ଛାତ୍ରଛାତ୍ରୀଙ୍କ ସେବାରେ ଉତ୍ସର୍ଗ କରିଛନ୍ତି ।

ତାଙ୍କ ପିତାଙ୍କ ସ୍ମୃତିରେ ବିଜୟଗୋବିନ୍ଦ ଦାତବ୍ୟ ଟ୍ରଷ୍ଟଦ୍ୱାରା ବିଜ୍ଞାନ ସାହିତ୍ୟରେ ସ୍ମାରକୀ ପୁରସ୍କାର, ବଡ଼ଭାଇଙ୍କ ନାମରେ ବିଜ୍ଞାନ ଲେଖକଙ୍କୁ ନିତ୍ୟାନନ୍ଦ ସ୍ମାରକୀ ପୁରସ୍କାର, ପରମପୂଜ୍ୟା ମା'ଙ୍କ ସ୍ମୃତିରେ ଶିଶୁସାହିତ୍ୟପାଇଁ ଫୁଲଦେବୀ ସ୍ମାରକୀ ପୁରସ୍କାର ଏବଂ ସେହି ମହାଶୟଙ୍କ ଆଦ୍ୟ ଜନ୍ମସ୍ଥଳୀ କୁଆଁସ ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କପାଇଁ ପୁରସ୍କାର ଆଦି ଦେବାର ବ୍ୟବସ୍ଥା ମଧ୍ୟ କରିଛନ୍ତି ।

ସେହି ମହାଶୟଙ୍କ ସବୁଠାରୁ ବଳିଷ୍ଠ ଅଙ୍କୁରଟି ରୋପିତ ହୋଇଥିଲା ୧୯୪୯ ମସିହା ଅଗଷ୍ଟ ୭ ତାରିଖ ଦିନ । ଅନେକ ବୈଜ୍ଞାନିକମାନଙ୍କର ଭ୍ରୂକୁଞ୍ଚନ, ଅଟ୍ଟହାସ୍ୟକୁ ଏଡ଼ାଇ ଗଢ଼ିଥିଲେ ଉତ୍କଳ-ବିଜ୍ଞାନ ପରିଷଦ । ପରବର୍ତ୍ତୀ ସମୟରେ ଏହାର ନାମ ରଖାଯାଇଥିଲା 'ବିଜ୍ଞାନ ପ୍ରଚାର ସମିତି' ।

ସମିତିର ଏହି ପ୍ରତିଷ୍ଠା ଅଧିବେଶନରେ ଯେଉଁ ମହାନ୍ ବ୍ୟକ୍ତିମାନେ ଥିଲେ, ସେମାନେ ହେଲେ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ, ଡଃ ରାଧାନାଥ ରଥ, ଡଃ ସୁକୁମାର ଆଦିତ୍ୟ, ଅଧ୍ୟାପକ କୃଷ୍ଣଚନ୍ଦ୍ର ଦାସ, ଡଃ ଶ୍ୟାମାନନ୍ଦ ପଟ୍ଟନାୟକ, ଡଃ ମହେନ୍ଦ୍ରଚନ୍ଦ୍ର ମିଶ୍ର, ଡଃ ରାଇକୃଷ୍ଣ ମହାନ୍ତି, ଡଃ ସଦାଶିବ ମିଶ୍ର, ଡଃ ଗୋକୁଳାନନ୍ଦ ମହାପାତ୍ର । ଏହି ପ୍ରାଣପ୍ରତିଷ୍ଠାତା ୯ ଜଣ ସଦସ୍ୟଙ୍କ ମଧ୍ୟରୁ ୭ଜଣ ଆରପାରିକୁ ଚାଲିଗଲେଣି । ଶେଷରେ ପ୍ରଫେସର ମହାପାତ୍ରଙ୍କର ବିୟୋଗ ଯୋଗୁଁ ସମିତିର ମେରୁଦଣ୍ଡ ଉପୁଡ଼ିଗଲା ପରି ଲାଗୁଛି ।

ମୁଁ ଏହି ବିଜ୍ଞାନ ପ୍ରଚାର ସମିତି ସହିତ ୧୯୮୮ ମସିହାରୁ ସମ୍ପୃକ୍ତ ହୋଇ ସେହି ମହାନ୍ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ଅର୍ଜନ କରିଛି । ୧୯୬୬-୬୭ ମସିହାରେ ରେଭେନ୍ସା ବିଶ୍ୱବିଦ୍ୟାଳୟରେ ରସାୟନ ବିଜ୍ଞାନରେ ସମ୍ମାନ ନେଇ ପଢୁଥିବା ସମୟରେ ସାରଙ୍କର ଅଧ୍ୟାପନା ଓ ପ୍ରାକ୍ଟିକାଲ କ୍ଲାସରେ ଯୋଗଦେବାର ବହୁ ସୁଯୋଗ ଜୁଟିଛି । ଏହି ସ୍ମୃତି ଆଜି ହୃଦୟର କାନ୍ଭାସ୍‌ରେ ସାଇତା ହୋଇ ରହିଛି । ତାଙ୍କର ବିୟୋଗ ମୋର ହୃଦୟତନ୍ତ୍ରୀକୁ ଶତଧା ଆନ୍ଦୋଳିତ କରୁଛି, ଯାହାକି ଭାଷାରେ ପ୍ରକାଶ କରିପାରୁ ନାହିଁ ।

ସାରଙ୍କ ଅମାୟିକ ଓ ସରଳ ବ୍ୟବହାର, ନମ୍ର ଆଚରଣ ଛାତ୍ରବତ୍ସଳ ଭାବ ସମସ୍ତଙ୍କୁ ଚୁମ୍ବକଭଳି ଆକର୍ଷଣ କରୁଥିଲା । ତାଙ୍କ ସଂସ୍ପର୍ଶରେ ଆସି କେତେ ଯେ ବୈଜ୍ଞାନିକ ଲେଖକ ସୃଷ୍ଟି ହୋଇଛନ୍ତି ତାହା ପ୍ରକାଶ କରିହେବ ନାହିଁ ।

ସେ ଜଣେ ବୈଜ୍ଞାନିକ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବ୍ୟକ୍ତି ହୋଇ ଜୀବନ ଏକ ରାସାୟନିକ ପ୍ରତିକ୍ରିୟା ବୋଲି କହୁଥିଲେ ମଧ୍ୟ ଧର୍ମବିଶ୍ୱାସରୁ ସେ ଏଡ଼ାଇ ଯାଇ ନ ଥିଲେ । ଜୀବନରେ ସମସ୍ତେ ସତ୍‌ମାର୍ଗରେ ଚାଲିଲେ ଜୀବନ ଶୃଙ୍ଖଳିତ ହୋଇଥାଏ । ତାଙ୍କର ଲେଖାପଢ଼ା, ଗବେଷଣା, ସେବା ହେଉଛି ଈଶ୍ୱରଙ୍କ କର୍ମ ଭଳି । ସେ କେବେ କେବେ କହୁଥିଲେ, ମୋର ଠାକୁରଙ୍କ ପାଖରେ କିଛି ମାଗୁଣି ନାହିଁ କି ଅଳିଗୁହାରି ନାହିଁ । ଯଦି ଠାକୁର ଥାଆନ୍ତି ଏବଂ ସେ ଯଦି ସବୁ ଜାଣିପାରୁଥାନ୍ତି ତେବେ ଏତିକି ପ୍ରାର୍ଥନା ଥିଲା ଯେ – ''ହେ ଠାକୁରେ ! ମୋତେ ଆଉ ଥରେ ମଣିଷ ଜୀବନ ଦିଅ, ମୁଁ ବିଜ୍ଞାନର ଅଧିକ ସେବାକରି ଲୋକପ୍ରିୟ ବିଜ୍ଞାନ ରଚନା କରିବା ସହ ଦୁଃଖୀ ନିରାଶ୍ରୟ ମଣିଷର ଆଖିରୁ ଲୁହ ପୋଛିବି ଓ ଅସହାୟ ମଣିଷ ଓଠରେ ହସ ଭରିଦେବି । ମଣିଷ ଜନ୍ମ ଦିଅ, ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ପୂରଣ କରିବାକୁ ଚେଷ୍ଟା କରିବି ।''

ହେ ମହାମାନବ ! ଆପଣଙ୍କର ଏହି ଅନ୍ତିମ ଇଚ୍ଛାକୁ ପୂରଣ କରିବାପାଇଁ ଆମେ ଜଗତରନାଥ ଜଗନ୍ନାଥଙ୍କ ପାଖରେ ଶତକୋଟି ପ୍ରଣାମ ଜଣାଉଛୁ ଏବଂ ଆପଣଙ୍କର ସ୍ୱର୍ଗୀୟ ଆତ୍ମା ପରମଧାମରେ ଚିରଶାନ୍ତି ଲାଭ କରୁ ବୋଲି ସଭକ୍ତି ନିବେଦନ କରୁଛୁ । ପରିବାରବର୍ଗ ଏବଂ ଆତ୍ମୀୟସ୍ୱଜନମାନଙ୍କୁ ତାଙ୍କ ପରଲୋକଗତ ଦୁଃଖକୁ ସହ୍ୟ କରିବା ନିମନ୍ତେ ଈଶ୍ୱର ଧୈର୍ଯ୍ୟ ଏବଂ ସାହସ ପ୍ରଦାନ କରନ୍ତୁ ।

ଯୁଗ୍ମ ସଂପାଦକ
ବିଜ୍ଞାନ ପ୍ରଚାର ସମିତି, କଟକ

---

# ଜ୍ଞାନ-ତପସ୍ୱୀ ପ୍ରଫେସର ମହାପାତ୍ର

**ସଂଜିତ୍ ପଟ୍ଟନାୟକ**

ଡଃ ଗୋକୁଳାନନ୍ଦ ମହାପାତ୍ର ଥିଲେ ଓଡ଼ିଆ ସାହିତ୍ୟ ଓ ବିଜ୍ଞାନ ଜଗତର ବରେଣ୍ୟ ସ୍ରଷ୍ଟା । ଜଣେ ଲୋକପ୍ରିୟ ବିଜ୍ଞାନ ଲେଖକ ଭାବରେ ସେ ଓଡ଼ିଆ ସାହିତ୍ୟକୁ କେବଳ ୮୦ ଖଣ୍ଡରୁ ଉର୍ଦ୍ଧ୍ୱ ସୃଷ୍ଟି ଦେଇ ନାହାନ୍ତି, ଜଣେ କଥାଶିଳ୍ପୀ ଓ ନାଟ୍ୟକାର ଭାବରେ ଅଗଣିତ ପାଠକଙ୍କ ମନ କିଣିଛନ୍ତି । ସେହିପରି ବିଜ୍ଞାନ, ସାହିତ୍ୟ ଓ ସଂସ୍କୃତିର ପରମ ଉପାସକ ଭାବରେ ପ୍ରତିଭା ପୂଜାକୁ ସମ୍ମାନ ଜଣାଇ ଦୀର୍ଘଦିନ ଧରି 'ବିଜୟଗୋବିନ୍ଦ ଟ୍ରଷ୍ଟ' ମାଧ୍ୟମରେ ରାଜ୍ୟର ସଫଳ ବୈଜ୍ଞାନିକ, ସ୍ରଷ୍ଟାଙ୍କୁ ସମ୍ମାନିତ କରି ସେମାନଙ୍କୁ ଉତ୍ସାହିତ କରିଛନ୍ତି । ବିଜ୍ଞାନାଲୋକ ପତ୍ରିକାର ସମ୍ପାଦନ ସହ ବିଜ୍ଞାନ ସାହିତ୍ୟର ପ୍ରଚାର-ପ୍ରସାରପାଇଁ ବିଜ୍ଞାନ ସମିତି ଗଠନ କରି ବିଜ୍ଞାନ ସାହିତ୍ୟକୁ ଏକ ନୂତନ ଦିଶା ଦେଇଛନ୍ତି । ଜୀବନର ଶେଷ ଦଶନ୍ଧିରେ ପରିବାରଙ୍କ ସହଯୋଗରେ ଜି.ଏନ୍. ଫାଉଣ୍ଡେସନ୍ ଗଠନ କରି ସମ୍ପତ୍ତିର ବିକ୍ରି ଲବ୍ଧ ଅର୍ଥରାଶିରେ ଉତ୍କଳ ବିଶ୍ୱବିଦ୍ୟାଳୟ, ରେଭେନ୍‌ସା ବିଶ୍ୱବିଦ୍ୟାଳୟର ରସାୟନ ବିଭାଗରେ ଅତ୍ୟାଧୁନିକ କାର୍ଯ୍ୟରେ ବିନିଯୋଗ କରିବା ସହ କଟକ ବାବା ସାଗର ଦାସ ସ୍କୁଲ ମଧ୍ୟରେ ଏକ ସଭା ଗୃହ ନିର୍ମାଣ କରିବା ଓ ନିଜ ଜନ୍ମମାଟି ଭଦ୍ରକଠାରେ ବହୁ ସମାଜ ଉନ୍ନତିମୂଳକ କାର୍ଯ୍ୟ କରିଛନ୍ତି । ବାସ୍ତବରେ ସାଂପ୍ରତିକ ସମୟରେ ନିଜ କଷ୍ଟଲବ୍ଧ ଧନ ଓ ପିତୃ ସମ୍ପତ୍ତିକୁ ସମାଜ ମଙ୍ଗଳ କାର୍ଯ୍ୟରେ ବିନିଯୋଗ କରେଇବା ଡଃ ମହାପାତ୍ରଙ୍କ ଭଳି ବ୍ୟକ୍ତି ବିରଳ । ତାଙ୍କ ସୃଷ୍ଟି ସମୂହ ଭିତରେ 'ଚନ୍ଦ୍ରର ମୃତ୍ୟୁ', 'କୃତ୍ରିମ ଉପଗ୍ରହ', 'ମୃତ୍ୟୁ ଏକ ମାତୃତ୍ୱର', 'ପୃଥିବୀ ବାହାରେ ମଣିଷ', 'ନିଷ୍କଳ ପୃଥିବୀ', 'ନିଃଶବ୍ଦ ଗୋଧୂଳି', 'ଡାଇନୋସରର ହସ', 'ମୃତ୍ୟୁ ରଶ୍ମି', 'ଉଡ଼ନ୍ତା ଥାଳିଆ' ଓ ଓଡ଼ିଆ ଭାଷାରେ ପ୍ରଥମ 'ବୈଜ୍ଞାନିକ ଜ୍ଞାନକୋଷ' ପ୍ରଭୃତି ପୁସ୍ତକ ତାଙ୍କୁ ଓଡ଼ିଆ ସାହିତ୍ୟରେ ଚିରଦିନ ଅମର କରି ରଖିବ । ତାଙ୍କ ଭଳି ଜ୍ଞାନୀ, ଗୁଣୀ ଓ ନିରହଙ୍କାରୀ ମଣିଷ ଚିର ପୂଜ୍ୟ ଓ ବନ୍ଦନୀୟ ।

ଏଫ-୮୨୯, ସେକ୍ଟର-୭
ସି.ଡି.ଏ, କଟକ-୧୪

# ଡଃ ମହାପାତ୍ର (ସାର୍) ସବୁଦିନ ସ୍ମୃତିରେ ରହିବେ

**ଡଃ ହରିପ୍ରସାଦ ଦାସ**

ଆଷାଢ଼ ମାସ ଶୁକ୍ଳ ପକ୍ଷ ଦ୍ୱିତୀୟା ପୁଷ୍ୟା ନକ୍ଷତ୍ରରେ ଯେତେବେଳେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ବିଶ୍ୱପ୍ରସିଦ୍ଧ ଶ୍ରୀଗୁଣ୍ଡିଚା ଯାତ୍ରା ହରିବୋଲ, ହୁଳହୁଳିରେ ପାଳନ ହେଉଛି ସେଇ ଦିନରେ ଓଡ଼ିଶାର ବିଶିଷ୍ଟ ରସାୟନ ବିଜ୍ଞାନି, ପ୍ରଥମ ବିଜ୍ଞାନ ଉପନ୍ୟାସ ଲେଖକ, ବିଜ୍ଞାନ ପ୍ରଚାର ସମିତିର ପ୍ରତିଷ୍ଠାତା, ଓଡ଼ିଶା ବିଜ୍ଞାନ ଯାତ୍ରାର କର୍ଣ୍ଣଧାର ଓ ଭୀଷ୍ମ ପିତାମହ, ପ୍ରବାଦପୁରୁଷ, ସ୍ୱନାମଧନ୍ୟ ଲୋକପ୍ରିୟ ବୈଜ୍ଞାନିକ ଡଃ ଗୋକୁଳାନନ୍ଦ ମହାପାତ୍ର ଅହମଦାବାଦସ୍ଥିତ ଏକ ଘରୋଇ ନର୍ସିଂହୋମ୍‌ରେ ୧୦ତାରିଖ ରାତ୍ର ୯.୨୦ ମିନିଟ୍ ସମୟରେ ଆମ ସମସ୍ତଙ୍କୁ ଶୋକ ସାଗରରେ ଭସାଇ ଦେଇ ଚିତ୍‌ଜଗତକୁ ଚାଲିଗଲେ ।

ଡଃ ମହାପାତ୍ର (ସାର୍)ଙ୍କ ସହିତ ମୋର ସମ୍ପର୍କ ପ୍ରତିଷ୍ଠିତ ହୁଏ ୧୯୬୬ ମସିହାଠାରୁ । ସାର୍‌ଙ୍କ ତତ୍ତ୍ୱାବଧାନରେ ଯେତେଜଣ ଛାତ୍ର Ph.D. ପାଇଁ ଗବେଷଣା କରିଥିଲେ ସେମାନଙ୍କ ମଧ୍ୟରେ ମୋର ସ୍ଥାନ ସ୍ୱତନ୍ତ୍ର ଥିଲା । ଭଲ ମନ୍ଦରେ ସାର୍ ମୋତେ ଘରକୁ ଡାକିବାକୁ କୁଣ୍ଠାବୋଧ କରୁ ନ ଥିଲେ । ସାର୍‌ଙ୍କ ସ୍ନେହ ମୋ ପ୍ରତି ଏପରି ଥିଲା ଯେ ମୋ ପୁଅପାଇଁ ଏକ ଡ୍ରେସ ଧରି ମୋର ବେଗୁନିଆଁସ୍ଥିତ ବାସଭବନକୁ ଉଭୟେ (ସାର୍ ଓ ମିସେସ୍ ମହାପାତ୍ର) ଯାଇଥିଲେ । ସେହି ଡ୍ରେସ୍ ଆଜିପର୍ଯ୍ୟନ୍ତ ମୋ ଆଲମିରାରେ ସ୍ମୃତି ପରି ସାଇତା ହୋଇଛି । ମିସେସ୍ ମହାପାତ୍ର ଚାଲିଯିବାପରେ ସାର୍ ଭାଙ୍ଗିପଡ଼ିବା ସ୍ୱାଭାବିକ । କିନ୍ତୁ ସାର୍‌ଙ୍କର କର୍ମଯୋଗରେ ପ୍ରଗାଢ଼ ବିଶ୍ୱାସ ଥିବାରୁ ସେ ସବୁ କିଛି ଦୁଃଖ କଷ୍ଟକୁ ଆପଣାଇ ନେଇଥିଲେ । ବାସ୍ତବିକ ଦେଖିବାକୁ ଗଲେ ସାର୍ ଏକ କର୍ମଯୋଗୀ ଥିଲେ । ସାର୍ ଆମ୍ରପଲ୍ଲୀ ବାସଭବନରେ ଏକାକୀ ରହୁଥିବାରୁ ବେଳେ ବେଳେ ମୁଁ ତାଙ୍କୁ ଦେଖା କରିବାପାଇଁ ଭୁବନେଶ୍ୱରରୁ ଆସୁଥାଏ ଏବଂ ସାର୍‌ଙ୍କ ସହ କିଛି ମୁହୂର୍ତ୍ତ ସମୟ ବିତାଇ ଫେରି ଯାଉଥାଏ । ସାର୍ ମୋତେ ଦେଖିଲାମାତ୍ରେ ହସି ହସି 'ହରିପ୍ରସାଦ ! ତୁମର ସବୁ ଭଲ ? ବାପା କିପରି ଅଛନ୍ତି ଓ ପୁଅ ଆମେରିକାରେ ଅଛି ନା ପଚାରିବାକୁ ପଛେଇ ନାହାନ୍ତି । ତାଙ୍କର ଏଇ ଅନାବିଳ ସ୍ନେହ କେବେ ଭୁଲି ହେବ ନାହିଁ । ସବୁବେଳେ ମନ ଭିତରେ ଉଙ୍କି ମାରୁଥିବ ।

ସାର୍‌ଙ୍କ ମରଶରୀର ସୁଦୂର ଅହମଦାବାଦରୁ କଟକ ଆମ୍ରପଲ୍ଲୀକୁ ଆସିବା ଖବର ପହଞ୍ଚିଲାମାତ୍ରେ ଶହ ଶହ ଛାତ୍ର, ଅଧ୍ୟାପକ ଓ ଶୁଭେଚ୍ଛୁବୃନ୍ଦ ପୁଷ୍ପମାଲ୍ୟ ଧରି ଶେଷ ସମ୍ମାନ ପ୍ରଦର୍ଶନ କରିବାପାଇଁ, ଭୁବନେଶ୍ୱର ବିମାନପଡ଼ିଆ, ବାଣୀବିହାର, ରେଭେନ୍‌ସା ବିଶ୍ୱବିଦ୍ୟାଳୟ ଓ ଆମ୍ରପଲ୍ଲୀଠାରେ ଯେପରି ରୁଣ୍ଡ ହୋଇଥିଲେ, ସେଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଡଃ ମହାପାତ୍ର ଜଣେ ଉଚ୍ଚକୋଟୀର ଲୋକ ଥିଲେ ।

ସର୍ବଶେଷରେ ସାର୍‌ଙ୍କ ପରି ଜଣେ ସ୍ପଷ୍ଟବାଦୀ, ନିର୍ଭୀକ, ସ୍ୱାଭିମାନୀ, ଛାତ୍ରବତ୍ସଳ ଓ ଉଚ୍ଚକୋଟୀର ଶିକ୍ଷକ ତଥା ନିର୍ମଳ ଭାବମୂର୍ତ୍ତିର ମଣିଷ ବର୍ତ୍ତମାନ ସମାଜରେ ବିରଳ । ସେ ଓଡ଼ିଶାର ଗର୍ବ ଓ ଗୌରବ ଥିଲେ । 'ତାଙ୍କ ଆତ୍ମାର ସଦ୍‌ଗତି ହେଉ' – ଏହାହିଁ ଜଗତର ନାଥ ଜଗନ୍ନାଥଙ୍କ ନିକଟରେ ଆଜିର ଦିନରେ ମୋର ଓ ମୋ ପରିବାରର ବିନୀତ ପ୍ରାର୍ଥନା । କବିବର ରାଧାନାଥ ରାୟଙ୍କ ଭାଷାରେ –

ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।।

ଅବସରପ୍ରାପ୍ତ ଅଧ୍ୟକ୍ଷ
ଲିଙ୍ଗରାଜ ସୁଲକ୍ଷଣାୟନ, ୩୬୭
ଜାଗମରା, ଖଣ୍ଡଗିରି

# ଜଣେ ମହାନ୍ ବ୍ୟକ୍ତିଙ୍କ ସ୍ମୃତିରେ

**ଗୋକୁଳାନନ୍ଦ ପଟ୍ଟନାୟକ**

ଜଣେ ଆଦର୍ଶ ଶିକ୍ଷକଙ୍କ ଆଚାର-ବ୍ୟବହାର, ଆଚରଣ, ଚାଲିଚଳନ କିଭଳି ହେବା ଉଚିତ ତାହାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି ସ୍ୱର୍ଗତ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର । ମିଷ୍ଟଭାଷୀ, ଛାତ୍ରବତ୍ସଳ ସ୍ୱର୍ଗତ ମହାପାତ୍ରଙ୍କ ନିଶା ଥିଲା ବିଜ୍ଞାନର ପ୍ରଚାର ଓ ପ୍ରସାର । ବିଜ୍ଞାନର ଜଟିଳ ତତ୍ତ୍ୱକୁ ଓଡ଼ିଆ ଭାଷାରେ ଅତି ସରଳ ଭାବରେ ବୁଝାଇ ସେ ରଚନା କରିଯାଇଛନ୍ତି ଅନେକ ପୁସ୍ତକ । ଲୋକପ୍ରିୟ ବିଜ୍ଞାନ ସାହିତ୍ୟର ଅନ୍ୟତମ ବିଦ୍ଧାଣି ପ୍ରଫେସର ମହାପାତ୍ର ଅନେକ ପୁରସ୍କାର ଓ ସମ୍ବର୍ଦ୍ଧନା ପାଇଛନ୍ତି । ଦେଶବିଦେଶରେ ବହୁ ସୁନାମ ଅର୍ଜନ କରିଛନ୍ତି । କିନ୍ତୁ ତାଙ୍କୁ ଗର୍ବ, ଅହଙ୍କାର ସ୍ପର୍ଶ କରିପାରି ନ ଥିଲା । କମ୍ କଥା କହୁଥିବା ଏହି ବିଶିଷ୍ଟ ବୈଜ୍ଞାନିକ ଜଣେ ସାଦାସିଧା, ସରଳ, ନିଷ୍କପଟ, ହୃଦୟବାନ୍ ମନୁଷ୍ୟ ଭାବେ ସମସ୍ତଙ୍କ ହୃଦୟରେ ଏକ ବିଶେଷ ସ୍ଥାନ ଅଧିକାର କରିପାରିଛନ୍ତି ।

ମୋର ପିତା ସ୍ୱର୍ଗତ ପ୍ରଫେସର ହରିହର ପଟ୍ଟନାୟକଙ୍କ ସେ ଥିଲେ ପରମବନ୍ଧୁ । ମୋର ପିତାଙ୍କୁ ଓଡ଼ିଆରେ ବିଜ୍ଞାନ ପୁସ୍ତକ ଲେଖିବାପାଇଁ ସେ ହିଁ ପ୍ରବର୍ତ୍ତାଇଥିଲେ । ଦୁହେଁ ମିଶି ଲେଖିଥିବା ମାଇନର୍ କ୍ଲାସ୍‌ର ପ୍ରଥମ ବିଜ୍ଞାନ ବହି ୧୯୫୧ ମସିହାରେ ପ୍ରକାଶ ପାଇଥିଲା । ମୋର ମନେ ଅଛି ପ୍ରାୟ ପ୍ରତ୍ୟେକ ଦିନ ସକାଳେ ସେ ଓ ମୋର ବାପା ଫୋନ୍‌ରେ କଥାବାର୍ତ୍ତା ହୁଅନ୍ତି । ୨୦୦୫ ମସିହାରେ ମୋର ପିତାଙ୍କ ଦେହାନ୍ତ ଖବର ପାଇ ସେ ମୋତେ ଫୋନ୍ କରିଥିଲେ । ବହୁତ କମ୍ କଥା କହିଲେ, କିନ୍ତୁ ସେଥିରେ ମୁଁ ଅନୁଭବ କରିପାରିଥିଲି ତାଙ୍କ ହୃଦୟର ବେଦନା । ମୋ ବାପାଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶପାଇଁ ତାଙ୍କଠାରୁ ମୁଁ ପରାମର୍ଶ ଲୋଡ଼ିଥିଲି । ସେ କହିଥିଲେ ଏକ ବହି ଆକାରରେ ସ୍ମରଣିକା ପ୍ରକାଶ କଲେ ଭଲ ହେବ ବୋଲି । ବିଜ୍ଞାନ ପ୍ରଚାର ସମିତିର ସଦସ୍ୟମାନଙ୍କଠାରୁ ଲେଖା ଆଣିବାପାଇଁ ସେମାନଙ୍କ ଠିକଣା ଓ ଫୋନ ନମ୍ବର ସେ ମୋତେ ଦେଇଥିଲେ । ନିଜେ ମଧ୍ୟ କେତେଜଣଙ୍କୁ ଲେଖା ପଠାଇବାପାଇଁ ଫୋନ୍ କରିଥିଲେ । ତାଙ୍କ ଘରେ କୌଣସି ଉତ୍ସବ ବା ସଭାସମିତି ହେଲେ ମୋତେ ଡାକିବାକୁ ଭୁଲୁ ନ ଥିଲେ । ତାଙ୍କର ପଦେ ଦି’ ପଦ କଥାରେ ଭରି ରହିଥିଲା ପିତୃତୁଲ୍ୟ ସ୍ନେହ ଓ ମମତା, ଯାହା ମୁଁ ଅନୁଭବ କରିପାରିଥିଲି ।

ସ୍ୱର୍ଗତ ମହାପାତ୍ର ଥିଲେ ନିଷ୍ଠାପର, ଶ୍ରଦ୍ଧାଶୀଳ, ପରୋପକାରୀ ସ୍ନେହୀ ମଣିଷ । ମୂଲ୍ୟବୋଧ ହରେଇ କ୍ରମଶଃ ଅନ୍ତଃସାରଶୂନ୍ୟ ହୋଇଯାଉଥିବା ପୃଥିବୀରେ ତାଙ୍କ ଭଳି ଜଣେ ମୂଲ୍ୟବୋଧର ମଣିଷ ଆଉ ବା କେତେଜଣ ଥିବେ କେଜାଣି ! ଆଜି ଆମେ ଜଣେ ହୃଦୟବାନ୍, ନିରହଙ୍କାରୀ ବ୍ୟକ୍ତିଙ୍କୁ ହରାଇଛୁ । ମରଶରୀର ନଷ୍ଟ ହୋଇପାରେ, ହେଲେ ମନୁଷ୍ୟର ସତ୍‌କର୍ମ, ସହୃଦୟତାପାଇଁ ସେ ଅନ୍ୟମାନଙ୍କ ହୃଦୟରେ ଓ ମାନସପଟରେ ସ୍ମୃତି ହୋଇ ବଞ୍ଚି ରହେ, ତାହାହିଁ ଜୀବନର ସାର୍ଥକତା ।

‘‘କାହିଁରେ ଇଚ୍ଛା ଦ୍ୱେଷ ଯାହାର ନୁହଇ,
ଜାଣ ସେ ବ୍ରହ୍ମପ୍ରାପ୍ତି ନିଶ୍ଚୟ ହୁଅଇ ।
ଅଭିମାନ ମୋହ ଛାଡ଼ିଛି ଯାହାକୁ,
ନିର୍ବାଣ ମୁକ୍ତି ଲାଭ ହୁଅଇ ତାହାକୁ ।’’

ଆଡ୍‌ଭୋକେଟ୍
ବଙ୍ଗାଳୀସାହି, କଟକ

# ସାର୍‌ଙ୍କ ସ୍ମୃତିରେ

ଡାକ୍ତର ବରଦାଚରଣ ମହାନ୍ତି

ସାର୍ ଚାଲିଗଲେ, 'ଆମ୍ରପଲ୍ଲୀ' ନିସ୍ତବ୍ଧ । 'ବିଜ୍ଞାନ ପ୍ରଚାର ସମିତି'ର ସଭାପତି ଆସନ ଶୂନ୍ୟ । ଆରମ୍ଭ ଥିଲେ ଶେଷ ଅଛି, ଜନ୍ମ ଥିଲେ ମୃତ୍ୟୁ ଅଛି । ଏହା ଧ୍ରୁବ ସତ୍ୟ, ହେଲେ ବି ନିଜର ମଣିଷକୁ ହରାଇଲେ ମନ ଦୁଃଖରେ ଭରି ହୋଇଯାଏ ।

"ରହେ ନାହିଁ କିଛି ଚିରନ୍ତନ ହୋଇ ରହେଟି ସୁନାମ ଯଶ,
ଦେବତା ହେଉ କି ମାନବ ହେଉ ସଭିଙ୍କର ଅଛି ଶେଷ ।"

ସାର୍‌ଙ୍କ ଯଶକୀର୍ତ୍ତି, ମଣିଷପଣିଆ ତାଙ୍କୁ ଅମର କରିଦେଇଛି । ସାର୍‌ଙ୍କ ଜ୍ଞାନାଲୋକ ସଦା ଜାଜ୍ୱଲ୍ୟମାନ; ପିଢ଼ି ପରେ ପିଢ଼ି ତାହା ଅନ୍ୟମାନଙ୍କୁ ବାଟ ଦେଖାଇ ଚାଲିଥିବ ।

ସାର୍ ଥିଲେ ସ୍ନେହୀ, ଦରଦୀ, ସରଳ, ନିରାଡ଼ମ୍ବର, ଉଦାର, ନିର୍ବିକାର, ମିଷ୍ଟଭାଷୀ, ସ୍ୱଳ୍ପଭାଷୀ, ଛାତ୍ରବତ୍ସଳ, ବନ୍ଧୁବତ୍ସଳ, ଅହଙ୍କାରଶୂନ୍ୟ ଓ ସେ ଥିଲେ ଅଜାତଶତ୍ରୁ । ମୋଟାମୋଟି ସେ ଥିଲେ ମଣିଷ ପରି ମଣିଷଟିଏ । ସାର୍ ଥିଲେ ଅତି ବିନୟୀ । ତେଣୁ ତାଙ୍କ ପାଖେ ଶତ୍ରୁ ପଶିପାରୁ ନ ଥିଲା । କଥାରେ ଅଛି "ତୁମେ ଯଦି ବିନୟୀ ହେବ, ସୟତାନ୍ ତୁମଠାରୁ ସହସ୍ର ଯୋଜନ ଦୂରରେ ରହିବ ।"

ସାର୍ ସମୟ ସହିତ ତାଳ ମିଳାଇ କର୍ମ କରି ଚାଲୁଥିଲେ । ସମୟକୁ ସର୍ବଦା ତାଙ୍କ କର୍ମ ମାଧ୍ୟମରେ ବାନ୍ଧି ରଖି ସମ୍ମାନ ଜଣାଉଥିଲେ ।

ସାର୍‌ଙ୍କ ଭାଷାରେ 'ବିଜ୍ଞାନ କହେ ପରଜୀବନ ବୋଲି ଗୋଟିଏ କିଛି ନାହିଁ । ଜୀବନଟା ଗୋଟିଏ ରାସାୟନିକ କ୍ରିୟାପ୍ରକ୍ରିୟା । ସେ କହୁଥିଲେ 'ତ୍ରିଭୁବନ' ଚିନ୍ତାଧାରା ଗୋଟିଏ ଅସହାୟ ମଣିଷର ଆଶାବାଡ଼ି । ଅସହାୟ ହେଲେ ମଣିଷ ପ୍ରାର୍ଥନା କରେ, ଭାଗ୍ୟ ଉପରେ ନିର୍ଭର କରେ, କ୍ରନ୍ଦନ କରେ, ଚିତ୍କାର କରେ ।" ସେ ଥିଲେ କର୍ମବୀର, ତାଙ୍କ ଭାଷାରେ, "ମୋର କର୍ମ ମୋର ଈଶ୍ୱର ।" ସେ କହନ୍ତି, "ଯଦି ସତରେ ଠାକୁରେ ଅଛନ୍ତି, ମୋର ଏତିକି ଇଚ୍ଛା ଓ ପ୍ରାର୍ଥନା, ହେ ଠାକୁରେ, ମତେ ଆଉ ଥରେ ମଣିଷ ଜୀବନ ଦିଅ, ବିଜ୍ଞାନର ସେବା କରିବାପାଇଁ, ଜନପ୍ରିୟ ବିଜ୍ଞାନ ରଚନା କରିବାପାଇଁ, ମଣିଷ ଆଖିରୁ ଲୁହ ପୋଛିବାପାଇଁ ଓ ମଣିଷ ଓଠରେ ଟିକିଏ ହସ ଫୁଟେଇବାପାଇଁ ।"

ସାର୍ କହନ୍ତି, 'ବିଜ୍ଞାନ ହେଉଛି ନିଛକ 'ସତ'ର ଗୋଟିଏ ସ୍ୱଚ୍ଛ ପ୍ରତିବିମ୍ବ । ସାରାଜୀବନ ମୁଁ ବିଜ୍ଞାନ ପଛରେ ଧାଇଁଲି । ବିଜ୍ଞାନ ମୋ ପଛରେ ଓ ଦୁହେଁ ବନ୍ଧୁ ହୋଇଗଲୁ, ସମୟଟା ଚାଲିଗଲା, ଜଣାପଡ଼ିଲା ନାହିଁ । ମୋ ଜୀବନ ଆକାଶର ସୂର୍ଯ୍ୟ ଅସ୍ତଗାମୀ ହେଉଛି, ଅପରାହ୍ନର ସନ୍ଧ୍ୟା ଆଗତପ୍ରାୟ । ଅପରାହ୍ନ ପରେ ସନ୍ଧ୍ୟା ଯେ ନିଶ୍ଚୟ ଆସିବ ତାହା ମୁଁ ଜାଣେ । ଜୀବନ ଯେମିତି ହେଉ ତାକୁ ସାମନା କରିବାକୁ ହେବ । Let us face life as it is । ଡରିବାର ନାହିଁ । 'ସାର୍ କହନ୍ତି, ଆମକୁ ସଦାସର୍ବଦା ପୃଥିବୀପୃଷ୍ଠରୁ ବିଦାୟ ନେବାର ପ୍ରସ୍ତୁତୀକରଣ ପର୍ବ ଜାରି ରଖିବାକୁ ପଡ଼ିବ ।"

ସାର୍‌ଙ୍କ ସେହି ସ୍ନେହପୂର୍ଣ୍ଣ ବରଦା ଡାକ, ମମତା ଓ ଆତ୍ମୀୟତା ଭୁଲି ହେବ ନାହିଁ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କଠାରେ ଏତିକି ପ୍ରାର୍ଥନା ଯେ ସାର୍‌ଙ୍କ ପରିବାରର ସମସ୍ତ ସଦସ୍ୟମାନଙ୍କୁ ଅସୀମ ଦୁଃଖ ସହିବାକୁ ଶକ୍ତି ଓ ଧୈର୍ଯ୍ୟ ଦିଅନ୍ତୁ ଓ ସାର୍‌ଙ୍କ ଆତ୍ମାର ସଦ୍‌ଗତି ହେଉ ।

'ବିମଳା ନିବାସ', ତୁଳସୀପୁର,
କଟକ - ୭୫୩୦୦୮

# ମୋର ଗୁରୁଙ୍କ ସ୍ମୃତିରେ

**ଚୌଧୁରୀ ଶରତ୍‌ଚନ୍ଦ୍ର ଦାସ**

ଏହି ଇହଜଗତରେ ଯେ ଜନ୍ମ ହୋଇଛି ତାକୁ ଦିନେ ନା ଦିନେ ଏ ମରଜଗତକୁ ତ୍ୟାଗ କରି ଯିବାକୁ ପଡ଼ିଥାଏ । କିଛି ଦିନ ସେ ଏହି ସଂସାରରେ ରହିବା ସମୟରେ ଯେଉଁ କର୍ମ କରିଯାଆନ୍ତି ସେହି କର୍ମଦ୍ୱାରା କିଏ ସବୁଦିନପାଇଁ ଅମର ହୋଇଯାଆନ୍ତି ଅଥବା କାହାକୁ ସମସ୍ତେ ଦଶାହ କର୍ମ ସଙ୍ଗେ ସବୁଦିନପାଇଁ ଭୁଲିଯାଆନ୍ତି । ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଏପରି ଜଣେ ବ୍ୟକ୍ତି, ତାଙ୍କର ବିଭିନ୍ନ ଲୋକହିତୈଷୀ କର୍ମପାଇଁ ସେ ସବୁ ଯୁଗରେ ଅମର ହୋଇ ରହିବେ ।

ଶ୍ରୀଗୁଣ୍ଡିଚା ପରଦିନ ସକାଳ । ମୁଁ ପୁରୀରେ ଥାଏ । ଖଣ୍ଡିଏ ସମାଜ କିଣି ପ୍ରଥମ ପୃଷ୍ଠା ଖୋଲି ଦେଖିଲାବେଳେ ପ୍ରଥମେ ନଜର ପଡ଼ିଲା ସାର୍ ଆଉ ନାହାନ୍ତି, ମୋତେ ଲାଗିଲା ଆମର ଜଣେ ମୁରବି, ମୋର ପିତୃସ୍ଥାନୀୟ ଗୁରୁ ଆମକୁ ସବୁଦିନପାଇଁ ଛାଡ଼ି ଚାଲିଗଲେ । ତାଙ୍କୁ ଦେଖିବା ମୋ ଭାଗ୍ୟରେ ଆଉ ନାହିଁ । ତତ୍‌ପରେ ମୁଁ ଶ୍ରୀଯୁକ୍ତ ବିଷ୍ଣୁଚରଣ ଜେନାଙ୍କଠାରୁ ସେ ବିଷୟରେ ଗୋଟିଏ ଟେଲିଫୋନ୍ ପାଇଲି ଏବଂ ସେ ବିଷୟରେ ମୁଁ ବାରମ୍ବାର ଟେଲିଫୋନ୍ କରି ବୁଝିଲି ସାର୍‌ଙ୍କ ମରଶରୀର ଖାନନଗର ଶ୍ମଶାନରେ ସେହିଦିନ ସନ୍ଧ୍ୟା ୫ ଘଟିକା ପରେ ଅଗ୍ନିସଂଯୋଗ ହେବ । ତେଣୁ ମୁଁ ପୁରୀରୁ କଟକ ଫେରି ତାଙ୍କ ମରଶରୀରକୁ ଦର୍ଶନ କରିବି ବୋଲି ଆଶା ସଂଚାର ହେଲା । ଜଗନ୍ନାଥଙ୍କ ଆଶୀର୍ବାଦରୁ ତାଙ୍କ ମରଶରୀର ଅଗ୍ନିସଂଯୋଗ ପୂର୍ବରୁ ତାଙ୍କୁ ଶେଷଦର୍ଶନ କରି ନିଜକୁ ଧନ୍ୟ ମନେ କଲି ।

ତାଙ୍କ ବିଷୟରେ ବହୁତ ଅନୁଭୂତି ଅଛି । ମୁଁ ତାଙ୍କର ସିଧାସଳଖ ଛାତ୍ର ହେବାର ସୁଯୋଗ ପାଇନି । ମୁଁ ଏକ ମଫସଲ ସ୍କୁଲରୁ ତାଙ୍କରି ଲିଖିତ ବିଜ୍ଞାନ ବହି ପଢ଼ି ୧୯୬୧ ମସିହାରେ ମାଟ୍ରିକ୍ ପାସ କଲି । ସେହିଦିନରୁ ତାଙ୍କୁ ଦେଖିବି ବୋଲି ମନରେ ଇଚ୍ଛା ଜାଗ୍ରତ ହୋଇଥିଲା । ସମୟକ୍ରମେ ମୁଁ ସେକେଣ୍ଡାରୀ ବୋର୍ଡ ହାଇସ୍କୁଲରେ ଶିକ୍ଷକତା କଲି । ସେଠାରେ ତାଙ୍କରିପରି କେତେଜଣ ମହାନ୍ ବୈଜ୍ଞାନିକମାନଙ୍କଦ୍ୱାରା ପ୍ରତିଷ୍ଠିତ ବିଜ୍ଞାନ ପ୍ରଚାର ସମିତିର ଗୋଟିଏ ସଭା ବୋର୍ଡ଼ ସ୍କୁଲରେ ହେଉଥିଲା । ମୁଁ ସେଠାରେ ତାଙ୍କୁ ପ୍ରଥମେ ଦେଖିଥିଲି ।

ତତ୍‌ପରେ ମୁଁ 'ବିଜ୍ଞାନ ପ୍ରଚାର ସମିତି'ର ଆଜୀବନ ସଭ୍ୟ ହୋଇ ବିଭିନ୍ନ ସ୍ଥାନରେ ସମିତିର ସଭାରେ ଭାଗ ନେଇ ସାର୍‌ଙ୍କ ସାନ୍ନିଧ୍ୟ ଲାଭ କଲି । କିଛି ଦିନ ପରେ ସମିତିର ଯୁଗ୍ମ ସଂପାଦକ ଭାବରେ ମୋତେ ବଛା ହୋଇଥିଲା । ସେହି ସମୟରେ ବିଭିନ୍ନ କାର୍ଯ୍ୟପାଇଁ ତାଙ୍କ ଘରକୁ ମୁଁ ଯାଇଛି ଓ ଅନେକ ଉପାଦେୟ ପରାମର୍ଶ ମଧ୍ୟ ନେଇଛି । ଓଡ଼ିଆରେ ବିଜ୍ଞାନର ପ୍ରଚାର ଓ ପ୍ରସାରପାଇଁ ପ୍ରତିଷ୍ଠିତ ବିଜ୍ଞାନ ପ୍ରଚାର ସମିତିର ସେ ଆଜୀବନ ସଭାପତି ଥିଲେ ଏବଂ ଏହାର ଉନ୍ନତିପାଇଁ ସେ ବହୁ କାର୍ଯ୍ୟ କରିଯାଇଛନ୍ତି । ସେ ଥିଲେ ପୁଣ୍ୟାତ୍ମା । ତାଙ୍କଦ୍ୱାରା ଅନେକ ମେଧାବୀ ଓ ଗରିବ ଛାତ୍ର ଉପକୃତ ହୋଇଛନ୍ତି । ସେମାନଙ୍କପାଇଁ ସେ ଲକ୍ଷ ଲକ୍ଷ ଟଙ୍କା ଦାନ କରି ଦେଇଛନ୍ତି । ମୋର ଅନୁଭୂତିରୁ ମୁଁ ଜାଣିଛି, କୌଣସି କାର୍ଯ୍ୟରେ ବ୍ୟତିକ୍ରମ ଦେଖିଲେ, ସେ ସ୍ନେହର ସହିତ ପାଖକୁ ଡାକି ତାହାର ସମାଧାନ ବତାଇ ଦିଅନ୍ତି । ବେଳେବେଳେ ମଧ୍ୟ ମୋତେ ସେ ପୁତ୍ରତୁଲ୍ୟ ମନେ କରି ମୋ ମୁଣ୍ଡରେ ହାତ ବୁଲାଇ କହନ୍ତି କେଉଁ କାର୍ଯ୍ୟ କିପରି ହେବ । ତାଙ୍କୁ କେବେ ମୁଁ ରାଗିବାର ଦେଖି ନାହିଁ କି ବିରକ୍ତ ହେବାର ଦେଖି ନାହିଁ, ତାଙ୍କ ପରି ଜଣେ ମହାପୁରୁଷଙ୍କଠାରୁ ତାଙ୍କ ଘରେ ପାଖରେ ବସି ବହୁ ଆଶୀର୍ବାଦ କଥା ମୁଁ ଶୁଣିଛି ।

ହେ ପୁଣ୍ୟାତ୍ମା ! ଆଉ କାହାଠାରୁ ମୁଁ ସେ ମିଠାକଥା ଶୁଣିବି । ଆପଣଙ୍କ ଗୁଣ ଯେତେ ବର୍ଣ୍ଣନା କଲେ ମଧ୍ୟ ତାହାର ପରିସମାପ୍ତି ହେବ ନାହିଁ । ଆପଣ ଯେଉଁଠି ଥାଆନ୍ତୁ, ଯେପରି ଥାଆନ୍ତୁ ଆପଣଙ୍କ ଆଶୀର୍ବାଦ ଆମ୍ଭମାନଙ୍କ ଉପରେ ଥାଉ, ଆପଣଙ୍କ ହସ୍ତ ଅଦୃଶ୍ୟ ଭାବରେ ଆମ୍ଭର ମସ୍ତକ ଉପରେ ସର୍ବଦା ରହିଥାଉ, ତାହାକୁ ପାଥେୟକରି ଆପଣଙ୍କ ପ୍ରଦର୍ଶିତ ପଥ ଅନୁସରଣ କରି ଆମେ ବିଜ୍ଞାନ ପ୍ରଚାର ସମିତିକୁ ଆଗେଇ ନେଉ । ଆପଣଙ୍କ ଦେହାନ୍ତରେ ଆପଣଙ୍କ ପରିବାରର ତଥା ଆମ୍ଭମାନଙ୍କର ଯେଉଁ ଅପୂରଣୀୟ କ୍ଷତି ହୋଇଛି ତାକୁ ସହିବାକୁ ଭଗବାନ୍ ଆମକୁ ଶକ୍ତି ଦିଅନ୍ତୁ – ଏହା ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ।

ରାଜାବଗିଚା,
ଲେବରକଲୋନୀ, କଟକ – ୯

# ସେଇ ଦୁଇ ପୃଷ୍ଠା

**ଇଂ. ପ୍ରତାପକୁମାର ସ୍ୱାଇଁ**

ଯୋଗଜନ୍ମା ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଏକାଧାରରେ ଅଧ୍ୟାପକ, ବୈଜ୍ଞାନିକ, ସୁବକ୍ତା, ଲେଖକ ଓ ସମାଜସେବୀ ଥିଲେ । ବିଜ୍ଞାନର ପ୍ରସାର ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ସେ ଭଦ୍ରକର କୁଆଁସ ଗ୍ରାମରେ ୧୯୨୨ ମସିହାରେ ଏକ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଦାରିଦ୍ର୍ୟ ଯେ ଅଧ୍ୟୟନର ପ୍ରଗତିକୁ ଅବରୋଧ କରିବାରେ ଅସମର୍ଥ ସେ ତାହା ପ୍ରମାଣ କରିଛନ୍ତି ତାଙ୍କ ଛାତ୍ର ଜୀବନରେ । ସେ ବାଲ୍ୟକାଳରୁ ପିତୃହରା ହୋଇ ପଡ଼ିଥିଲେ । ହେଲେ ତାଙ୍କର ଅଧ୍ୟବସାୟ, ଏକନିଷ୍ଠତା ଓ ପାଠପଢ଼ାର ଝୁଙ୍କ୍ ପ୍ରାଥମିକ ଶ୍ରେଣୀରୁ କଲେଜ ପର୍ଯ୍ୟନ୍ତ ପ୍ରତ୍ୟେକ ସୋପାନରେ ମେଧା ବୃତ୍ତି ପାଇବାରେ ସାହାଯ୍ୟ କରିଥିଲା ।

ଭଦ୍ରକରେ ତାଙ୍କ ଗାଁ ଠାରୁ ମୋ ଗାଁ ମାତ୍ର ଦୁଇ ମାଇଲ ଦୂର । ହାଇସ୍କୁଲ ପଢ଼ିଲାବେଳେ ସେ ଲେଖିଥିବା ରସାୟନ ବିଜ୍ଞାନ ପଢ଼ିଥିଲି; କିନ୍ତୁ କେବେ ଦର୍ଶନ କରିବାର ସୁଯୋଗ ପାଇ ନ ଥିଲି । କଲେଜ ପାଠ ବେଳେ ମୁଁ ଆମ ଗାଁ ପାଖ ଭଦ୍ରକ କଲେଜରେ ଅଧ୍ୟୟନ କରିବାରୁ ତାଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇ ନ ଥିଲି । ତେଣୁ ପିଲାଦିନରୁ ପଢ଼ିଥିବା ବିଜ୍ଞାନ ବହି, 'ପୃଥିବୀ ବାହାରେ ମଣିଷ' ଓ 'ଉଡ଼ନ୍ତା ଥାଳିଆ' ମାଧ୍ୟମରେ ସେ ମୋର ପରିଚିତ । ଦୀର୍ଘ ୩୬ ବର୍ଷ ଚାକିରି ବେଳରେ ମଧ୍ୟ ତାଙ୍କ ସହ ପରିଚିତ ହେବାର ଅବକାଶ ନ ଥିଲା । ସରକାରୀ ଚାକିରିରୁ ଅବସର ନେବା ପରେ ମୁଁ ବିଜ୍ଞାନ ପ୍ରଚାର ସମିତିର ଏକ ସଭ୍ୟ ହେଲି । ପ୍ରଥମ ଦିନରେ ତାଙ୍କର ଘରେ ବିଜ୍ଞାନ ପ୍ରଚାର ସମିତି ଗୃହରେ ଯଥା ସମୟର ଅଳ୍ପ ଆଗରୁ ମୁଁ ପହଞ୍ଚିଥିଲି ଓ ଅପେକ୍ଷା କରିଥିଲି ସେହି ମହାପୁରୁଷଙ୍କ ଦର୍ଶନପାଇଁ । ଠିକ୍ ସମୟରେ ମନ୍ଥର ଗତିରେ ଗୌରବର୍ଣ୍ଣ, ସ୍ୱଳ୍ପ ଉଚ୍ଚ, ଅତି ସୁନ୍ଦର ମନୋରମ ବ୍ୟକ୍ତିଟିଏ ପ୍ରବେଶ କଲେ । ଆଗରୁ ବହୁ ପତ୍ରପତ୍ରିକାରୁ ତାଙ୍କର ଫଟୋ ଦେଖିଥିବାରୁ ଚିହ୍ନିବାରେ ଅସୁବିଧା ହୋଇ ନ ଥିଲା । ସଭାପତି ଆସନରେ ବସିବା ପରେ, ବିଜ୍ଞାନ ପ୍ରଚାର ସମିତିର ସାଧାରଣ ସମ୍ପାଦକ ମୋର ନୂତନ ସଭ୍ୟପଦ ଘୋଷଣା କରିବାରୁ ମୁଁ ପଛ ଧାଡ଼ିରେ ଠିଆ ହେଲି । ଆଗ ଧାଡ଼ିରେ ସିଟ୍ ଖାଲି ଥିଲା । ସାର୍ ମୋତେ ପାଖକୁ ଡାକିଲେ ଓ ଆଗ ଧାଡ଼ିରେ ଖାଲି ଥିବା ସିଟ୍‌ରେ ବସିବାକୁ ନିର୍ଦ୍ଦେଶ ଦେଲେ । ପ୍ରବନ୍ଧମାନ ପାଠ ହେଲା । କେତେକ ସଭ୍ୟ ପ୍ରବନ୍ଧ ପାଠ ବେଳେ, ଭୁଲଭଟକା ବିଷୟରେ ନିଜ ନିଜ ମଧ୍ୟରେ ବାକ୍ୟାଳାପ କରିବାର ଗୁଞ୍ଜରଣ ସୃଷ୍ଟି ହେଉଥାଏ । କିନ୍ତୁ ମୁଁ ଦେଖୁଥାଏ, ସାର୍ ପ୍ରତ୍ୟେକ ପ୍ରବନ୍ଧକୁ ତନ୍ନ ତନ୍ନ ଅନୁଧ୍ୟାନ କରୁଛନ୍ତି ଶ୍ରବଣ ମାଧ୍ୟମରେ । ପ୍ରବନ୍ଧ ପାଠ ପରେ କେଉଁଟା ଭୁଲ୍ ଓ ଠିକ୍ କ'ଣ ହେବ ସେ ଚେତାଇ ଦେଉଥିଲେ । ପ୍ରବନ୍ଧ ପାଠ ପରେ ପ୍ରବନ୍ଧ ଉପରେ ଚର୍ଚ୍ଚା ସମସ୍ତ ସଭ୍ୟଙ୍କ ମଧ୍ୟରେ ବେଶ୍ ସୁନ୍ଦର ଭାବରେ ବିତର୍କିତ ହୁଏ । ଶେଷରେ ସଭାପତି କେଉଁଟା ବାଦିଲ ହେବ ଅଥବା ଯୋଡ଼ାହେବ ତାହା ଦର୍ଶାଉଥିଲେ । ତାଙ୍କର ଜ୍ଞାନ କେବଳ ରସାୟନ ବିଜ୍ଞାନରେ ସୀମିତ ନ ଥିଲା, ଥିଲା ଅସୀମ । ଡାକ୍ତରୀ ପ୍ରବନ୍ଧ, ପଦାର୍ଥ ବିଜ୍ଞାନ, ପ୍ରାଣୀ, ଉଦ୍ଭିଦ ବିଜ୍ଞାନ ତଥା ଇଞ୍ଜିନିୟରିଂ ପ୍ରବନ୍ଧରେ ଭୁଲ୍‌କୁ ମଧ୍ୟ ଦର୍ଶାଇପାରୁଥିଲେ ।

ଦିନକର କଥା । ଅଧ୍ୟାପିକା ପ୍ରିୟତମା ଦେଓ ଏକ ପ୍ରବନ୍ଧ ପାଠ କରୁଥିଲେ । ପ୍ରବନ୍ଧଗୁଡ଼ିକ ଖୁବ୍ ବଡ଼ ହେବା କଥା ନୁହେଁ । ସେ ପ୍ରବନ୍ଧଟି ପ୍ରାୟ ଚାରି ପୃଷ୍ଠା ଥିଲା । ସାର୍ ତାକୁ ଛୋଟ କରି ଦୁଇ ପୃଷ୍ଠାକୁ ଆଣିବାକୁ ଉପଦେଶ ଦେଲେ । ପ୍ରିୟତମା ଅପା ନଛୋଡ଼ବନ୍ଧା । ଏହାକୁ ସେ କମାଇ ପାରିବେନି । ମୁଁ ପରିସ୍ଥିତି ଦେଖି ଉଠିପଡ଼ି କହିଲି, ସାର୍, ଦୁଇ ପୃଷ୍ଠା ମଧ୍ୟରେ ପ୍ରବନ୍ଧ ଛପା ହେବା ଉଚିତ । କିନ୍ତୁ ହାତ ଲେଖା, ବଡ଼ ବଡ଼ ଅକ୍ଷରରେ ଲେଖା ଥିଲେ, ଛପା ହେଲେ ଚାରି ପୃଷ୍ଠାର ଲେଖା ଦୁଇ ପୃଷ୍ଠା ହୋଇଯିବ । ସାର୍ କିନ୍ତୁ କହିଲେ, ପେଚିର (ପ୍ରିୟତମା ଦେଓ) ଅକ୍ଷର ଖୁବ୍ ଛୋଟ ମକା

ମଞ୍ଜିପରି । ମୋର କହିବାର ବିଶେଷତ୍ୱ ଏହି ଯେ ସେ ପ୍ରତ୍ୟେକ ସଭ୍ୟଙ୍କୁ ଆମୂଳଚୂଳ ଚିହ୍ନି ଥିଲେ । ସେମାନଙ୍କର ଲେଖା, ଲେଖାର ଶୈଳୀ, ଚରିତ୍ର, କର୍ମକୁଶଳତା ଓ ଦକ୍ଷତା ଉପରେ ତାଙ୍କର ସମ୍ୟକ୍ ଧାରଣା ଥିଲା । ପ୍ରତ୍ୟେକଙ୍କୁ ନିଜର ବୋଲି ମନେ କରୁଥିଲେ । ସେଇ ଦୁଇ ପୃଷ୍ଠା ଲେଖାର ମାପରେ ଆଜି ଏ ଲେଖା ଶେଷ କରୁଛି; ନ ହେଲେ ସାର୍ ରାଗିବେ । ଅକ୍ଷରଗୁଡ଼ିକ ଦେଖାଯାଉନି; ଲେଖିଲାବେଳକୁ ଆଖିରେ ଲୁହ ଭରିଯାଉଛି । ମନ ହୃଦୟରେ ସାର୍‌ଙ୍କର ସେ ହସ ହସ ମୁହଁ । ସେ ଯେ ରଥଯାତ୍ରା ଠାରୁ ଆମ ପାଖରୁ ଚିର ବିଦାୟ ନେଇଛନ୍ତି ଏହା ବିଶ୍ୱାସ ହେଉନି । ଗୁଣ୍ଡିଚାରେ ରଥ ଶ୍ରୀମନ୍ଦିରରୁ ଗୁଣ୍ଡିଚା ଘରକୁ ଯାଏ ଓ ଆଠ ଦିନ ପରେ ପୁଣି ଶ୍ରୀମନ୍ଦିରକୁ ବାହୁଡ଼େ । କିନ୍ତୁ ତାଙ୍କ ରଥ ଆଉ ଏ ଆମ୍ରପଲ୍ଲୀ ବିଜ୍ଞାନ ମନ୍ଦିରକୁ ଫେରିବନି ।

ପ୍ରଫେସରପଡ଼ା, କଟକ

---

# ସେହି ଶୂନ୍ୟସ୍ଥାନ–ହେବ କିବା ପୂର୍ଣ୍ଣ

**ସୁଶ୍ରୁତ ମହାନ୍ତି (ଜିକୁ)**

ପ୍ରଖ୍ୟାତ ବୈଜ୍ଞାନିକ ପ୍ରଫେସର ଡାକ୍ତର ଗୋକୁଳାନନ୍ଦ ମହାପାତ୍ର ଜଣେ କାଳଜୟୀ ପୁରୁଷ । ସେ ବିଜ୍ଞାନ ଜଗତରେ ଅମର ହୋଇ ରହିବେ । ଯେଉଁ ସମୟରେ ବିଜ୍ଞାନ କ'ଣ ଲୋକ ଜାଣି ନ ଥିଲେ ସେତେବେଳେ ବିଜ୍ଞାନକୁ ସହଜ ଓ ସରଳ ଭାଷାରେ ବିଭିନ୍ନ ପ୍ରକାର ବହି ଓ ପତ୍ରିକା ମାଧ୍ୟମରେ ଲୋକମାନଙ୍କ ପାଖରେ ପହଞ୍ଚାଇ ପାରୁଥିଲେ । ବିଜ୍ଞାନ ଶିକ୍ଷକ ଖୋଜି ବୁଲୁଥିବାବେଳେ ସେ ଥିଲେ ଆଲୋକ ଶିଖା । ସେଥିପାଇଁ ସରକାର ତାଙ୍କୁ ଉଚ୍ଚ ଶିକ୍ଷାପାଇଁ ଆମେରିକାକୁ ପଠାଇଥିଲେ । ଯାହା ପାଇଁ ଆମ ଦେଶ ଗୌରବାନ୍ୱିତ, ସେହି କାଳଜୟୀ ପୁରୁଷ ଆଜି ଭାରତ ଭୂମିରୁ ବିଦାୟ ନେଇଗଲେ, ଯଦ୍ଦ୍ୱାରା ବିଜ୍ଞାନ ଜଗତର ଏକ ଅପୂରଣୀୟ କ୍ଷତି ହେଲା ।

ଡଃ ଗୋକୁଳାନନ୍ଦ ମହାପାତ୍ର ମୋ ବାପାଙ୍କ ଅଜା, ମୋର ଅଣଅଜା । ମୋ ବାପା ରାଧାବିନୋଦ ମହାନ୍ତି ସବୁଦିନ ଦୋଳମୁଣ୍ଡାଇ ଯାଇ ଅଜାଙ୍କ ସହିତ ସଂଧ୍ୟା ୬ଟାରୁ ରାତି ୯ଟା ପର୍ଯ୍ୟନ୍ତ କଟାନ୍ତି । ବାପାଙ୍କ ଦେହାନ୍ତ ପରେ ଅଜା ବହୁତ ନିଃସଙ୍ଗ ହୋଇଗଲେ । ସେ କହନ୍ତି, ଜିକୁ, ତୋ ବାପା ମରିଗଲା ପରେ ମୁଁ ନିଃସଙ୍ଗ ହୋଇଗଲି । କେତେବେଳେ କେମିତି ଆସୁଥିବୁ, ତୋ ବୋଉକୁ ଆଣିବୁ । ତୁ, ତୋ ବାପା, ମା'ଙ୍କର ସେବା କରିବୁ, ତୁ ବଡ଼ ମଣିଷ ହେବୁ । ଭଗବାନ୍ ତୋର ମଙ୍ଗଳ କରିବେ । ବୋଉକୁ ନେଇ ମଝିରେ ମଝିରେ ମୁଁ ତାଙ୍କ ଘରକୁ ଯାଏ । ଯେତେବେଳେ ଯାଇ ନମସ୍କାର କରେ ସେ କହନ୍ତି ତୁମେ ଭଲ ମଣିଷ ହୁଅ । ତାଙ୍କ ଦେହ ଖରାପ ବେଳେ ଟିକେ ତାଙ୍କୁ ଗାଡ଼ିରେ ନେଇ 'ଆପୋଲୋ'ରେ ପହଞ୍ଚାଇଥିଲି ବୋଲି ମୋତେ ସେ କେତେ ଯେ ଆଶୀର୍ବାଦ କରିଥିଲେ ତାହା ମୋ ଜୀବନର ଅମୂଲ୍ୟ ସଂପଦ ହୋଇ ରହିଲା । ତାଙ୍କ ହାତ ତିଆରି ମଣିଷ ଆଜି ଭାରତର ପ୍ରତିଷ୍ଠିତ ବ୍ୟକ୍ତିମାନେ ।

"ମଣିଷ ତ ମରିଯାଏ, ଆତ୍ମା କେବେ ମରେନା
ମୃତ୍ୟୁ ସିନା ଚିର ସତ୍ୟ କୀରତି କି ଲୁଚେନା"

ସେ ଥିଲେ କୀର୍ତ୍ତିମାନ୍ ପୁରୁଷ, ତାଙ୍କ ବିୟୋଗରେ ଉତ୍କଳ ଜନନୀ ଜଣେ ବରପୁତ୍ରକୁ ହରାଇଲା । ତାଙ୍କ ତିରୋଧାନରେ ଯେଉଁ ଶୂନ୍ୟତା ସୃଷ୍ଟିହେଲା ସେହି ସ୍ଥାନ କେହି ପୂରଣ କରିପାରିବେ ନାହିଁ । ଆଜି ସେହି ଅମର ଆତ୍ମାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରି ପ୍ରାର୍ଥନା କରୁଛି ।

ହେ ପୂଜ୍ୟ, ହେ ନମସ୍ୟ, ମହାନ୍ ପୁରୁଷ ! ତୁମ ପାଦ ତଳେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ରାଜାବଗିଚା, କଟକ

# ମୋର ପରମପୂଜ୍ୟ ବାପା

**ରଶ୍ମି ମହାନ୍ତି**

ମୋର ଦେବତୁଲ୍ୟ ବାପାଙ୍କ ବିଷୟରେ କ'ଣ ଲେଖିବି, କେଉଁଠାରୁ ଆରମ୍ଭ କରିବି, କେଉଁଠାରେ ଶେଷ କରିବି ନିଜେ ଭାବିପାରୁ ନାହିଁ । ସେ କ୍ଷମାର ସାଗର, ଦୟାର ସାଗର ତା'ର ଅନ୍ତ ନାହିଁ । ତଥାପି ନିଜର କୋହକୁ ଚାପି ନିଜେ କିଛି ଲେଖିବାକୁ ଚେଷ୍ଟା କରୁଛି । ପାରିବି କି ନାହିଁ ଜାଣେନା .....

ବାପା, ସାତ ବର୍ଷ ପୂର୍ବେ ବୋଉ ଆମମାନଙ୍କୁ ଛାଡ଼ି ଚାଲିଗଲା । ଆପଣ ଥିଲେ ଆମର ସାହାଭରସା । ଆପଣଙ୍କ ପାଖରେ ଆମର ସୁବିଧା ଅସୁବିଧା କହୁଥିଲୁ । ଆପଣ ସବୁ ଶୁଣୁଥିଲେ, ତାକୁ ମଧ୍ୟ ସମାଧାନ କରିଦେଉଥିଲେ । ଆପଣଙ୍କର ଉପଦେଶ ଅମୃତ ଭଳି ଲାଗୁଥିଲା । ଆପଣ ଆମର ଆଦର୍ଶ ଥିଲେ । ବୋଉ ଯେତେବେଳେ ଚାଲିଗଲା, ସେତେବେଳେ ମୁଁ ରାଜସ୍ଥାନରେ ଥିଲି । ଦୌଡ଼ି ଆସିଥିଲି ବୋଉର ଶେଷଦର୍ଶନପାଇଁ । ଏଥର ବାପା, ଆପଣ ଯେତେବେଳେ (ସାନଭାଇ ବାବୁଲି ଘର) ଅହମଦାବାଦ STERLING I.C.U ରେ ଥିଲେ ସେତେବେଳେ ସେମିତି ଦୌଡ଼ି ଯାଇଥିଲି ଆପଣଙ୍କୁ ଦେଖିବାପାଇଁ । ଏବେବି ମୋର ମନେ ପଡ଼ିଯାଉଛି I.C.U Bed ପାଖରେ ଛିଡ଼ାହୋଇ କେତେ ଡାକେ ବାପା .... ବାପା .... ବାପା ଟିକିଏ ଆଖି ଖୋଲନ୍ତୁ । ଆପଣଙ୍କ ଝିଅ ରୁନୁ ଆସିଛି । ଏମିତି ସବୁଦିନ ଡାକି ଡାକି ନିରାଶରେ ସାତ ଦିନ ପରେ ଫେରି ଆସିଲି ଭୁବନେଶ୍ୱର । ଆଖି ଖୋଲିଲେ ନାହିଁ । ଆଖିର ଲୁହ ଲୁହରେ ରହିଗଲା । ମୋର ଆସିବାର ଠିକ୍ ନଅ ଦିନ ପରେ ଅହମଦାବାଦରୁ ଭାଉଜ ସୀମି ପାଖରୁ ଫୋନ ଆସିଲା, ବାପା ଆଉନାହାନ୍ତି .... ଲାଗିଲା ଯେମିତି ଘରର ଛାତ ତଳେ ଭୁଷୁଡ଼ି ପଡ଼ିଲା । ସତରେ ବାପା ଆପଣ ଆମର ସାହସ ଥିଲେ, ଦମ୍ଭ ଥିଲେ । ଆମେ ଭୁବନେଶ୍ୱରରେ settle ୨୦୦୮ରେ ହେଲାପରେ କେତେବେଳେ କେମିତି ଆପଣ ଆସନ୍ତି ମୋ' ଘରକୁ । ଯାହାହେଉ ବେଳେ ବେଳେ ସେବା କରିବାର ସୁଯୋଗ ପାଇଛି । ସେତିକି ମୋର ଧନ୍ୟ । ସବୁବେଳେ ପ୍ରାୟ ମୁଁ ଓ ଝୁନୁ ଆପଣଙ୍କ ପାଖକୁ ଦୋଳମୁଣ୍ଡାଇ ଯାଉ । ଯଦି ଝୁନୁ ନ ଆସିବ ପଚାରିବେ, ଝୁନୁ କାହିଁ ଆସି ନାହିଁ ? ସବୁବେଳେ ଆପଣ ରୁନୁ ଝୁନୁଙ୍କୁ ସାଙ୍ଗରେ ଦେଖିବାକୁ ଚାହାନ୍ତି, ସତେ ଯେପରି ସେମାନେ ଆପଣଙ୍କ ଯାଆଁଳା ଝିଅ ଦୁଇଟି । ଏଥରକ ବାପା, ଆମମାନଙ୍କର ଦୋଳମୁଣ୍ଡାଇ ଯିବା ବନ୍ଦ ହୋଇଗଲା । ବୋଉ ଆରପାରିକୁ ଗଲାପରେ ଆପଣଙ୍କ ପାଖକୁ ଦୌଡ଼ି ଯାଉଥିଲି । ଭାଇମାନେ ତ ବିଦେଶରେ ରହିଲେ । ଆମପାଇଁ ଆମର ଅତି ଆପଣାର ଦୋଳମୁଣ୍ଡାଇ ଘରଟି ସବୁଦିନପାଇଁ ଆମଠାରୁ ଦୂରେଇଗଲା । ବାପା, ଆପଣ ରଥଯାତ୍ରାର ପବିତ୍ର ଦିନରେ ଚାଲିଗଲେ । ଆପଣଙ୍କର ଅମର ଆତ୍ମାର ସଦ୍‌ଗତି ନିମନ୍ତେ ପରମବ୍ରହ୍ମଙ୍କ ନିକଟରେ ବିନମ୍ର ପ୍ରାର୍ଥନା କରୁଛି ।

ଭୁବନେଶ୍ୱର

# ଶେଷ ଦୁଇପଦ ମନର କଥା
# ମୋ ବାପାଙ୍କ ପାଇଁ

ଡଃ ଜ୍ୟୋସ୍ନା ମହାପାତ୍ର

ଆଜି ବାପା ମୁଁ କାହାକୁ ଦୋଷ ଦେବି ? ଏୟାର୍ ଲାଇନ୍‌ସକୁ ନା ମୋ ଭାଗ୍ୟକୁ ନା ସେ ଆପଣଙ୍କର ଏହାହିଁ ଇଚ୍ଛା ଥିଲା । ଆପଣ କ'ଣ ସତରେ ଚାହୁଁ ନ ଥିଲେ ଆପଣଙ୍କ ଝିଅ ଆପଣଙ୍କର ଏହି ଶେଷଯାତ୍ରାର ଦୃଶ୍ୟ ଦେଖୁ ବୋଲି କାରଣ ସମ୍ଭାଳି ପାରିବ ନାହିଁ । ମୋ ପାଖରେ ଥିଲାବେଳେ ଏହା ଥିଲା ଆପଣଙ୍କର ସବୁବେଳେ ଅଭିଯୋଗ । ଆଉ କାହାପାଇଁ ଡରିବି ବାପା ! ସବୁର ଆଜି ପୂର୍ଣ୍ଣଚ୍ଛେଦ ପଡ଼ିଗଲା ଚିରଦିନପାଇଁ । ଖାଲି ଆପଣଙ୍କର ସ୍ମୃତି ଓ ଆଦର୍ଶକୁ ନେଇ ଚାଲିବୁ ସମସ୍ତେ । ବୋଉକୁ ହରାଇ ଆପଣଙ୍କ ଭିତରେ ବୋଉକୁ ଅନୁଭବ କରୁଥିଲୁ ଆମେ ଓ ପୁଅ, ଝିଅସବୁ । ଆଜି ଆମେ ସମସ୍ତେ ବେସାହାରା ହୋଇଗଲୁ ବାପା ! ଆଜି ପର୍ଯ୍ୟନ୍ତ ମୁଁ ଆପଣଙ୍କ ପରି ଲୋକଟିଏ ଏହି ଦୁନିଆରେ ପାଇ ନାହିଁ । ଆପଣ ଥିଲେ ପୂରା ଏକ ସ୍ୱତନ୍ତ୍ର ଧରଣର । ଜାଣିଥିଲି ଭେଣ୍ଟିଲେଟର୍‌ରେ ଥିଲେ ଏବଂ ସବୁ ପାରାମିଟର ଠିକ୍ ରହୁଥିଲା । ଅହମ୍ମଦାବାଦ ଫୋନ୍ କରି ବାବୁଲି, ସୀମିଙ୍କଠାରୁ ବୁଝୁଥିଲି । ଡାକ୍ତରଙ୍କର ଶେଷ ପର୍ଯ୍ୟନ୍ତ କହିବା ଥିଲା ସବୁ ଠିକ୍ ଚାଲିଛି । ଚେତା ଫେରିବାକୁ ହୁଏତ ମାସ ମାସ ଲାଗିଯାଇପାରେ ।

ଶେଷ କେଇ ଦିନ ଆପଣଙ୍କ ସଙ୍ଗେ ବଙ୍କୁ ଘରେ ବାବୁଲି, ନୂଆ ନାତୁଣୀବୋହୂ ଓ ନାତି ସଙ୍ଗେ କଟାଇଥିଲୁ । କେତେ ଖୁସି ଗପ ଥଟ୍ଟା ମଜା ସବୁ ଆଜି ସ୍ୱପ୍ନ ହୋଇଗଲା ବାପା ! ମୋର ଠିକ୍ ମନେପଡୁଛି ଆପଣଙ୍କ ନାତି ବାବା ଓ ବୋହୂ ସୁନିତା ଯେତେବେଳେ ଆପଣଙ୍କର ଆଶୀର୍ବାଦ ଶେଷ ଦିନ ନେଇ ଫେରିଲାବେଳେ ଆପଣଙ୍କୁ କହିଲେ, 'ଅଜା ! ଆପଣ ନିଶ୍ଚୟ ଭଲରେ ଥିବେ, ଆମେ ଡିସେମ୍ବରରେ ଆସିଲେ ଆହୁରି ଗପିବା ।' ଆପଣ ଖୁବ୍ ସୁନ୍ଦର 'ହଁ' ଟିଏ ମାରିଥିଲେ । କିନ୍ତୁ କ'ଣ ହେଲା ? ନୂଆ ଦୁନିଆରେ ସେମାନେ ପାଦ ଦେଇଛନ୍ତି ବୋଲି କେତେ ସୁନ୍ଦର ଉପଦେଶ ଆପଣଙ୍କଠାରୁ ବାହାଘରବେଳେ ଶୁଣିଛନ୍ତି ସବୁତକ ରେକର୍ଡିଂ କରି ସାଇତି ରଖିଛି ଆପଣଙ୍କ ନାତୁଣୀ ମାମୁନ ଓ ଜ୍ୱାଇଁ ବାପି । କାହାପାଇଁ ଆଉ ପତଳା ଦୋଷା ଓ ବିନା ଅଣ୍ଡା ସ୍ପଞ୍ଜ କେକ୍ ବନାଇବ । ପସନ୍ଦ କରିବା ଲୋକ ଆଜି କାହିଁ କେତେ ଦୂରରେ । ବାପା ମୋର ଦୁଇଟି ଅତି ଖୁସିର ଦିନ ମୋ ମନରେ ରହିଛି ଓ ରହିବ ଚିର ଦିନ ।

ଆଉ ଗୋଟିଏ ବଡ଼ ଖୁସିର ଦିନ ଥିଲା, ଯେଉଁଦିନ ଆପଣଙ୍କ ପ୍ରଥମ ବୈଜ୍ଞାନିକ ଉପନ୍ୟାସ 'ପୃଥିବୀ ବାହାରେ ମଣିଷ'ର ଇଂରାଜୀ ଅନୁବାଦ 'Man Beyond Earth'ର ଉଦ୍‌ଘାଟନ ଉତ୍ସବ । ଆପଣ ଡାଏସ୍‌ରେ ବସି କେତେ ପ୍ରଶଂସା କଲେ ଭିଡ଼ିଓ ରେକର୍ଡିଂରେ ସବୁ ସାଇତିଛି ବାପା । ଆପଣଙ୍କର ଉପଦେଶ ''ଟୁନୁ ତୁ ଭଲ ଲେଖୁଛୁ, ଆହୁରି ସମୟ କାଢ଼ି ଲେଖେ, ଭଲ ବହି ବାହାରିବ ।'' ଆପଣଙ୍କ ଏହି ବୟସରେ ମଧ୍ୟ ଆପଣଙ୍କର ଉପଦେଶ ସବୁକ୍ଷେତ୍ରରେ ମୋର ଦରକାର ପଡ଼ିଥାଏ । ସକାଳୁ ତରବରରେ ଯେଉଁଦିନ କଲେଜ ପଳାଇଥିବି ଘରୁ ଫୋନ୍‌କରିପାରି ନ ଥିବି, କ୍ଲାସ୍‌ରୁ ଫୋନ୍ କରି ଟିକେ କଥାହେଲେ ମୋତେ ବଡ଼ ଶାନ୍ତି ଲାଗେ ।

ଏଠାରେ ଝିଅ-ଜ୍ୱାଇଁ, ପୁଅ-ବୋହୂ ଅନେକ ବୁଝାଉଛନ୍ତି, କିନ୍ତୁ ବାପା ମୁଁ ଯେ ଆପଣଙ୍କୁ କେବେ ଆଉ ଦେଖିପାରିବି ନାହିଁ କି ପଦେ କଥା ହୋଇପାରିବି ନାହିଁ ମୋତେ ବିଶ୍ୱାସ ଆସୁ ନାହିଁ । ମୋ ଲୋକପ୍ରିୟ ବିଜ୍ଞାନ ବହିଟିର ନାଁ ଆପଣ ରଖିଲେ, କିନ୍ତୁ ଉନ୍ମୋଚନକୁ ଆପଣ ରହିପାରିଲେ ନାହିଁ । ଏତିକିରେ ରହୁଛି ବାପା ! ଆଖିରେ ଲୁହ ଭର୍ତ୍ତି, ଆଉ ଲେଖିପାରୁ ନାହିଁ । ସ୍ୱର୍ଗରେ ଥାଇ ଆଶୀର୍ବାଦ ଆମ ସମସ୍ତଙ୍କ ଉପରେ ଢାଳୁଥାଆନ୍ତୁ । ଏତିକି ମୋର ଶେଷ ଅଳି ଆପଣଙ୍କ ପାଖରେ ।

ଟୁନୁ (ଜ୍ୟୋସ୍ନା)

# ମୋ ବାପା ମୋ ପାଇଁ ଭଗବାନ୍

ସ୍ନିଗ୍ଧା ମହାପାତ୍ର (ଝୁନୁ)

ମା' ଧରିତ୍ରୀ ହେଲେ ବାପା ଆକାଶ । କେହି କେହି କହନ୍ତି ମାଆ ଘରର ଚାରି କାନ୍ଥ ହେଲେ ବାପା ଛାତ । ଘର ଭିତରେ ପିଲାଟିଏ ମାଆର ଆକଟରେ ରହୁଥିବା ବେଳେ ପାଦକୁ ଗୋଡ଼ କାଢ଼ିଲେ ବାପାର ସାହାରା ଲୋଡ଼େ । ସବୁଠାରୁ ବଡ଼ କଥା ହେଲା, ଝିଅ ହେଉ କି ପୁଅ ସେ ବାପାର ପରିଚୟରେ ହିଁ ପରିଚିତ ହୁଏ । କେବଳ ଆମ ଦେଶରେ ନୁହେଁ, ସାରା ପୃଥିବୀରେ ଏହି ଧାରା ପ୍ରଚଳିତ । ତେବେ ଭାରତୀୟ ପରମ୍ପରାରେ ବାପାଙ୍କୁ ଦେବତାଜ୍ଞାନ କରିବାର କଥା କୁହାଯାଇଛି । ନିମ୍ନୋକ୍ତ ଶ୍ଳୋକଟିଏ ଏହା ସୂଚିତ କରେ –

ପିତା ଧର୍ମଃ, ପିତା ସ୍ୱର୍ଗଃ, ପିତା ହି ପରମଂ ତପଃ ।
ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବଦେବତାଃ॥

ଭାରତୀୟ ଧର୍ମ ସାହିତ୍ୟରେ ବେଦରୁ ପୁରାଣଯାଏ ସବୁଠି ପିତୃପୂଜାକୁ ବିଶେଷ ଗୁରୁତ୍ୱ ଦିଆଯାଇଛି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଈଶ୍ୱରଙ୍କୁ ବିଭିନ୍ନ ଧର୍ମମତ ନିର୍ବିଶେଷରେ ପରମପିତାର ଆଖ୍ୟା ଦିଆଯାଇଛି । ତେଣୁ ପିତା ବା ବାପାଙ୍କୁ ଈଶ୍ୱରଙ୍କ ପ୍ରତିଭୂ ଜ୍ଞାନ କରିବାପାଇଁ ସର୍ବତ୍ର ପରାମର୍ଶ ଦିଆଯାଇଛି । ଜୀବନରେ ବାପାଙ୍କ ଗୁରୁତ୍ୱ କେତେ ତାହା ପରିଣତ ବୟସରେ ପହଞ୍ଚିଥିବା ସନ୍ତାନସନ୍ତତି ମଧ୍ୟ ଅନୁଭବ କରନ୍ତି । ଯଦି କିଛି ସମସ୍ୟା ଆସେ ତେବେ ବାପାଙ୍କ ଉପଦେଶ ଓ ପରାମର୍ଶ ହିଁ ସମାଧାନର ପନ୍ଥା ନିର୍ଣ୍ଣୟରେ ବହୁଭାବେ ସହାୟକ ହୁଏ । ବାପା କିଛି କରନ୍ତୁ ବା ନ କରନ୍ତୁ 'ବାପା ଅଛନ୍ତି' ଏହି ମାନସିକ ଦମ୍ଭ ହିଁ ବହୁଭାବେ ସନ୍ତାନଙ୍କୁ ପ୍ରେରଣା ଯୋଗାଏ ।

ଠିକ୍ ମୋ ବାପା ମୋ ପାଇଁ ସାକ୍ଷାତ୍ ଭଗବାନ୍ ଅଟନ୍ତି । ମୋର ଯେ କୌଣସି ସମସ୍ୟା ଆସିଲେ ବା ମନଦୁଃଖ ହେଲେ ମୁଁ ମୋର ଦେବତାତୁଲ୍ୟ ବାପାଙ୍କ ପାଖକୁ ଦୌଡ଼ିଯାଏ । ସବୁକଥା ତାଙ୍କୁ କହେ ଓ ତାଙ୍କ ପାଖରେ ବସି ମୋ ହୃଦୟର ଦୁଃଖ ଅଜାଡ଼ି ବସେ । ବାପା ମୋତେ ବୁଝାନ୍ତି । ସେ ଏପରି କଥା କହି ବୁଝାନ୍ତି ମୋର ସବୁ ସମସ୍ୟାର ସମାଧାନ ପାଇଯାଏ । ସତରେ ବାପା ! ତମେ ଚାଲିଗଲ ଆଉ କାହା ପାଖରେ କହିବି ମୋ ମୋ ମନକଥା ? ହଁ ହଁ ବାପା ! ନିଶ୍ଚୟ ତମକୁ ମୋ ମନକଥା କହିବି । ତମେ ସିନା ନାହଁ, ତମ ଫଟୋ ପାଖରେ ମୋ ଜୀବନର ଦୁଃଖ ସୁଖ କହିବି ବାପା ! ମୋ ସ୍ୱପ୍ନରେ ଆସି ମୋ ଦୁଃଖର ସମାଧାନ କରିବ । ଏତିକି ତୁମ ସାନଝିଅର ମିନତି – ରଖିବ ବାପା ! ଶେଷରେ ତୁମର ଅମର ଆତ୍ମାର ସଦ୍‌ଗତି ନିମନ୍ତେ ମୋର ବିନମ୍ର ପ୍ରାର୍ଥନା । ତୁମର ଆଶୀର୍ବାଦ ମୋର ପଥ ପ୍ରଦର୍ଶକ ହେଉ । ଏହାହିଁ ମୋର କାମନା ।

ରହୁଛି, ତୁମ ସାନଝିଅ (ଝୁନୁ) ।

# ଅଜା ଚାଲିଗଲେ

**ଶକୁନ୍ତଳା ପଟ୍ଟନାୟକ**

''ମଣିଷ ମରିବ ଦିନେ, ଜନ୍ମ ହେଲେ ଦେବତା ବି ମରେ
ସାର୍ଥକ ମରଣ ଯାର ଯାହାପାଇଁ ମାଟିଗୋଡ଼ି ଝୁରେ ।''

ବିଶିଷ୍ଟ ବୈଜ୍ଞାନିକ ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଜଣେ ଅସାଧାରଣ ବ୍ୟକ୍ତିତ୍ୱ । ସେ ଜଣେ ହୃଦୟବାନ୍, ନିଷ୍କପଟ ଓ ନିରାଡ଼ମ୍ବର ଜୀବନଯାପନ କରୁଥିବା ପ୍ରଜ୍ଞାପୁରୁଷ, ଜ୍ଞାନର ଗନ୍ତାଘର । ସେ ବହୁ ଅନୁଷ୍ଠାନର ପ୍ରତିଷ୍ଠାତା ଓ ଦିଗ୍‌ଦର୍ଶକ । ବହୁତ ବିଜ୍ଞାନ ବହି ରଚନା କରି ଛାତ୍ର, ଶିକ୍ଷକ, ଜନସାଧାରଣ ଓ ବିଜ୍ଞାନ ଜଗତରେ ସୁପରିଚିତ ହୋଇଥିଲେ ।

ସେହି ପ୍ରଜ୍ଞାପୁରୁଷ ଗତ ୧୦।୭।୨୦୧୩ ବୁଧବାର ଶ୍ରୀଗୁଣ୍ଡିଚା ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାରେ ରାତି ଘ୯।୨୦ ମିନିଟ୍‌ରେ ଶେଷ ନିଶ୍ୱାସ ତ୍ୟାଗ କଲେ । ଶ୍ରୀଜଗନ୍ନାଥ ରଥରେ ବିଜେ କରି ଗୁଣ୍ଡିଚା ମନ୍ଦିର ଗଲେ ତାଙ୍କ ଜନ୍ମସ୍ଥାନକୁ, ନବରାତ୍ର ରହଣିପରେ ଫେରିଆସିବେ ଶ୍ରୀମନ୍ଦିରକୁ, ହେଲେ ଅଜାଙ୍କ ରଥ ଅଣଲେଉଟା, ଆଉ ସେ ଫେରିବେ ନାହିଁ । ତଫାତ୍ ଏତିକି ଠାକୁର ଗଲେ ରଥରେ, ଅଜା ଗଲେ ଛଅ ଖଣ୍ଡ କାଠ ଲଗା କୋକେଇରେ, ଶ୍ମଶାନକୁ । ମହାପ୍ରଭୁଙ୍କର ମହାନ୍ ଯାତ୍ରା ସହିତ ସେ ମିଶିଗଲେ । କେତେ ଭାଗ୍ୟବାନ୍ ମଣିଷ ସିଏ !

ସେ ଥିଲେ ବହୁ ଅନୁଷ୍ଠାନର ପ୍ରାଣପ୍ରତିଷ୍ଠାତା । ୨୦୦୬ ମସିହାରେ 'ଉତ୍ସର୍ଗ' ନାମକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଠନ କରିଥିଲୁ । ଅଜା ଥିଲେ ସେ ଅନୁଷ୍ଠାନର ଉପଦେଷ୍ଟା । ବିଜ୍ଞାନ ପ୍ରଚାର ସମିତି ଗୃହରେ ପ୍ରଥମ ଅନୁଷ୍ଠାନଟି ଆରମ୍ଭ ହୋଇଥିଲା ଯାହା ମାଧ୍ୟମରେ ୧୦ଟି ଦୋଳି କୋରୁଆ ଅନାଥାଶ୍ରମକୁ ଦେଇଥିଲେ । ସେହି ମହାନ୍ ଆତ୍ମାଙ୍କଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନ ଆଜି ପ୍ରଗତି ପଥରେ ।

ଆଈଙ୍କ ଦେହାନ୍ତ ପରେ ଅଜା ନିଃସଙ୍ଗ ଜୀବନଯାପନ କରୁଥିଲେ । ସେଥିପାଇଁ ସବୁ ସମୟରେ ତାଙ୍କ ସାଙ୍ଗ, ସାଥି ଅଧ୍ୟାପକ ବନ୍ଧୁ, ଛାତ୍ର, ଡାକ୍ତରମାନେ ତାଙ୍କୁ ଦେଖା କରିବାକୁ ଆସନ୍ତି । ଡକ୍ଟର ମହାପାତ୍ର ମୋ ଶାଶୂଙ୍କ ମାମୁ, ମୋର ଅଜା, ମୁଁ ମଧ୍ୟ ମାସରେ ଥରେ ତାଙ୍କୁ ଦେଖା କରିବାକୁ ଯାଏ । ମୁଁ ଗଲେ ଅଜା ବହୁତ ଖୁସିହୁଅନ୍ତି । ବସ, ବୋଲି କହି ନବୀନକୁ ଡାକନ୍ତି । ନବୀନ ଚା' କପେ ଆଣ ସାରିଆପାଇଁ, ମନା କଲେ, ଅଧକପ ପିଇବାପାଇଁ ବାଧ୍ୟ କରନ୍ତି । ମୋ ବସିବା ସମୟ ମଧ୍ୟରେ ସେ ତାଙ୍କ ପିଲାଦିନ କାହାଣୀ, ପାଠପଢ଼ା ଜୀବନ କାହାଣୀ, ଆଈ ଓ ପିଲାମାନଙ୍କୁ ନେଇ ଆମେରିକା ରହଣିର ଅନୁଭୂତି ସମସ୍ତ କଥା ବର୍ଣ୍ଣନା କରନ୍ତି । ତାଙ୍କ ବାପା, ବୋଉଙ୍କ କଥା କହି ବହୁତ ମନଦୁଃଖ କରନ୍ତି । ଆଈଙ୍କର ବାହାଘରଠାରୁ ଆରମ୍ଭ କରି ରୋଷେଇ ପର୍ଯ୍ୟନ୍ତ ସବୁକଥା କହି ବହୁତ ବ୍ୟସ୍ତ ହୁଅନ୍ତି ।

ତା'ପରେ ଆରମ୍ଭ କରନ୍ତି, ବଡ଼ପୁଅ ବମ୍ବେରୁ ସପୁରି ଆଣିଥିଲା, ଚା' ସାଙ୍ଗରେ ଖାଇବାପାଇଁ ଶୁଖିଲା ଜଳଖିଆ ଆଣିଥିଲା । କଟକରେ ଏ ଜିନିଷ ମିଳେନି । ଟିକେ ଚାଖ ।'' ବଡ଼ପୁଅ ମାଂସ, ପୋହଳା ମାଛଆଣି କିପରି ତରକାରି ବନାଇଥିଲା ତାହା କେତେ ସ୍ୱାଦ ହୋଇଥିଲା । ବହୁଁ ମୋର ବହୁତ ସେବା କରେ ଇତ୍ୟାଦି । ନବୀନ ମଧ୍ୟ ସେବା କରେ, ପିଲାଲୋକ ମୋ ପାଇଁ ବନ୍ଧା ହୋଇରହିଛି । ଏହିପରି ସବୁକଥା ମନଖୋଲି କହିପକାନ୍ତି ସତେ ଯେପରି ମନ ହାଲକା ହୋଇଯାଏ । ତାଙ୍କର ସମସ୍ତ କଥା ମୁଁ ମନୋଯୋଗ ସହକାରେ ଶୁଣେ । ପୁଅ ମୋତେ ଆଣିବାକୁ ଗଲେ ତାକୁ ବହୁତ ଆଶୀର୍ବାଦ କରନ୍ତି । ମୁଁ ଆସିବାପାଇଁ ବାହାରିଲେ, ଅଜା କହନ୍ତି ମଝିରେ ମଝିରେ ଆସୁଥିବ, ଏକୁଟିଆ ରହିବାକୁ ବହୁତ ଭୟ ଲାଗୁଛି । ପୁଅ ବୋହୂଙ୍କ ପାଖକୁ ଚାଲିଯିବି । ଆଉ କେତେ ମାସ ପରେ, ଅହମଦାବାଦ ସାନପୁଅ ପାଖକୁ ଚାଲିଯିବି । ସାନବୋହୂଟି ଚାକିରି କରିନି, ଘରେ ଅଛି, ସେଠାରେ ରହିବି । ଶେଷରେ କହନ୍ତି ଭଗବାନ୍ ତୁମର ମଙ୍ଗଳ କରୁ । ଧନ୍ୟବାଦ୍ ।

ତାଙ୍କର କେତେ ପଦ କଥା ମନେପଡ଼ିଯାଉଛି । ମୋତେ ଯେତେବେଳେ ସମୟ ମିଳେ ଧାଇଁଯାଏ ଦୋଳମୁଣ୍ଡାଇସ୍ଥିତ ଅଜାଙ୍କର ଆମ୍ରପଲ୍ଲୀ ବାସଭବନକୁ । ସେ ସିଦ୍ଧ ସାଧକ ଆଉ ନାହାନ୍ତି । ସେ ଚିର ନିଦ୍ରାରେ ନିଦ୍ରିତ । ଆମ୍ରପଲ୍ଲୀ ଆଜି ନୀରବ ନିଶ୍ଚଳ । ତାଙ୍କ ଅମର ଆତ୍ମାର ସଦ୍‌ଗତି ହେଉ ଏହାହିଁ ଭଗବାନ୍‌ଙ୍କ ପାଖରେ ପ୍ରାର୍ଥନା ।

ରାଜାବଗିଚା, କଟକ

# ସ୍ୱର୍ଗତ ଡଃ ଗୋକୁଳାନନ୍ଦ ମହାପାତ୍ର

**ଶ୍ରୀଚନ୍ଦ୍ର ପରିଜା**

ଧରାସ୍ପର୍ଶ – ୨୪।୫।୧୯୨୨ ସ୍ୱର୍ଗବାସ – ୧୦।୭।୨୦୧୩

ହେ, ବନ୍ଧୁ ବିଦାୟ ।।

ଯାତ୍ରା ଶେଷ ହେଲା ବିଜ୍ଞାନରଥୀର ଆକୁଳ ଓଡ଼ିଶାଭୂଇଁ
ଗୋକୁଳାନନ୍ଦ ହେ ! ଶୋଇପଡ଼ିଲ କି ଗବେଷଣା ସରି ନାହିଁ ।

ଅନ୍ଧବିଶ୍ୱାସର ଅଜ୍ଞାନବୋଧର, କବନ୍ଧ ମାରୁଚି ହାଇ
ତୁମ ଭଳି ଦୀପ୍ତ ବିଜ୍ଞାନବର୍ତ୍ତିକା ଲିଭିଗଲା କାହିଁପାଇଁ ?

ଏବେ ସମାଜରେ ଶିକ୍ଷା ବ୍ୟବସାୟ, ଗବେଷଣା ବାଡ଼ି ବୁଲା
ଉତ୍ତର ପିଢ଼ିଙ୍କୁ କି ଜ୍ୟୋତି ମିଳିବ ବିଜ୍ଞାନ ଶିକ୍ଷାରୁ ଭଲା ।

ତୁମ ଭଳି ଜଣେ ଜ୍ଞାନ ତପସ୍ୱୀର ଅଗଣନ ଶିଷ୍ୟାଶିଷ୍ୟ
ଆଦର୍ଶବୋଧର ଗୁରୁପୂଜକର ତୁମେ ତ ଚିର ନମସ୍ୟ ।

ପ୍ରତିଭା ରଙ୍କୁଣି ଉତ୍କଳମାତାର ତୁମେ ସାରସ୍ୱତ ଜ୍ୟୋତି
ଲୋକପ୍ରିୟ ତୁମ ବିଜ୍ଞାନଲେଖାର ଦିଗନ୍ତବିସ୍ତାରୀ କୀର୍ତ୍ତି ।

ଉଡ଼ନ୍ତା ଥାଳିଆ, ଡାଇନୋସେର୍ ଭଳି ବୈଜ୍ଞାନିକ ଗ୍ରନ୍ଥମାଳା
ଚନ୍ଦ୍ରପୃଷ୍ଠରେ ମାନବର ପାଦ ତୁମ ଲେଖନୀର କଳା ।।

ତୁମ ବଂଶଧର ବିଜ୍ଞାନୀ ହେବାର ସପନ ସଫଳ ହେବ
ଶ୍ରୀଜଗନ୍ନାଥଙ୍କ ପାଦରେ ଦୟିନୀ ତୁମେ କୈବଲ୍ୟ ଲଭ ।।

ସମୁଦୀ
ତୁଳସୀ ନିବାସ, ଦଣ୍ଡାସାହି, ତେନ୍ତୁଳିପଦା

---

# ସମୁଦୀ (ଡଃ ଗୋକୁଳାନନ୍ଦ ମହାପାତ୍ରଙ୍କ) ସ୍ମରଣେ

**ଅଞ୍ଜଳୀ ପରିଜା**

ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ, କିନ୍ତୁ ସଂସାରରେ ଯେଉଁମାନେ ଭଲ କାମ କରିଯାଇଥାନ୍ତି, ସେମାନେ ସବୁଦିନ ଅମର ହୋଇ ରହନ୍ତି । ଆମ ସମୁଦୀ ଥିଲେ ସେହିପରି । ତାଙ୍କ ନାମ ସବୁଦିନ ସେହିପରି ଉଜ୍ଜ୍ୱଳ ହୋଇ ରହିଥିବ । ସରଳ, ଶାନ୍ତଶିଷ୍ଟ ସ୍ୱଭାବର, କମ୍ କଥା କୁହନ୍ତି । ସବୁବେଳେ ଲେଖା ଲେଖି ଓ ପଢ଼ାପଢ଼ିରେ ବ୍ୟସ୍ତ ଥାନ୍ତି । ସେ ଆଜି ନାହାନ୍ତି, ପବିତ୍ର ଗୁଣ୍ଡିଚା ଦିନ ରାତି ୯.୨୦ ମିନିଟ୍‌ରେ ସେ ସ୍ୱର୍ଗାରୋହଣ କରିଛନ୍ତି । ତାଙ୍କ ଆତ୍ମା ନିଶ୍ଚୟ ପ୍ରଭୁଙ୍କ ପାଦରେ ଲୀନ ହୋଇଥିବ । ସମୁଦୁଣୀ ଗଲା ପରଠାରୁ ସେ କିଛିଟା ଭାଙ୍ଗି ପଡ଼ିଥିଲେ । ସମୁଦୁଣୀଙ୍କ ହାତ ରୋଷେଇ ତାଙ୍କର ପ୍ରିୟ ଥିଲା । ଏତେ ବଡ଼ ବୈଜ୍ଞାନିକ ହୋଇ ମଧ ମନରେ ତାଙ୍କର ଗର୍ବ ନ ଥିଲା । ତାଙ୍କ ପାଇଁ ବରଂ ଆମେମାନେ ଗର୍ବ ଅନୁଭବ କରୁ । ତାଙ୍କ ଦୁଇ ଜଣଙ୍କ ବିନା ଆଜି ଦୋଳମୁଣ୍ଡାଇ ଘର ଶୂନ୍ୟ ଶୂନ୍ୟ ଲାଗୁଛି । ମୁଁ ତାଙ୍କୁ ଝିଅ ଦେଇଥିଲେ ବି ଝିଅ ଶାଶୂ ଘରେ ଅଛି ବୋଲି କେବେ ଅନୁଭବ କରିନି । ବୟସାଧିକ୍ୟ ହେତୁ ତାଙ୍କୁ ଶେଷଜୀବନଟା ବମ୍ବେ ଏବଂ ଅହମ୍ମଦାବାଦ୍‌ରେ କଟାଇବାକୁ ପଡ଼ିଥିଲା । କିନ୍ତୁ ତାଙ୍କର ମନ ପଡ଼ି ରହିଥିଲା ଦୋଳମୁଣ୍ଡାଇଠାରେ, ସେଇ ସମୁଦୁଣୀ ଥିବା ସାତ ବର୍ଷ ତଳର ଘରସଂସାର ଉପରେ । ସେଥିପାଇଁ ସେ ଆଜି ଟୁନୁ, ରୁନୁ, ଝୁନୁ, ବଙ୍କୁ, ବାବୁଲି ସମସ୍ତଙ୍କୁ ଭୁଲି ଚାଲିଯାଇଛନ୍ତି ସମୁଦୁଣୀଙ୍କ ଡାକରେ ।

ସମୁଦୁଣୀ

# ଅନନ୍ୟ ବ୍ୟକ୍ତିତ୍ୱ–ସ୍ୱର୍ଗତ ଡଃ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର

**ବାସୁଦେବ ବେହେରା**

ଜୀବନରେ କର୍ମ ମଣିଷକୁ ପୁଣ୍ୟବାନ୍ କରେ । ପୁଣ୍ୟ ଅର୍ଜନ କଲେ ମଣିଷ କୀର୍ତ୍ତିବାନ୍ ହୁଅନ୍ତି । କୀର୍ତ୍ତିବାନ୍ ମଣିଷ ସବୁବେଳେ ସବୁ ସମୟରେ ପୂଜା ପାଆନ୍ତି । ଏମିତି ସୁଗୁଣସମ୍ପନ୍ନ ମଣିଷ ଥିଲେ ସ୍ୱର୍ଗତ ଡଃ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର । ତାଙ୍କର ବ୍ୟକ୍ତିତ୍ୱ ବିସ୍ତୃତ ଏକ ମହନୀୟ ମାନବିକତା । ସେ ମାନବିକତା ଯେତେବେଳେ କର୍ତ୍ତବ୍ୟରେ ପରିଣତ ହୋଇଯାଏ, ସେତେବେଳେ ବ୍ୟକ୍ତି ସାମୂହିକ କାର୍ଯ୍ୟପାଇଁ କର୍ମ ତପସ୍ୟା କରନ୍ତି । ସେହି ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱ ସମଗ୍ର ମାନବ ସମାଜପାଇଁ ଉତ୍ସର୍ଗ ହୋଇଯାଏ । ୰ ଡଃ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଦେଶପାଇଁ, ଛାତ୍ରସମାଜପାଇଁ ବିଜ୍ଞାନଲେଖା ସଂକଳନରେ ଜୀବନକୁ ଉତ୍ସର୍ଗ କରିଯାଇଛନ୍ତି ।

ଦୋଳମୁଣ୍ଡାଇ ଛକରେ ବାରମ୍ବାର ଦେଖୁଥିଲେ ମଧ୍ୟ ତାଙ୍କ ପରିଚୟ ଜାଣିଥିଲେ ସୁଦ୍ଧା, ବାବା ସାଗର ଦାସ ବିଦ୍ୟାପୀଠର ଉନ୍ନତି ପାଇଁ ଡକାଯାଇଥିବା ହରିପୁର ଦୋଳମୁଣ୍ଡାଇ ଅଞ୍ଚଳର ବୁଦ୍ଧିଜୀବୀ, ଶିକ୍ଷାବିତ୍, ମୁରବୀ, ପୂଜା କମିଟିର କର୍ମକର୍ତ୍ତା, ସଭ୍ୟମାନଙ୍କ ସଭାରେ ମୋର ସାର୍‌ଙ୍କ ସହିତ ପ୍ରଥମ ଦେଖା । ସେହି ଦେଖାରେ ସେ ଅତି ଆପଣାର ମନେ ହେଲେ । ତାଙ୍କର ମଧୁର ଆଳାପ ମୋତେ ବେଶ୍ ଆପ୍ୟାୟିତ କରିଥିଲା । ଜୀବନରେ ଉଚ୍ଚ ଆଶା ରଖି ଆଗକୁ ଯିବାପାଇଁ କର୍ତ୍ତବ୍ୟ କରିବାକୁ ଆହ୍ୱାନ ଦେଇଥିଲେ । ସେ ଦିନର ସାକ୍ଷାତ୍‌କାର ଭିତରେ ମୁଁ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ପାଇଥିଲି । ମୁଁ ବୁଝିପାରିଥିଲି ଯେ, ସାଦାସିଧା ଦିଶୁଥିବା ବ୍ୟକ୍ତିଜଣକ ମହାନ୍ ପ୍ରତିଭାରେ ପରିପୂର୍ଣ୍ଣ । ଜଣେ ଛାତ୍ରବତ୍ସଳ ବିଜ୍ଞାନ ପ୍ରଫେସର, ବିଜ୍ଞାନକୁ ସରଳ ଭାଷାରେ ଲେଖିବା ତାଙ୍କର ମୁଖ୍ୟ ଆଧାର । ଏବଂ ସେ ଜଣେ ସମାଜସେବୀ । ସମାଜରେ ଶିକ୍ଷା ଓ ଅବହେଳିତ ଛାତ୍ର ଛାତ୍ରୀଙ୍କପାଇଁ ତାଙ୍କ ଅନ୍ତରର ଉଲ୍ଲାସ ବେଶ୍ ଆବେଗପୂର୍ଣ୍ଣ ।

ସେଦିନ ବାବାସାଗର ଦାସ ବିଦ୍ୟାପୀଠ ପରିସର ମଧ୍ୟରେ ଏ ଅଞ୍ଚଳ ଶିକ୍ଷାର ଉନ୍ନତିପାଇଁ ଏକ ହାଇସ୍କୁଲ ପ୍ରତିଷ୍ଠାରେ ତାଙ୍କର ପୂର୍ଣ୍ଣ ସମର୍ଥନ ଓ ସହଯୋଗ ରହିବ ବୋଲି ପ୍ରତିଶ୍ରୁତି ଦେଇଥିଲେ । ୨୦୦୩ ମସିହାରେ ହାଇସ୍କୁଲ ଆରମ୍ଭ କରାଗଲା । ବାବାସାଗର ଦାସ ଉଚ୍ଚ ବିଦ୍ୟାପୀଠ ପରିଚାଳନା କମିଟିର ସଭାପତି ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ଆଜି ପର୍ଯ୍ୟନ୍ତ ମଧ୍ୟ ସଭାପତି ରହିଥିଲେ । ବାବାସାଗର ଦାସ ଉଚ୍ଚ ବିଦ୍ୟାପୀଠ ଓ ଛାତ୍ର–ଛାତ୍ରୀଙ୍କ ସୁବିଧା ନିମନ୍ତେ ନିଜ ଉଦ୍ୟମ ଓ ନିଜ ଖର୍ଚ୍ଚରେ ବିଦ୍ୟାପୀଠ ପରିସରରେ ନିଜ ପିତାଙ୍କ ସ୍ମୃତି ଉଦ୍ଦେଶ୍ୟରେ 'ବିଜୟ ଗୋବିନ୍ଦ ଭବନ' ଏକ ସଭାଗୃହ ତିଆରି କରି ବାବାସାଗର ଦାସ ଉଚ୍ଚ ବିଦ୍ୟାପୀଠକୁ ଅର୍ପଣ କରିଥିଲେ । ବିଦ୍ୟାପୀଠର ବିକାଶପାଇଁ ତାଙ୍କର ଅବଦାନ ସ୍ମରଣଯୋଗ୍ୟ । ସେ କେବଳ ଆମ ପାଇଁ ଗର୍ବର ବିଷୟ ନ ଥିଲେ । ସେ ସମଗ୍ର ରାଜ୍ୟ ଓ ଦେଶପାଇଁ ଗର୍ବ ଓ ଗୌରବ ଥିଲେ ।

ଆଜି ଏପରି ଏକ ମହାନ୍ ଶିକ୍ଷାବିତ୍‌ଙ୍କ ବିୟୋଗରେ ଏ ଅଞ୍ଚଳରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା, ଆମର ଯେଉଁ ଅପୂରଣୀୟ କ୍ଷତି ଘଟିଲା ତାହା ଯେ କେବେ ପରିପୂର୍ଣ୍ଣ ହେବ ତାହା ମୁଁ ବିଶ୍ୱାସ କରିପାରୁ ନାହିଁ । ଆଜି ଆମ ବିଦ୍ୟାପୀଠ ମୁରବୀଶୂନ୍ୟ ହୋଇପଡ଼ିଛି । ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା ନିମନ୍ତେ ଆମର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

ସଂପାଦକ
ବାବାସାଗର ଦାସ ବିଦ୍ୟାପୀଠ, ପରିଚାଳନା କମିଟି,
ଦୋଳମୁଣ୍ଡାଇ

# ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କ ବିୟୋଗରେ ଏକ ଆଲେଖ୍ୟ

ଶ୍ରୀ ପୂର୍ଣ୍ଣେନ୍ଦୁନାଥ ଦାସ

ଜନ୍ମ ଓ ମୃତ୍ୟୁ ଏକ ଚିରନ୍ତନ ଘଟଣା । ଏହା ସୃଷ୍ଟିର ନିୟମ । ଜନ୍ମ ହେଲେ ମୃତ୍ୟୁ ସୁନିଶ୍ଚିତ । ଏହି ଜୀବନ ଓ ମୃତ୍ୟୁର ସମୟ ବ୍ୟବଧାନକୁ ଜୀବନ କାଳ ବୋଲି କୁହାଯାଏ । ଏହି ଜୀବନ କାଳ ମଧ୍ୟରେ ଯେଉଁମାନେ ନିର୍ଲୋଭ ଭାବରେ ଅର୍ଥାତ୍ କୌଣସି ପଦପଦବୀ ଓ ଲାଭ-କ୍ଷତି, ଯଶ ଇତ୍ୟାଦି ଆଶା ନ ରଖି ସମାଜର ବିଭିନ୍ନ କ୍ଷେତ୍ରରେ ଓ ସ୍ତରରେ କିଛି ନା କିଛି ଉପକାରୀ କାର୍ଯ୍ୟ କରିଥାଆନ୍ତି ତାଙ୍କୁ ମହାମାନବ ବା ମହାତ୍ମା ଆଖ୍ୟା ଦିଆଯାଏ ।

ଏହିପରି ପରୋପକାରୀ, ଶାନ୍ତଚରିତ୍ର ଓ ଜ୍ଞାନୀ ପୁରୁଷ ଥିଲେ ଡକ୍ଟର ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ଯେକି ପରିଣତ ବୟସରେ ତା୧୦।୭।୨୦୧୩ ଦିନ ସ୍ୱର୍ଗାରୋହଣ କଲେ । ତାଙ୍କ ମରଶରୀର ୧୧।୭।୨୦୧୩ ଅପରାହ୍ଣରେ ତାଙ୍କ ଦୋଳମୁଣ୍ଡାଇ ବାସଭବନ ଆମ୍ରପଲ୍ଲୀରେ ସୁଦୂର ଅହମଦାବାଦରୁ ଆସି ପହଞ୍ଚିଲା । ତାଙ୍କ ଶେଷ ଦର୍ଶନ ଓ ଶ୍ରଦ୍ଧାଞ୍ଜଳି ଦେବାପାଇଁ ଶହ ଶହ ଲୋକ ଆସି ପହଞ୍ଚିଥିଲେ ।

ସେ ରସାୟନ ବିଜ୍ଞାନର ପ୍ରଫେସର ଥିଲେ । ରସାୟନ ବିଜ୍ଞାନରେ ତାଙ୍କର ପ୍ରଗାଢ଼ ଜ୍ଞାନ ଥିଲା ଓ ସେ ଜଣେ ଉଚ୍ଚକୋଟିର ଛାତ୍ରବତ୍ସଳ ଶିକ୍ଷକ ଥିଲେ । (ଅଧୀନ ତାଙ୍କର ଜଣେ ଛାତ୍ର ଥିଲା) । ସେ ରସାୟନବତ୍ ହେଲେ ମଧ୍ୟ ଅନ୍ୟ ବିଜ୍ଞାନ ସମ୍ବନ୍ଧରେ ତାଙ୍କର ଅତୁଳନୀୟ ଜ୍ଞାନ ଥିଲା । ସେ ଅନୁଭବ କରୁଥିଲେ ବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ଅଭିବୃଦ୍ଧି ଓ ବୈଜ୍ଞାନିକ ଚିନ୍ତାଧାରା ସୀମିତ କେତେକ ଲୋକ ପାଖରେ ନ ରହି ସର୍ବସାଧାରଣଙ୍କ ପାଖରେ ପହଞ୍ଚିବା ଉଚିତ । ତାହାଦ୍ୱାରା ସମାଜରୁ ଅନ୍ଧବିଶ୍ୱାସ ଲୋପ ପାଇବ ଓ ବିଜ୍ଞାନଲବ୍‌ଧ ଜ୍ଞାନର ଉପଯୁକ୍ତ ପ୍ରୟୋଗଦ୍ୱାରା ଲୋକମାନଙ୍କ ଅଶେଷ ଉପକାର ହେବ । ତେଣୁ ସେ ଆରମ୍ଭ କଲେ 'ବିଜ୍ଞାନ ପ୍ରଚାର ସମିତି' ଯାହା ସାହାଯ୍ୟରେ ବିଭିନ୍ନ ସଭାସମିତି କରି ବିଜ୍ଞାନର ବିଭିନ୍ନ ଧାରାକୁ ଲୋକମାନଙ୍କ ସମ୍ମୁଖରେ ଉପସ୍ଥାପନ କରୁଥିଲେ । ବିଜ୍ଞାନ ପ୍ରଚାର ସମିତିର ସ୍ଥାୟୀ ଘର ନ ଥିଲା । ସେଥିପାଇଁ ସେ ତାଙ୍କ ନିଜ ବାସଭବନର ଏକ ବିଶେଷ ଅଂଶ 'ବିଜ୍ଞାନ ପ୍ରଚାର ସମିତି'କୁ ଦାନ କରିଦେଇଛନ୍ତି । ଯେଉଁଠି ବିଜ୍ଞାନ ପ୍ରଚାର ସମିତିର ମିଟିଂଗୁଡ଼ିକ ଅନୁଷ୍ଠିତ ହୁଏ ।

ବିଜ୍ଞାନର ଚିନ୍ତାଧାରା ଓ ବିଜ୍ଞାନ ବିଷୟରେ ଲୋକମାନେ କିପରି ଉଦ୍‌ବୁଦ୍ଧ ହେବେ ସେଥିପାଇଁ ସେ ଅନେକ ଗୁଡ଼ିଏ ବିଜ୍ଞାନଭିତ୍ତିକ ପୁସ୍ତକ ରଚନା କରିଛନ୍ତି, ସେଗୁଡ଼ିକ ମଧ୍ୟ ବେଶ ଲୋକପ୍ରିୟ ହୋଇଛି । ସାହିତ୍ୟ କ୍ଷେତ୍ରରେ ବିଜ୍ଞାନର ଲେଖାର ଅବଦାନ ଯେ କମ୍ ନୁହେଁ ତାହା ସେ ବହୁତ ପ୍ରବନ୍ଧ ଓ ପୁସ୍ତକ ଲେଖି ସାବ୍ୟସ୍ତ କରିଦେଇଥିଲେ । ତେଣୁ ତାଙ୍କୁ ଓଡ଼ିଆ ବିଜ୍ଞାନ ସାହିତ୍ୟର ସ୍ରଷ୍ଟା ବୋଲି ମଧ୍ୟ କୁହାଯାଏ । ସଂକ୍ଷେପରେ ତାଙ୍କୁ ଓଡ଼ିଶାର ବିଜ୍ଞାନ ପ୍ରସାର ଓ ପ୍ରଚାରର ପୁରୋଧା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତାଙ୍କ କଟକ ଘର ଓ ମୋର କଟକ ଘର ଗୋଟିଏ ଅଞ୍ଚଳରେ ଥିବାରୁ ପୁନଶ୍ଚ ସେ ମୋର ପ୍ରିୟ ଗୁରୁ ଓ ମୁଁ ତାଙ୍କର ଛାତ୍ର ଥିବାରୁ ତାଙ୍କର ମୋର ସମ୍ବନ୍ଧ ବହୁ ନିବିଡ଼ ଥିଲା । ପ୍ରାୟ ତାଙ୍କର ମୋର ସପ୍ତାହରେ ଥରେ ଦୁଇ ଥର ଦେଖାହୁଏ । ବିଭିନ୍ନ ବିଷୟରେ ଏହି ଅଞ୍ଚଳର ଉନ୍ନତିପାଇଁ କଥାବାର୍ତ୍ତା ହେଉ । ଆମ ଏହି ଅଞ୍ଚଳର ନାମ ହେଲା

ଦୋଳମୁଣ୍ଡାଇ-ହରିପୁର ଅଞ୍ଚଳ, ଏହି ଅଞ୍ଚଳଟି କଟକ ସହରର ଏକ ପ୍ରମୁଖ ଅଞ୍ଚଳ । ତଥାପି ଏହି ଅଞ୍ଚଳରେ ଗୋଟିଏ ହାଇସ୍କୁଲ ନ ଥିଲା । ଏଠାକାର ପିଲାମାନେ ବିଭିନ୍ନ ଜାଗାକୁ ପଢ଼ିବାକୁ ଯାଉଥିଲେ ଓ ବଡ଼ ଅସୁବିଧା ଭୋଗ କରୁଥିଲେ ମଧ୍ୟ (ସାଧାରଣତଃ ବାଳିକା ପିଲାମାନେ) । ଆମେ କେତେ ଜଣ ହାଇସ୍କୁଲଟିଏ ସ୍ଥାପନ କରିବାକୁ ମନସ୍ଥ କରି ତାଙ୍କ ପାଖରେ ପହଞ୍ଚିଲୁ ଓ ସେ ସ୍କୁଲର ସଭାପତି ହୁଅନ୍ତୁ ବୋଲି ଅନୁରୋଧ କଲୁ । ବୟସାଧିକ୍ୟ ହେଲେ ମଧ୍ୟ ସେ ବିନାଦ୍ୱିଧାରେ ତାହା ଗ୍ରହଣ କଲେ । ତାଙ୍କର ପ୍ରେରଣା ଓ ଉପଯୁକ୍ତ ଉପଦେଶ ଯୋଗୁଁ ଆଜି ଏହି ସ୍କୁଲଟି ଏକ ପୂର୍ଣ୍ଣାଙ୍ଗ ବିଶିଷ୍ଟ ସ୍କୁଲରେ ପରିଣତ ହୋଇଛି । ମୃତ୍ୟୁ ପର୍ଯ୍ୟନ୍ତ ସେ ସ୍କୁଲର ସଭାପତି ପଦ ଅଳଙ୍କୃତ କରିଥିଲେ ।

ତାଙ୍କର ବିଶେଷ ଉଲ୍ଲେଖନୀୟ ଅବଦାନ ହେଲା – 'ଦୋଳମୁଣ୍ଡାଇ-ହରିପୁର ସାଂସ୍କୃତିକ ଅନୁଷ୍ଠାନ' । ଦୋଳମୁଣ୍ଡାଇ-ହରିପୁର ଅଞ୍ଚଳ ସହରର ଏକ ପ୍ରମୁଖ ଅଞ୍ଚଳ ହେଲେ ମଧ୍ୟ ଏଠାରେ ସଭାସମିତି ବା ସାଂସ୍କୃତିକ କାର୍ଯ୍ୟକ୍ରମ କରିବାପାଇଁ କୌଣସି ସ୍ଥାୟୀ ଗୃହ ନ ଥିଲା । ସେ ପ୍ରଚୁର ଅର୍ଥ ଖର୍ଚ୍ଚ କରି ତାଙ୍କ ବାପାଙ୍କ ନାମରେ ଏକ ବିରାଟ ଭବନ କରିଛନ୍ତି । ତାହା ଆଧୁନିକ ନିର୍ମାଣ କୌଶଳରେ ନିର୍ମିତ । ତା'ର ନାମ ରଖାଯାଇଛି 'ବିଜୟ ଗୋବିନ୍ଦ ଭବନ' । ନିଃସନ୍ଦେହରେ କୁହାଯାଇପାରେ ଏହିପରି ଭବନ ମିଲେନିୟମ ସହର କଟକର କୌଣସି ସ୍ଥାନରେ ନାହିଁ ।

ତାଙ୍କ ଭଳି ପ୍ରସିଦ୍ଧ ବୈଜ୍ଞାନିକ, ବିଜ୍ଞାନଲେଖକ, ଓଡ଼ିଆ ବିଜ୍ଞାନ ସାହିତ୍ୟର ସ୍ରଷ୍ଟା ଓ ବିରାଟ ବ୍ୟକ୍ତିତ୍ୱପାଇଁ ମୁଁ ଯେଉଁ ଦି'ପଦ ଲେଖିଲି ତାହା ସମୁଦ୍ରର ଶଙ୍ଖେ ପାଣି ଭଳି । ତାଙ୍କର ବିଭିନ୍ନ କୃତାବଳୀ ବିଶେଷ ସମ୍ମାନର ଅଧିକାରୀ ଓ ତାଙ୍କର ବିଭିନ୍ନ କ୍ଷେତ୍ରରେ ଅବଦାନ ବିଷୟରେ ଲେଖିଲେ ଏହା ଅତୁଳନୀୟ ଗୋଟିଏ ବିରାଟ ଗ୍ରନ୍ଥ ହୋଇଯିବ ।

ସର୍ବଶେଷରେ ମୁଁ ଭଗବାନ୍‌ଙ୍କ ପାଖରେ ନିବେଦନ ଓ ପ୍ରାର୍ଥନା କରୁଛି ଯେ ତାଙ୍କର ଅମର ଆତ୍ମାର ସଦ୍‌ଗତି ହେଉ ।

ଅବସରପ୍ରାପ୍ତ ପ୍ରାଧ୍ୟାପକ,
ମହତାବରୋଡ୍, ନିଉକଲୋନି, କଟକ –୧

# ବାବୁଙ୍କୁ ମୁଁ ଯେତିକି ଜାଣେ

**ନବୀନ ପ୍ରଧାନ**

ମୁଁ ନବୀନା । ମୁଁ ବାପାଙ୍କ ପାଖରେ ୨୦୦୭ ମସିହାରୁ ରହିଲିଣି । ମୁଁ ବାବୁଙ୍କୁ ମୋ ନିଜ ବାପା ପରି ଦେଖେ । ବାପାଙ୍କ ସହିତ T.V. ଦେଖେ, ତାଙ୍କ AC ରୁମ୍‌ରେ ଶୁଏ । ଅଜା ନାତି ପରି ତାଙ୍କ ସହିତ ଥଟ୍ଟା ମଜା କରେ । ତାଙ୍କ ସାଙ୍ଗରେ ବଡ଼ ବଡ଼ ସଭାସମିତିକୁ ଯାଏ । ତାଙ୍କରି ସାଙ୍ଗରେ ଉଡ଼ାଜାହାଜରେ ବସି ଭାଇମାନଙ୍କ ଘରକୁ ଯାଏ । ମାସ ମାସ ଧରି ସେଠାରେ ରହେ । ସିଏ ଯେଉଁଆଡ଼େ ଯାଆନ୍ତି ଛଅ ବର୍ଷ କାଳ ତାଙ୍କ ସାଙ୍ଗରେ ଛାଇପରି ରହିଥିଲି । ବାପା ବହୁତ ଭଲ । ଏତେ ଶାନ୍ତ, ଏତେ ଦୟାଳୁ, ଏତେ ସ୍ନେହୀ, ଏତେ ପରୋପକାରୀ ମୋ ଜୀବନରେ ପ୍ରଥମଥର ଦେଖିଲି । ବାପା ମୋତେ ନିଜ ପୁଅ ପରି ଦେଖନ୍ତି । ବାପା ମୋତେ ଡ୍ରାଇଭିଂ ଶିଖାଇଲେ । ଆଜି ମୁଁ ତାଙ୍କରି ଯୋଗୁଁ ଡ୍ରାଇଭର ହୋଇପାରିଲି । ସବୁବେଳେ ମୋ ଭବିଷ୍ୟତପାଇଁ ସେ ଚିନ୍ତା କରୁଥିଲେ । ମୁଁ ଜମା ପାଠପଢ଼ି ନାହିଁ । କିନ୍ତୁ ଭାଇଙ୍କ ନିର୍ଦ୍ଦେଶ ଅନୁସାରେ ବାପାଙ୍କୁ ଠିକ୍ ସମୟରେ ଠିକ୍ ଔଷଧ ଦେଇପାରେ । ଚବିଶଘଣ୍ଟା ତାଙ୍କ ସହିତ ମୁଁ ରହେ । କିନ୍ତୁ ଶେଷ ସମୟରେ ତାଙ୍କ ହାତଭାଙ୍ଗିବା ପରଠାରୁ ତାଙ୍କ ସହିତ ଏକାକୀ ରହିବାକୁ ସାହସ କଲି ନାହିଁ । ତେଣୁ ବଡ଼ଭାଇଙ୍କୁ କହିଲି, "ଆଉ ଏକା ମୁଁ ବାପାଙ୍କ ପାଖରେ ରହିବିନି । ମୁଁ ମନାକଲାରୁ ସେ ଆଜି ପୁଅମାନଙ୍କପାଖକୁ ଗଲେ । ସେଠାରେ ସେ ପଡ଼ିଗଲେ ଓ କୋମାରେ ରହିଲେ । ସେଥିପାଇଁ ମୁଁ ନିଜକୁ ଦୋଷୀ ବୋଲି ଭାବୁଛି । ବାପାଙ୍କର ମୃତ୍ୟୁ ମୋତେ ବହୁତ ଦୁଃଖ ଦେଉଛି । ଶେଷରେ ଭଗବାନ୍‌ଙ୍କୁ ଡାକୁଛି ବାପାଙ୍କର ଅମର ଆତ୍ମା ସଦ୍‌ଗତି ଲାଭ କରୁ; ଏହାହିଁ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ମୋର ଭକ୍ତିପୂତ ପ୍ରାର୍ଥନା ।

## *JEJE*

**Lipsa Mahapatra**

My earliest memory of Jeje was tied to the summer vacations I would spend in Cuttack. He had always been a quiet and reticent individual, a polar opposite of Jejema who more than made up for his reserved nature. I will always remember her talking non stop and him not saying a word in response, just sitting there and taking it all in. During her monologues, you could see him sometimes staring at the TV or most of the time writing articles.Right before my sister and I would arrive, Jeje would make sure to stock up the house with a l our favorite things to eat. He would do the daily grocery shopping and run all kinds of errands all to ensure that his grandkids had the best vacation. He wasn't the most expressive person around but his happiness of having his grandkids visit him was evident in these actions.

I will always keep close the time that I spent with him during December of 2006 when I came down from the US on my Masters program's winter break. It was right after Jejema passed away and I decided to spend majority of my vacation with him in Cuttack. He and I conversed on topics mostly limited to academia since that was his passion but we had a great time together. I got a chance to attend his Bigyan Prachar Samiti meetings and also attended a meeting at Ravenshaw college where I witnessed how much the college revered him. Even though it was only a couple of months since Jejema's death he was very calm and composed, he would fondly remember her and talk to me about her. True to his nature he never expressed fully how much he missed her and her gregarious personality but you could see his sorrow in his quiet,soft spoken mannerisms.He was definitely a changed person after her demise as I felt he had gotten quieter and more reclusive.

I also remember him teaching me the periodic table and middle school chemistry during one of his visits to Mumbai. He was very passionate about Science and he lived his passion each day. All one had to do was the bring up the topic and you would see his eyes light up. Most of his writing was in oriya but he would translate that verbally and explain to me.

After I was married, he would make it a point to have really jovial conversations with Mithun in spite of the language barrier. He was very welcoming and always spoke with so much jest. He would tell Mithun stories of his time in the US and how life was back then. It was surprising to see how many details he would remember from so many years ago. Mithun has the highest regards for Jeje and still marvels at all his achievements.

Jeje has left us a big legacy and standards that may be no one in our generation will be able to match. I will always regret that he never got a chance to see his great grandson Aarvin but I know that Aarvin will always have his blessings. Jeje was a stellar academician, a great human being and a loving grandfather and I want to thank him for giving me the best memories.

Grand Daughter

Dallas, Texas, United States

## *FEW WORDS FROM GRAND SON*

**Surjeet**

Aja leaving us is a great shock for all of us .We all miss him so very much. In our last conversation before my wedding he promised me to visit US after my wedding and spend with us if not more , only seven days and would like to visit only New York city .Now we may be waiting a lifetime but my Aja will never return to travel to his favorite place .

Aja had given good advice to both of us after our wedding . We will always follow his footsteps and keep up his name .

Aja and my beloved Ai will always be in our hearts and minds forever and ever.Please Aja ! continue to be with us and shower your blessings .

( Corning , New York )
Grand son

---

## *FEW WORDS FROM GRAND DAUGHTER IN LAW*

**Suniva**

"Aja was someone who exuded an intelligent poise. His company seemed warm and enlightening. Although I haven't spent as much time with him as I would have wanted to, I certainly know for a fact that he is a legend. He had the most enthralling tales to tell and the most motivating incidents to share. It's not everyday that we come across people like him. One of the most striking conversations I remember is when someone had told him that I was a little apprehensive about moving to a cold place as I wasn't used to it having lived under tropical conditions all my life. In spite of me being a new person in his family, Aja, in an extremely compassionate manner said a lot of encouraging words and finally convinced me that it would all be fine. I wish I would have got more time to spend with him ." Aja ! you will be deeply missed by all of us.

( Corning , New York )
Grand daughter in law

---

## *DEAREST AJA*

**Swetleena & Sabyasachi**

Your departure has left a huge void in our lives and we will miss you forever. As we think back about the small beautiful memories of childhood you and Aei are central to all the love and affection . In these moments which are deeply saddening , we reflect on what a wonderful journey you had on this earth , so many lives you touched ,so many friends you made, and our hearts fill up with pride that we are your grandchildren. What a beautiful life !!

We always love you Aja and pray to Almighty for solace . Goodbye and rest in peace.

( Grand Daughter & Son in law )
Shanghai, China

## *AJA , WE MISS YOU SO MUCH*

**Sudeshna & Amitabh**

We were expecting Aja to recover soon as he had recovered earlier. we had a strong belief . we were looking for spending more time with Aja so that he would be enjoying happy times with his great grand children Alisha and Aryan in our next trip.Unfortunately this will never happen again.Now we will be missing him forever.

We always remember the days when both Amitabh and I shifted from US to Canada. Both of us were surprised to see that all the odia people here knew Aja so well and remembered Aja so much and were talking about Aja as a popular teacher, about his contribution to popular science etc. etc. We were really surprised and could know how aja was globally known for his contribution .

As I have spent many days with him in Dolamundai I still remember his dedication .He was the first person to wake up early morning and start his writing work .Once it was my exams time and I tried to wake up earlier to Aja but it never happened. He was the first one to wake up and start his proof corrections or writings .No doubt he was a dedicated and hardworking person for which he could contribute so much .

I pray God and seek Aja's blessings to make us all like Aja to be hard working sincere and dedicated persons .

Miss you so much Aja.

Grand daughter & grand son in law
Oakville , Canada

---

## *FAREWELL TO A GREAT SOUL*

**Dr. Srikant Pattnaik**

My father-in-law was my favourite teacher during graduation in Ravenshaw college. My personal association with him grew intimate when I got married to his eldest daughter Jyotshna. Then, I started knowing him as a multi faceted human being with great values. He loved to share his life and experience which used to be full of learning points. His values put him in high esteem amongst his close relations, students , friends and associates.

I personally lost a father like man with immense love, affection and concern and more so his innumerable friends and associates all over the world. Our state lost a great son of high values.

I am extremely disappointed to miss his last rites as, I am away from the country with Jyotshna. With tears in my eyes I only bid farewell to this great soul.

Pray God to let his soul rest in peace.

( Son in law )
Bhubaneswar

## *TRIBUTES*

**Prof. Sarweshar Guru,**

Dr. Gokulanand Mahapatra was elevated as chairman, Odisha Text Book Bureau in 1970 and against his post I got promotion as Reader in Chemistry at Ravenshaw. The touch and blessings of Dr. Mahapatra were so divine and lucky for me that within two months of my joining, I had to go for post doctoral fellowship to Imperial College of Science and Technology, London for two years. After return I came in close contact with Prof. Mahapatra at Ravenshaw College Chemistry Department. He was a great teacher. He loved and took keen interest in the intellectual development of his students. He was like an elder brother to me. His persuation, encouragement and motivation enabled me to write several Odia articles for 'Vigyan Prachar Samiti'. I had the proud privilege of attending meetings of Vigyan Prachar Samiti at his residence.

When Prof. Mahapatra walked in the department, his walk had full Royal grace and dignity. When Prof. Mahapatra talked in the department, whether in the class or seminar his talks were full of erudition and enlightenment.

I pay my humble respects and tribute to my beloved Prof. Gokulanand Mahapatra and pray for the peace of his noble soul. I also pray god to give strength to his children to bear the great loss.

Bhubaneswar

---

## *BAPA AN IMMORTAL ENIGMA*

**Dr. Pragati Mahapatra**

Our world ended virtually on 10th July when your heart stopped to proceed for your heavenly abode with Lord Jagannath on Gundicha .Words fail to express your void in our lives since you had filled our empty nest at Mumbai. A towering personality with so much humility having reached the citadel of immense academic accomplishment ,a worthy son of Odisha a great father great father-in-law great husband great grandfather and a greater human being. None of us are an iota of what you were ? We brought you on a wheelchair with a broken arm nursed you to pink of health never thought we,ll see you go to Amrapalli in a coffin .Blessings of yours saw us get the first grandson in Mahapatra family.which you and Bou so desperately wanted Aarvin meant so much to all of us because you were there to welcome him ,celebrate his 21st day ceremony and saw that I came back after my duties at the US. Is that what you were waiting to sign off from this wordly ties ? Happy for you that you saw your GenNext's arrival and that too a great grandson. Bless him and all of us to carry forward your illustrious legacy Palao and muttoncurry will never be made in our house ever again ...Asilent prayer and a drop of tear...Pranam at your Lotus feet.

( Daughter in law )<br>Mumbai.

## *FOR JEJE*

**Nittisha, Pune**
**Sanchitta, Ahmedabad**

Grandparents make the world...a little softer, a little kinder, a little warmer.

We lost our jejema 7 years ago...but we always had our jeje bapa with us.

Remembering him and the time spent with him ...we recall...that He always took an interest in the people he met: there were few people he wouldn't engage at any time or place, but there are many people with whom his interest of knowing grew day by day. He was philosophical in his approach to life. He especially had a great perspective when it came to little things, never displaying anger or impatience. Instead, he showed a great dignity and humour.

He extended this philosophy no matter what obstacle he faced. We have always admired this trait as it has been handed down to our own father.

We will miss his stories of adventures in the foreign land,stories about his old friends and we will miss the tales of his 'Child Bride' and how she was like a breath of fresh air in his life.Stories he told again and again, in the same exacting detail with every telling.

We will miss his perspective and his gentle humour. We will miss the surprising depth and scope of his knowledge. We will miss the warmth he extended to everyone he met.

We will miss our jeje bapa dearly. But We will treasure his memory forever. Because grandparents are a delightful blend of laughter, caring deeds, wonderful stories and Love.

( Grand daughters )

---

## *FOR GRANDFATHER*

**Chinmoy Mohanty**

Gokulananda Mohapatra, my Grandfather is a figure I have always looked up to.

Since my childhood, I have always been fascinated & amazed at how much he has achieved in this small human lifetime.

As a child I was amazed at the videos of his trips abroad, his various works of science fiction, his massive library at home in Cuttack, at how popular-yet-humble he was.

Having a distinguished personality as Gokulananda Mohapatra as your grandfather, I couldn't have asked for more.

Unfortunately, today that figure is no longer with us and all I can think of is if I'll ever be able to achieve even a tenth of what he has achieved in his lifetime.

Grandpa/Aja, you'll be dearly missed.

( GrandSon )
New Delhi

## *GOKULANANDA SIR, MY TEACHER*

**Dr. Hrushikesh Pujari**

Dr (Prof.) Gokulananda Mohapatra,popularly known as Gokulnanda Sir taught me for 4 years when I was a student of B. Sc. (Hons.) and M.Sc. Chemistry courses. He joined Ravenshaw College, Chemistry Department as a lecturer in 1948, the year I took admission in B.Sc. Hons. Chemistry course. He proved himself as an excellent teacher as he had 2 qualities, must for a good teacher, 1) thorough knowledge of the subject he teaches and 2) command on the language to be able to put his knowledge across the table. As a result of this he was very popular and accessible.

I was so much impressed with his lecture I decided to take organic chemistry as my special paper in M.Sc. My association with him became close when I joined Ravenshaw college chemistry department as research scholar for my Ph.D. Degree under the guidance of Dr. (Prof) M.K. Rout. Although Dr. Rout was my official guide, Gokulananda Sir was my day to day guide as I used to consult him often to remove my difficulties I faced during my research work .

In 1953 -55 Gokulananda Sir published two research papers, one jointly with Dr.Rout and other independently & I published one research paper jointly with Dr. M.K. Rout in the Journal of American Chemical Society, the then most prestigious Journal and still now in the world.

In the fifties Odisha Govt. used to give 6 ,5 or 4 advanced increments to any teacher who obtained Ph.D., Master and graduate degrees respectively from western universities .Teachers getting Ph.D. degree from Indian universities were deprived of such facilities. So the Indian Ph.D.holders represented the Govt. of Odisha for equalization of Indian and foreign Ph.Ds. This move was strongly opposed by foreign doctorates (most of teachers of Ravenshaw college at that time belonged to this category) by citing that the Ravenshaw College laboratories were not upto the mark thus cann't be compared with that of the western countries. However ,the then Education Minister, Govt of Odisha, Sj. Radhanath Rath opined that if Mahendra Babu and Gokulananda Babu, working in Ravenshaw College laboratories could publish the research papers in America then the standard of their work was as good as that of foreign work. Hence, he kept the Indian Ph.D. at par with foreign Ph.D. and recommended two advanced increments to both and none to Master and graduate degrees. From that date all Indian Doctorates started getting 2 advanced increments. All Indian Doctorates are grateful to Dr.Rout and Gokulananda Sir.

In 1961 Gokulananda Sir was in the Brandeis University, Waltham, Boston, Mass,USA. as a Post Doctoral Research fellow working on DNA (Deoxyribole Nucleic Acid) hardly understood topic at that time. On my return journey from USA to India I stayed with Gokulananda Sir for 2 days and we revived our association at Ravenshaw. I had good delicious Indian cooked food prepared by Mrs.Mohapatra. I rejoined Ravenshaw College as lecturer in 1961 .At that time Utkal University was functioning at Cuttack and had no teaching departments of its own. So I left Ravenshaw to join Kurukshetra University in 1962. The Chemistry Department of Kurukshetra University was unique as it had 24 teachers coming from all almost the states of India. Since the University became multi-faculty in 1961, the Chemistry department was not properly equipped

at the time of my joining. So we could not do any research work and only confined to teaching. During our leisure time some teachers of Chemistry Dept. asked me where I got my Ph.D.degree and when I said I got from Utkal University then they enquired where was the Utkal University. Instead of telling them the location of Utkal University, I said that I got my Ph.D. degree from Ravenshaw College. Immediately they knew its location. They further told me that they had seen the publications of Dr.Rout and Dr. Mohapatra in the Journal of American Chemical Society and held them in high regards. This shows that quality of research work of Gokulananda Sir is of high order and Ravenshaw College is more well known than Utkal University. A college or an University is known for their contributions by way of research publications.

During my stay at Ravenshaw, Gokulananda Sir published a science fiction book 'Prithibi Bahare Manisha' which made him famous overnight in Odisha. He presented me one copy of the book and I was thrilled going through the book. He had written many popular science fictions and founded Odisha Bigyana Prachara Samiti to popularize the science under his leadership the Samiti grew and thrived. Encouraged by him I published 2 popular science articles.

What I am today it is due-to ample contribution of Gokulananda Sir in shaping my research and teaching career and for this I am indebted to him.

At the end I pray Lord Jagannath that his soul rests in peace.

Res: Bibhu Krupa Dham
Old Sadar Thana Road
Puri-752001

Retd. Professor of Chemistry
Kurukshetra University,
Kurukshetra, Hariyana

## *MY CHERISHED MOMENTS WITH JEJE*

**Samiksha Mahapatra**

Whenever jeje came to visit us in Mumbai I have always made sure that I spend every single moment with him. I remember the times we used to watch TV together and although I understood nothing that was going on just observing him watch 'choto moro gaan ti' serial made me feel very enjoyable. It was a pleasant sight to watch him sip on his tea and laugh at the jokes cracked on TV. I have always enjoyed taking care of him whenever he stayed with us. I felt that I got to know him even more during his frequent stays with us. I am thankful to god that I had a grandfather like him who was so calm and humble. He lived a simple life with a lot of respect and dignity. He has always given me good advice about education and life. I am honored to be known as a grand daughter of Dr. Gokulananda Mahapatra, Scientist and Scientific Fiction Writer and I hope someday I can be at least half of what he was. He will always be alive in my heart forever. I will always miss him dearly and may his soul rest in peace.

( Grand Daughter )
Washington, U.S.

## *REMEMBERING BAPA AND HIS TIME IN AHMEDABAD .....*

**Dr. Nanda Nandan Mahapatra**
**Seemani Mahapatra**

On writing this we all knew that there were too many memories and recollections we have of Bapa that we could manage to fit into one speech. There is no doubt that he'll be missed not only for his presence, but also for the small things that made him the man that we remember today!

Bapa was the head of our family and was respected not only by all of us but also by the wider community. People respected him not only in Odisha but also in other cities, states. This became true when he visited us in Ahmedabad, we had kept a dinner party for some of our Odia friends. Our friends had the same amount of love and respect for him that we all have.

During one of his visits to Ahmedabad . We all went to the science city, even though he knew everything the guide said or explained, he listened to him as if it was his very first visit to a science city! We remember him saying "this is one of the best science cities I have ever visited."

We recall his visit to Ahmedabad in 2010...and how blessed we were to have him there. And amazed too how well he remembered every little detail of his earlier visit some 15 years back. Yes, he was like that a great man with a very sharp memory !

As we all know Bapa's love for the movies and Bhajans and how much he admired Amitabh Bachhan even though he had started losing his memories in his last few months but he never failed to recognise Amitabh Bachhan in those KBC adds!!

His next visit was peaceful we enjoyed the summer of 2011. In 2013 we expected the same but he had already started losing his memory but there again he amazed us as it seemed he never parted ways with his knowledge, with his teachings. Till the end he was every bit of scientist he was years back! Yes, he was like that a great scholar for whom his knowledge was his Power his Honour ! He was fond of hearing Bhikari Bal's Bhajan's in the morning.

Family was important to Bapa. He had a large collection of family photo albums going back over 70 years. Many of which were dedicated to our lives. He loved showing us photos of the family and explaining who all the people were and where the photos were taken. We hope that our children will be lucky enough to inherit Bapa's enthusiasm and creativity. And in the same way he treasured the albums of us, we all now treasure the photos we have of our Bapa and the fond memories we have of him.

( Son & Daughter in law )
Ahmedabad.

## *MY FATHER-IN-LAW A GODLY SOUL*

**Dr. P. K. Mohanty**

My father-in-law was a versatile, courteous & a wonderful man. He was a great human being apart from being a legend in his field . He completed his journey filled with dignity, accomplishment & achievements with the best of honours bestowed upon him like Sahitya Academy Award, Kaling Samman & many more to his credit.

Being the second son-in-law I was staying all along out side Odisha for long 25 years after my marriage. But regularly I use to visit my in-law's house with my family at least once in a year. I still remember those days when my father-in-law waited eagerly with a smiling face to our arrival at Dolmundai. He was very happy to see his grand children. In many occasion he used to show us the movies shot at USA during his stay there and some times tells stories of his up coming novel uninterruptedly. It was really enchanting to hear him.

It is extremely painful to know that in his last part of his life he had to spend in the hospital bed silently & motionless for long forty days and waiting for an auspicious day to go to the heaven to meet the almighty. As if he was waiting for the last invitation from Lord Jagannath to accompany him in the chariot on the day of Ratha Yatra for his eternal journey.

Retd.DGM(Medical &Health Services)
Hindustan Copper Limited
( Son in law )
Bhubaneswar

---

# *FOR MY GREAT GRANDFATHER'S DEATH*

**Alisha Mohanty**

There is a day when one dies but it's not the time to forget since we had many fun times together each and every trip. You have been a great writer and I am fond of writing a lot too. You have written one hundred spectacular books. Everyone wishes, you were still alive why did you have to die ?

Grand grand daughter
Heritage Glen Public Shcool
Oakville, USA

